
ବଳରାମ ଦାସଙ୍କ କୃତ
ଜଗମ୍ମୋହନ ରାମାୟଣ
ବା
ଦାଣ୍ଡି ରାମାୟଣ
ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର, ଅଲିଶା ବଜାର, କଟକ - ୨

# ଜଗମୋହନ ରାମାୟଣ ବା
# ଦାଣ୍ଡି ରାମାୟଣ

## ଅଯୋଧ୍ୟାକାଣ୍ଡ

ବନ୍ଦଇ କମଳା ଗୋ ବିଷ୍ଣୁ ପାଟରାଣୀ
ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଟୁ ତୁ କାରେଣୀ ।
କମଳଲୋଚନ କମଳ ଧାରିଣୀ
କାମଦେବର ମାତା ସଂସାର କାରେଣି ।
ତ୍ରିଭୁବନ ପାଳିନୀ ବିକଚ ପଦ୍ମମୁଖୀ
ଦରିଦ୍ର ଧ୍ୱଂସିନୀ ନାରାୟଣଙ୍କ ସଖୀ ।
ସିନ୍ଧୁର ଦୁହିତା ନାମ ସର୍ବଭୂତା
ମେଧାର ସରଧା ସର୍ବଜନ ମାତା ।
ତୁହି ସରସ୍ୱତୀ ତୁହି ବିଘ୍ନସେନୀ
ପବିତ୍ରମୟ ନାମ ଅଟଇ ତୋର ପୁଣି ।
ତୁହି ସେ ପଦ୍ମ ମାନିନୀ ପଦ୍ମିନୀ ପଦ୍ମାବତୀ
ପରଲୋକଙ୍କର ବନ୍ଧୁ ପୃଥ୍ୱୀର ଦୁହିତା ।
ପରମ ପୁରୁଷୋତ୍ତମା ଅଟୁ ତୁ କାରେଣୀ
ଶ୍ୱେତଗଜ ବାହିନୀ ଗୋ ପୃଥ୍ୱୀ ଉଦ୍ଧାରିଣୀ ।
ପରମ ବ୍ରହ୍ମଜ୍ଞାନି ଗୋ ତୁ ଯେ ସୁଧା-ରତୀ
ଜଗତ ଲୋକ ପାଳିନୀ ଜଗତ ଧରିତ୍ରୀ ।
ତୁ ଦେବୀ ଶୃତି ସ୍ମୃତି ସିଂହାରିଣୀ ସ୍ତୀବନ୍ତି
ତୁହି ସେ ମହାବିଦ୍ୟା ଗୋ ତୁହି ସେ ପ୍ରଭାତୀ ।
ତୁହି ସେ ଚଞ୍ଚଳା ଗୋ ଚତୁର୍ଭୁଜର ବାମା
ସର୍ବ ସୁଲକ୍ଷଣୀ ଗୋ ଜନକର ଜେମା ।
ସର୍ବାଙ୍ଗ ସୁଲକ୍ଷଣୀ ବିଷ୍ଣୁର ହୃଦବାସୀ
ଜୟ ଜୟ ରୁକ୍ମିଣୀ ତୁ ଗୋ ଜୟ ଶୁଭ୍ରକେଶୀ
ଜଗନ୍ନାଥଙ୍କୁ ମୋହିଲୁ ମହିମା ଧନୀ
ଜୟ ଜୟ ମାତ ଗୋ ଭୀଷ୍ମକ ନନ୍ଦିନୀ ।
ମୃକୁଟ କୁଣ୍ଡଳ ତୋର ଦିବ୍ୟ ଅଳଙ୍କାର
ଗଳାରେ ଶୋଭାପାଏ ମୃକୁତାର ହାର ।
ବାହେଣ ବିଦ ତୋର ଭୁଜରେ ରତ୍ନ ବାହା
ତୁମ୍ଭେ ଭଗବତୀ ଗୋ ମୋତେ ହୁଅ ସାହା ।

ପାଶ ଅଙ୍କୁଶଧାରିଣୀ ତୁ ଭୁବନେଶ୍ୱରୀ
ଦର୍ଗତି ଖଣ୍ଡିନି ତୁ ଅନାଦି ଶାକମ୍ଭରୀ ।
ହସ୍ତୀରୁ ବାହିନୀ ତୁ ଯେ ନୀଳଗିରି ବାସୀ
ଜଗତ ଜନନୀ ମାତ ଶୁଭ୍ରକେଶୀ ।
ଅବିଚ୍ଛନ୍ନେ ହରଷେ ପ୍ରଭୁ ଦେଇ ତୋର ଚିତା
ଶ୍ରୀଜଗନ୍ନାଥଙ୍କର ଅଟୁ ପଞ୍ଚଭୂତା ।
ମୋଠାରେ ଅନୁଗ୍ରହ କର ଗୋ କମଳିଣୀ
ଦୁସ୍ତର କଷ୍ଟରୁ ମୋତେ ତୁହି ସେ ରକ୍ଷଣୀ ।
ବଳରାମ ଦାସ ମୁଁ ଯେ ଶ୍ରୀହରି ସେବକ
ଅମୃତଲୋଚନୀ ମୋତେ କର ଅବଲୋକ ।
ତୋହରି ପ୍ରସନ୍ନେ ଭକତି ସୁକୃତି
ତୋହର ପ୍ରସନ୍ନେ ମାଗୋ ସକଳ ସମ୍ପତ୍ତି ।
ତୋହର ଶରଣେ ମାଗୋ ମୋହର ବୁଦ୍ଧିପାଇ
ତୁ ଯାହାକୁ ଦୟା କରୁ ବୁଦ୍ଧିମାନ ହୋଇ ।
ତୁମ୍ଭେ ଯେବେ ମୋତେ ଦେଲ ଗୋ ମହାମାୟ
ଅଯୋଧ୍ୟା କାଣ୍ଡ ମୁଁ ଯେ କରିବଇଁ ।
ଶ୍ରୀରାମ ଲକ୍ଷ୍ମଣ ସୀତା ପୁଣି ବନ ଯିବେ
ଦେବତାଙ୍କ ଛଳେ ସେ ଯେ ଦାନବ ମାରିବେ
ଯାହା ସେ ବାଲମିକ ବ୍ରହ୍ମାର ଆଗେ କହି
ସେହି ସେ ରାମାୟଣ ଗ୍ରନ୍ଥରାଜ ହୋଇ ।
ତୁ ଯେବେ ଆଜ୍ଞା ମୋତେ ଦେବୁ ମହାମାୟୀ
ଅଯୋଧ୍ୟା କାଣ୍ଡ ମୁଁ ଯେ କରିବି ମହାମାୟୀ ।
ସାମବେଦର ପୂର୍ବ ଭାଗରୁ ଜାତ ହୋଇ
ବିଖ୍ୟାତ କଲେ ବାଲମିକ ତପଦେହି ।
ତାହା ମୁଁ ପଣ୍ଡିତଜନଙ୍କ ମୁଖରୁ ଶୁଣି
ହୃଦଗତେ ଭାଳି ପୁଣି ମନେ ଗୁଣି ।
ଶ୍ରୀରାମ ଚରିତ ମୁଁ ସୁମରିବି ସତୀ
ଶ୍ରୀଜଗନ୍ନାଥ ପାଦେ କରିବି ଭକତି ।

ସୁଜ୍ଞ ଜନମାନଙ୍କୁ ମୋର ସହସ୍ରେ ନମସ୍କାର
ପଣ୍ଡିତ ନ ନମାନେ ଦୋଷ ମୋ ନଧର ।
ସୁଜ୍ଞ ଜନମାନଙ୍କୁ ମୁଁ କରଇ ଦଇନୀ
ଅଳପ ଜାଣିଣ ବହୁତ କରେ ଧ୍ୱନି ।
ତାହାଙ୍କ ପ୍ରସାଦେ ମିଳଇ ଯହୁଁ ମୋତେ
ନ ଧରିବ ଦୋଷ ମୋର କହଇ ଯୁକତେ ।
ଶ୍ରୀରାମ ଚରିତ କହେ ବାଲମିକ ମୁନି
ମୁଁ ଛାର ମାନବ ପାର୍ଥିବ ଦେହ ଘେନି ।
ଯେ ଯାହାର ଗୁଣ ପୁଣି ଯେ ଯାହା ଆଗେ ପାଇ
ଚଣ୍ଡାଳ ହୋଇଯିବେ ଶ୍ରୀକର୍ପୂର ଗାଇ ।
ବ୍ରାହ୍ମଣ ହୋଇଯିବେ ଚାଲେ ମନ୍ଦ ବାଟେ
ଯାହା ସେ ବିଧାତା ଲେଖିଛି ମୋର ଲଲାଟେ
ଏ ମୋର କର୍ମରେ ଲେଖିଛି ବିଧାତା
ଶ୍ରୀ ରଘୁନାଥ ମୋର ହୋଇବେ କରତା ।
ରାମାୟଣ ଗ୍ରନ୍ଥକୁ ଯେ ଉଚ୍ଚାରିବି ମୁହିଁ
ଶତକୋଟି ଗ୍ରନ୍ଥରୁ ଥୋକାଏ ଯିବି କହି ।
ମୋହର କୀର୍ତ୍ତି ଯେ ଯୁଗେ ଯୁଗେ ଥିବ
ଶ୍ରୀରାମଙ୍କ ସଙ୍ଗତରେ ନାମ ଯେ ରହିବ ।
ଏ ଯେବେ ପ୍ରାପତ ମୋତେ ହୋଇବ ପୂର୍ବପୁଣ୍ୟ
ଏହାକୁ ଛାଡ଼ି କିମ୍ପା ଯେ କରିବଇ ଆନ ।
ମିଛ ସତ ହୋଇଲେ ମୋହର କିସ ହୋଇ
ଯଦି ସେ ହୃଦେ ଅଛି ସେହି ଯେ ଜାଣଇ ।
ମୋହର ସକ୍ଷ୍ୟରେ ମୁହିଁ କରୁଛି ବଖାଣ
ଅନ୍ୟାନ୍ୟ ଦେଖି ପଦ କଲା ଯେ ଉଚ୍ଚାରଣ ।
ତାହାକୁ ପ୍ରାପତ ଦେବ ଶୁଭାଶୁଭ ଘେନି
ତୈଳ ମର୍ଦ୍ଦନ ଯେହ୍ନେ ହୋଇଲା ମେଦିନୀ ।
ଶ୍ରୀରାମ ଚରିତ ମୁଁ କରିବି ସୁମରଣ
ହେଲେ ଖଣ୍ଡିବି ମୁଁ ଯେ ଅକାଳ ମରଣ ।
ଜୀବନ୍ତେ ଭକତ ହେବି ମଲେ ସ୍ୱର୍ଗ ଯିବି
ବୈକୁଣ୍ଠରେ ବିଷ୍ଣୁ ଚରଣ ସେବିବି ।
ଏହା ତ ଛାଡ଼ିଣ ମୁଁ କିମ୍ପା କରିବି ଆନ
ମୋତେ ଯେବେ ଦୟା କରିବେ ଭଗବାନ ।
ବିଷ୍ଣୁଙ୍କ ପୁରାଣ ଯାହା ସଦାଶିବ କହି
ଶୁଣି କରି ପାର୍ବତୀ ମନରେ ତୋଷ ହୋଇ ।
ଦୁର୍ଗା ରୂପ ଧରିଣ ଯେ ଅସୁର ଦହଇ
ଦେବଙ୍କର ହିତେ ଯେ ପୁରୁଷ ହତ୍ୟା ବହି ।
ସେ ଦୋଷମାନ ହରେ ଏ ରାମାୟଣ ଶୁଣି ।
ଆବର ବେଦ ବିଷୟ ଯେ ଶୁଣନ୍ତି ଚିନ୍ତାମଣି ।
ଶୁଣ ତୁମ୍ଭେ ଭଗବତୀ ଗୋ ଅଯୋଧ୍ୟା କାଣ୍ଡକଥ
ରାମଚନ୍ଦ୍ର ବନବାସ ଯିବାର ବାରତା ।
ଭରତ ଶତୃଘନ ତ ଗଲେ ଅଜାଘର
ନିଶ୍ଚିନ୍ତେ ରାଜ୍ୟ କଲେ ଦଶରଥ ନୃପବର ।
ଶ୍ରୀରାମ ସୀତାଙ୍କୁ ଘେନି ବିଳସନ୍ତି ସୁଖେ
ଅପଖ୍ୟାତି ବୋଲିଣ ନ ପାନ୍ତି ଜନ ମୁଖେ ।
ଦିଗପାଳ ପାଳନ୍ତି ଯେ ବେଳ କାଳ ଜାଣି
ଯହୁଁ ସେ ପୁରରେ ଅଛନ୍ତି ଚକ୍ରପାଣି ।
ଦିନେକ ରାମଚନ୍ଦ୍ର ଲକ୍ଷ୍ମଣକୁ ଘେନି
ସଙ୍ଗରେ ଅଛନ୍ତି ତାର ଅନେକ ସଇନି ।
ସୁମନ୍ତ ମନ୍ତ୍ରୀର ପୁଅ ଅଛନ୍ତି ଚିତ୍ରରଥ
ମୃଗୟା ବିନୋଦେ ପୁଣି ଗଲେ ରଘୁନାଥ ।
ସରଜୁ ପାର ହୋଇ ପଶିଲେ ବନ ଘୋର
ଶ୍ରୀରାମ ଅଶ୍ୱ ଚଢ଼ି ବିଜେ ଆଗୁସାର ।
ବାମ ଭୁଜରେ ଧନୁ ଦକ୍ଷିଣେ ତୀକ୍ଷ୍ଣ ଶର
ଜୀବକୁ ବିନ୍ଧିବାକୁ ଗୋଡ଼ନ୍ତି ରଘୁବୀର ।
ମୃଗୟା ସୟମ୍ବର ସେ ଯେ ବିନ୍ଧନ୍ତି ବହୁତ
କେଉଁ ଜୀବକୁ ପ୍ରହାର କରନ୍ତି ତୀକ୍ଷଣ କୁନ୍ତ ।
କେବଣ ଜୀବକୁ ଯେ ଖଡ଼ଗରେ କାଟି
କେବଣ ଜୀବର ହୃଦରେ ତୀର ଫୁଟି ।
ଲକ୍ଷ୍ମଣ ଅନେକ ବରାହ ମୃଗ ମାରି
ଶଶା ସମ୍ବର ସେ ଅନେକ ବାନ୍ଧିକରି ।
ସୁମନ୍ତ ମନ୍ତ୍ରୀ ପୁଅ ଚିତ୍ରରଥ ବୀର
ସେହି ପୁଣ ମାଇଲା ଯେ ଅନେକ ଶୂକର ।
ଅପ୍ରମିତ ବଳ ପୁଣି ଅଛନ୍ତି ଗହନେ
ଧରିବେ ବୋଲିଣ ପଶିଲେ ଘୋର ବନେ ।
ଯେ ଯେଣେ ଯାନ୍ତି ସେ ତେଣେ ଯାନ୍ତି
ଲକ୍ଷ୍ମଣ ଶ୍ରୀରାମଙ୍କୁ ଭେଟ ନ ପାଆନ୍ତି ।
ମୃଗୟା ବିନୋଦେ ପଶିଲେ ଘୋର ବନେ
ଗଜ ଅଶ୍ୱ ବଣେ ଗଲା ରଘୁବର ସୈନ୍ୟେ ।
ଅଗମ୍ୟ ବନରେ ଯେ ପଶିଲେ ଥାଟ
ବଣା ହୋଇଲେ ସଇନ୍ୟ ଯେ ନପାଇଲେ ବାଟ
ଶ୍ରୀରାମ କୋପରେ ମୃଗ ଶୂକର ମାରି
ତମସା ନଦୀ କୂଳେ ହୋଇଲେ ଦଇତାରୀ ।

ଶ୍ରମରେ ଝାଳ ଦେହୁ ବହଇ ଅବିଛିନ୍ନ
ଗୋଡ଼ାଇ ସମୀପରେ ବସିଲେ ରଘୁନାନ ।
ନଦୀ ଜଳରେ ପଶିଣ ଶ୍ରୀମୁଖ ପଖାଳି
ଜଳପାନ କରିଣ କୂଳରେ ଆସି ମିଳି ।
ବୃକ୍ଷମୂଳେ ଅଶ୍ୱକୁ ବାନ୍ଧିଣ ରଘୁବୀର
ଏକା ବସିଛନ୍ତି ପାଇ ଶ୍ରମ ଘୋର ।
ଏହି ସମୟରେ ଶବଦ ଅଧିପତି
ମୃଗୟା ଆସିଥିଲେ ଦେଖିଲେ ରଘୁପତି ।
ସଙ୍ଗତରେ ତାର ବଳ ଅଛଇ ଅପାର
ଶ୍ରୀରାମଙ୍କୁ ଚାହିଁଣ ପୁଚ୍ଛଇ ଶବର ।
ତୁହୋ ମହାତମା କେବଣ ଦେଶେ ଥାଏ
କେ ତୁମ୍ଭର ବାନ୍ଧବ କେ ତୁମ୍ଭର ବାପ ମାଏ
ସ୍ୱର୍ଗପୁରୁ ଅଇଲାର ପ୍ରାୟେ ଦିଶୁ
କାହିଁକି ଯିବ ଆନେ ଏଠାରେ କିମ୍ପା ବସୁ ।
ଶ୍ରୀରାମ ବୋଇଲେ ଆମ୍ଭେ ଦଶରଥ ସୁତ
ଅଯୋଧ୍ୟାରେ ଆମ୍ଭ ଜନ୍ମ କୌଶଲ୍ୟା ଆମ୍ଭ ମାତ
ଭତର ଲକ୍ଷ୍ମଣ ଶତୃଘନ ମୋର ଭାଇ
ଚାରି ଭାଇଙ୍କର ଯେ ଅଟଇ ତିନି ଆଇ ।
ମୋହ ନାମ ରାମଚନ୍ଦ୍ର ମୃଗୟା ଆସିଥିଲି
ଗହନ ବନେ ପଶି ପଥ ଉପେକ୍ଷିଲି ।
ବଣା ହୋଇ ପଥଛାଡ଼ି ମିଳିଲି ମୁଁ ଏଥ
କେଣିକି ଯିବି ଅଯୋଧ୍ୟାକୁ ନ ପାଉଛି ପଥ ।
ଶବର ବୋଇଲା ତୁମ୍ଭେ ଶୁଣ ହେ ଶ୍ରୀରାମ
ଗଙ୍ଗାନଦୀ କୂଳରେ ମୋହର ଆଶ୍ରମ ।
ଆଶାବତୀ ବୋଲିଣ ମୋ ନଗ୍ର ଅଟଇ
ଦଶଲକ୍ଷ ଶବର ମୋତେ ଯେ ଖଟଇ ।
ବିରାୟୁଧ ପୁତ୍ର ମୁଁ ଯେ ଗୁହ୍ୟ ମୋର ନାମ
ମୁହିଁ ମୃଗୟାକୁ ଆସିଛି ଶ୍ରୀରାମ ।
ତୁମ୍ଭକୁ ଦେଖିଲି ମୁଁ ମୋ ଜନ୍ମ ସୁଫଳ
ତୁମ୍ଭେ ଯେ ରଘୁନାଥ ଦଶରଥଙ୍କ ବାଳ ।
ଅଯୋଧ୍ୟାଠାକୁର ସେ ଯେ ସୂର୍ଯ୍ୟବଂଶରେ ଜାତ
ମୋତେ ତୁମ୍ଭେ ଦୟା କରିଥିବ ରଘୁନାଥ ।
ଶ୍ରୀରାମ ବୋଲନ୍ତି ତୁ ମୋତେ ବାଟ ଦେଖା
ଆଜଠାରୁ ମୋହର ଅଟୁ ପ୍ରାଣସଖା ।
ଏତେ ବୋଲିଣ ରାମ ଉଠିଲେ କୋଳକରି
ଏକଥା ଦେଖି ଶବର ଶିରେ କରଯୋଡ଼ି ।

ଭୋ ରାମଚନ୍ଦ୍ର ତୁମ୍ଭେ ମୋଠାରେ ଦୟାକଲ
ତୁମ୍ଭର ଶ୍ରୀମୁଖରେ ମଇତ୍ର ବୋଇଲ ।
ପୁରୁଷାର୍ଥ କଥା ମୁଁ ପାଇବି ଜଗତେ
ଯେବେ ତୁମ୍ଭେ ଦୟାକଲ ଦେଖି ସ୍ୱାମୀ ମୋତେ
ମୁହିଁ ପୁଣି କଥାଏ ଯେ ମାଗୁଛି ହୃଦଗତେ
ତାହା ଜାଣି ପୂରଣ କରିବ ଦୟାଚିତ୍ତେ ।
ଶ୍ରମରେ କ୍ଷୁଧା ତୃଷା ପାଇଲ ରଘୁବଂଶୀ
ପକ୍ୱଫଳ ଦେବି ମୁଁ ଯେ ଭୁଞ୍ଜିଣ ହୁଅତୋଷୀ
ନୋହିଲେଣ ପ୍ରାସ ଯେ ପାଇବ ତୁମ୍ଭ ଦେହ
ଦେହ ସୁସ୍ଥ ଥିଲେ ହୋଇବ ସର୍ବ ଶ୍ରେୟ ।
ଏତେ କହିଣ ସେ ଦେଲାକ ଜାଇଫଳ
ହରଷେ ଭୁଞ୍ଜନ୍ତି ତାହା ଦଶରଥ ବାଳ ।
ଏସନ ସମୟେ ଯେ ଲକ୍ଷ୍ମଣ ମହାବୀର
ଆସିଣ ମିଳିଲା ଶ୍ରୀରାମ ଛାମୁର ।
ଆସିଣ ଶ୍ରୀରାମଙ୍କୁ ଦର୍ଶନ ବୀର କଲା
ଅନେକ ମୃଗ ସମ୍ବର ଦେଖି ଦେଖାଇଲା ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁନାଥ
ବଣା ହୋଇଣ ଆମ୍ଭେ ଅଇଲୁ ଏହି ପଥ ।
ଗୃହ୍ୟ ଶବରକୁ ଯେ ବୋଲନ୍ତି ରାମରାଏ
ଆମ୍ଭର ମଇତ୍ର ଶବର ତନୟେ ।
ଆହେ ମଇତ୍ର ତୁମ୍ଭେ ବାହୁଡ଼ ନିଜ ପୁରୀ
ସଙ୍ଗରେ ସାନୁଜ ଯେ ମିଳିଲା ଆମ୍ଭରି ।
ଯାଅ ବାହୁଡ଼ି ତୁମ୍ଭେ ତୁମ୍ଭର ନିଜ ଦେଶ
ପଛେ ପାଛୋଟି ତୁମ୍ଭେ ଅଯୋଧ୍ୟାକୁ ଆସ ।
ଶୁଣି ଶବର ବେଗେ ନମସ୍କାର କଲା
ସନମାନ ପାଇଣ ସେ ବଚନ କହିଲା ।
ଦର୍ଶନ କରି ଶବର ବାହୁଡ଼ି ରାଜ୍ୟରେ
ଶ୍ରୀରାମ କହିଲେ ଏହା ଲକ୍ଷ୍ମଣ ଆଗରେ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଭଗବତୀ
ମୃଗ ସମ୍ବର ଘେନାଇ ରଘୁପତି ।
ଖୁରଙ୍ଗ ଖୁରାଣ୍ଟୀ ସମା ଶୁକର ସମ୍ବର
ବାହୁଟିଆ କୃଷ୍ଣାଞ୍ଜଳୀ କରି ଭାର ଭାର ।
ସଇନ୍ୟ ସମସ୍ତେ ଯେ ସରଜୁ ପାରହୋଇ
ଅଯୋଧ୍ୟା କଟକରେ ମିଳିଲେ ସର୍ବେଯାଇ ।
ଏକାଦଶ ଘଡ଼ି ଯେ ହୋଇଲାଣି ବେଳ
ଆଲମ୍ବ ବିମଳ ପାଟ ଛତ୍ର ଯେ ଗହଳ ।

ଡାକହାକ ଶବଦରେ ମେଦିନୀ ଉଚ୍ଛୁଳଇ
ବାଜଣା ବଜାଏ ଯେ ଅତି ଆନନ୍ଦ ହୋଇ ।
ଅଯୋଧ୍ୟାର ଲୋକ ପୁଣ ଦେଖନ୍ତି ରଘୁବୀର
ଅନେକ ଆନନ୍ଦ ଯେ ହୋଇଲା ଲୋକଙ୍କର ।
ନବରେ ରଘୁନାଥ ପ୍ରବେଶ ହୋଇଲେ
ଦଶରଥଙ୍କ ଚରଣେ ନମସ୍କାର କଲେ ।
ଦେଖିଣ ଶ୍ରୀରାମଙ୍କୁ ବୋଲନ୍ତି ନୃପବର
ଉଚ୍ଛୁର ହୋଇଲା ବାବୁ ମଣୋହି ବେଗ କର
ଶୁଣିଣ ଶ୍ରୀରାମ ଯେ ଭିତର ପୁରେ ଗଲେ
ମାଜଣା ମର୍ଦ୍ଦନ ପୁଣି ମଣୋହି ସାରିଲେ ।
ମୃଗ ଶୂକର ଯାହା ସେ ଆଣିଥିଲେ ମାରି
ଦେଖିଣ ଆନନ୍ଦ ଦଶରଥ ଦଣ୍ଡଧାରୀ ।
ଯଥା ଅନୁରୂପେ ପୁଣି ସମସ୍ତଙ୍କୁ ଦେଲେ
ପୁତ୍ରଙ୍କର ମହିମା ବଶିଷ୍ଠ କହିଲେ ।
ଶୁଣ ତୁମ୍ଭେ ମୁନିବର ମୋହର ଯେ ବାଣୀ
ମୃଗବେଣ୍ଟ ବିନୋଦରେ ଗଲେ ରଘୁମଣି ।
ଜୀବନ୍ତ କସ୍ତୁରୀ ମତ୍ତଗଜ ଯେ ସହିତ
ଅନେକ ବଧକରି ଆଣିଲେ ରଘୁମଣିତ
ଶ୍ରୀରାମଠାରେ ମୁନି ଅନେକ ଗୁଣ ଅଛି
ଅନେକ ପୁଣ୍ୟବଳେ ପାଇଲି ଏ ବସି ।
ଶ୍ରୀବନ୍ତ ସୁରବନ୍ତ କ୍ଷମାଶୀଳ ଅଟଇ
ଧାର୍ମିକ ଯଶବନ୍ତ ଅନେକ ଶାସ୍ତ୍ର ଜାଣଇ ।
ଜ୍ଞାନ ଗୋଚର ତା ଅଟଇ ଜ୍ଞାନ ତୋଳା
ଏହି ଯେ ଅଟନ୍ତି ମୋର ତରିବାକୁ ଭେଳା ।
ବଶିଷ୍ଠ ବୋଲନ୍ତି ହେ ଶୁଣ ନୃପବର
ଶ୍ରୀରାମ ଅଟନ୍ତି ତୋର ଜ୍ୟେଷ୍ଠ ଯେ କୁମର
ତୁ ତାହାକୁ ଏବେ କି ମନୁଷ୍ୟ ପ୍ରାଏ ମଣୁ
ସେହି କି ଅଟଇ କି ତୁ ତାକୁ ନ ଜାଣୁ ।
ବୈକୁଣ୍ଠବାସୀ ଯେ ଯେ ସ୍ୱୟଂ ବିଶ୍ୱବାସ
ଶଙ୍ଖ ଚକ୍ର ଗଦା ପଦ୍ମ ଘେନିଣ ସେ ଜାତ ।
ଚକ୍ର ଗୋଟି ଭ୍ରଥ ଶଙ୍ଖ ଶତ୍ରୁଘନ
ଅନନ୍ତ ଅଟନ୍ତି ପୁଣ ନାମ ଯେ ଲକ୍ଷ୍ମଣ ।
ଚତର୍ଦ୍ଧା ମୂର୍ତ୍ତି ହୋଇ ଜାତ ତୋର କୁଳେ
ଏକ ଅଙ୍ଗ ଅଟନ୍ତି ତୋହର ଚାରିବାଳେ ।
ଶ୍ରୀବତ୍ସ ଲାଞ୍ଛନ ପୀତବସନ ପହରଣ
କୌସ୍ତୁଭମଣି ସାଜେ କଣ୍ଠେ ଆଭରଣ ।

ଗରୁଡ଼ବାହନ ଯେ କମଳାର ପତି
ଦେବତାଙ୍କ ଛଳେ ଅବତାରଣ ଜାଣ ସେଟି ।
ଅସୁରକୁଳ ଯହୁଁ ହୋଇଲେ ବର୍ଦ୍ଧମାନ
ତେଣୁ ଦେବତାଙ୍କ ବୋଲେ ଜନମ ଭଗବାନ
ବିଶ୍ୱାମିତ୍ର ମୁନି ଯେ କହିଥିଲେ ତୋତେ
ଯୋଗବଳେ ଦୃଶ୍ୟ ହୋଇଲେକ ମୋତେ ।
ତାଡକା ଅସୁରୀକି ଆନ କେ ହୋଇ ମାରି
ଇନ୍ଦ୍ର ହିଁ ନ ପାରିଲେ ଶିବଧନୁ ତୋଳି ।
ପାଦଲାଗି ଯାର ଗୌତମ ନାରୀ ମୋକ୍ଷ
ସ୍ଥିତି ହୋଇ ସମ ଯେ ନାହିଁ ସ୍ଥିତି ମଧ ।
ବିଷ୍ଣୁର ତେଜରୁ ବିଶ୍ୱକର୍ମା ଜାତ କଲା
ତୁମ୍ଭର ପୁତ୍ର ମହା ହେଲେ ଆମଞ୍ଚିଲା ।
ସୀତା ଯେ ରୂପବତୀ ସ୍ୱୟଂ କମଳିନୀ
ସହିତେ ଶ୍ରୀରାମଙ୍କର ଅଟନ୍ତି ପାଟରାଣୀ ।
ଜାଣୁ ତ ପର୍ଶୁରାମକୁ ନାହିଁ ତ କ୍ଷତ୍ରୀବର
ଶତେବାର ପର୍ଯ୍ୟନ୍ତ ତିନିପୁର କଲା ଛାର ।
ସେହି ପୁଣ ବିଷ୍ଣୁ କାଳରେ ଜାତ ହୋଇ
ଶ୍ରୀରାମଙ୍କୁ ଦେଖି ନିଜ କଳା ଗଲେ ଦେଇ ।
ତୁହି ତାହାକୁ ଦେଖିଛୁ ନେତ୍ର ଥାଇ
ଯେଉଁ ପର୍ଶୁରାମଙ୍କୁ ଦେବ ଭୟ ପାଇ ।
ରବିତଳେ କ୍ଷତ୍ରୀଙ୍କୁ ମାଇଲେ ନିପାତି
ତାହାଙ୍କର ଦର୍ପ ଯେ ହରିଲା ତୋର ଗୋତ୍ରୀ
ତେଣୁ ସେ ଜଣାଗଲା ଶ୍ରୀରାମ ପଦ୍ମନେତ୍ର
ଯେବଣ ପର୍ଶୁରାମଙ୍କୁ ଦେବ କଲେ ଶାନ୍ତ ।
ଏ ବଚନ ଶୁଣିଣ ବୋଲନ୍ତି ମହୀପତି
କଥାଏ ପୁଚ୍ଛା କରୁଛି କହ ମହାଯତି ।
ପର୍ଶୁରାମ ଯତି ଯେ ଯମଦଗ୍ନି ସୁତ
କେବଣ କାର୍ଯ୍ୟରେ ପାଇଲେ କ୍ଷତ୍ରୀ ବୃତ୍ତ ।
ନୃପତି କୋପ ଯେ କେବଣ ଗୁଣେ କଲା
ସହସ୍ର ବିଧାତାଙ୍କୁ କେବଣ ଗୁଣେ ହେଲା ।
ଏହି କଥା ଶୁଣିଣ ବଢ଼ଇ ମୋର ମତି
ସଂକ୍ଷିପ୍ତ କରିଣ କହ ତୁ କି ରୂପରେ ଯତି ।
ବଶିଷ୍ଠ କହନ୍ତି ତୁମ୍ଭେ ଦଶରଥ ଶୁଣ
ପୂର୍ବର କଥା ଏ ଯେ ପୁରାଣେ ବଖାଣ ।
ଗାଧି ନୃପତିର ଯେ ଦୁହିତା ସତ୍ୟବତୀ
ରୁଚିକ ମୁନିଙ୍କର ଅଟେ ପ୍ରିୟବତୀ ।

ଲକ୍ଷଣବନ୍ତ ଦେଖିଣ ଋଷି ହେଲେ ବିଭା
ଚନ୍ଦ୍ର ରୋହିଣୀ ପରାୟେ ଦିଶୁଛନ୍ତି ଶୋଭା ।
ସେ ରୁଚିକ ଋଷି ଭୃଗୁ ଋଷିଙ୍କ ଶିଷ୍ୟ
ତପସ୍ୟା କରେ ଗୋମତୀ ନଦୀ ପାଶ ।
କଶ୍ୟପ ଗୋତ୍ର ଯେ ଅଟନ୍ତି ମହାଋଷି
ବ୍ରହ୍ମା ତାହାଙ୍କୁ ଯେ ଦେଖିଲେ ପରଶଂସି ।
ହେ ମୁନି ତପ ଯେ କରନ୍ତି ଊର୍ଦ୍ଧ୍ୱରେତା
ସତ୍ୟବତୀ ତାଙ୍କର ଯେ ଅଟନ୍ତି ବନିତା ।
ଦିନେକେ ଗାଧିରାଜା ରୂପବନ୍ତ ରାଣୀ
ସ୍ୱାମୀଙ୍କର ଆଗରେ ଯେ କହନ୍ତି ପ୍ରିୟ ବାଣୀ
ଶୁଣ ଦେବ କନଉଜ ଦେଶର ଅଧିପତି
ମୁହିଁ ଦେଖି ଯିବି ମୋର ଯେ ଦୁହିତା ।
ଏକା ଝିଅ ଗୋଟିକି ମୁଁ କଲି କେତେକାଳ
ଆଉ ମୋହର ତେବେ ନ ଫଳିଲା ଫଳ ।
ଦିଅନ୍ତୁ ଆଜ୍ଞା ମୋତେ ଦେଖି ଆସଇ ଯାଇ
ତୁମ୍ଭର ମୋହର ତ ଅନୁଆନ ନାହିଁ ।
ରାଜା ବୋଇଲେ ତୁମ୍ଭେ ଯାଅ ଯା ଭବାନୀ
ଦେଖିକରି ଆସ ଯାଇ ମୋହର ନନ୍ଦିନୀ ।
କ୍ଷେମେ ଅଛି ନା ସେ ଯେ କୁଶଳରେ ବର୍ତ୍ତି
ଦୟା କରିବେ ଅବା ରୁଚିକ ମହାଯତି ।
କଥା ଜଣା ଯାଇ ଏବେ ଦେଖି ଆସ ଯାଇ
ଶୁଣିକରି ମହାଦେଈ ଗଲେ ବେଗ ହୋଇ ।
ଦାସୀ ମୃଦୁସୁଲିଙ୍କି ସେ ସଙ୍ଗତରେ ନେଲା
ଧନ ରତ୍ନ ଘେନି କରି ଶୁଖ୍ଳାସନରେ ଗଲା ।
ଗୋମତୀ ନଦୀ କୂଳରେ ଯାଇଣ ପହଞ୍ଚିଲା
ରୁଚିକ ମହା ମୁନିଙ୍କର ଆଶ୍ରମ ପାଇଲା ।
ଦେଖିଣ ଦୁହିତା ବେଗେ କରେ ନମସ୍କାର
ମାତାର ମୁଖ ଦେଖି ହେଲା ଶୋକଭର ।
ସତ୍ୟବତୀ କୋଳେ କଲେ ଯେ ଜନନୀ
ମୁଖରେ ଚୁମ୍ବଦିଏ ସ୍ନେହଭରେ ଘେନି ।
ମାତା ଦୁହିତା ଦୁହେଁ ବସିଲେ ମୃଗ ଛାଲେ
ଉଭୟ କୁଳର ସେ କାରଣ ପୁଛିଲେ ।
ମାତାର ସଙ୍ଗରେ ଆସିଥିଲେ ଯେତେ ଜନ
ଅସଂଖ୍ୟ ସତ୍ୟବତୀ ଦେଲେ ଯେ ଭୋଜନ ।
ଏସନ ସମୟେ ପୁଣି ରବି ଅସ୍ତ ହୁଏ •
ରୁଚିକ ମହାଯତି ତପ ତେଜି ଆଏ ।

ଦେଖିଲେ ଦ୍ୱାରରେ ହାନ୍ଦୋଳା ପୁଣି ଅଛି
ଲୋକ ଗହଳ ଦେଖିଣ ଭାରିଯାକୁ ପୁଛି ।
ସତ୍ୟବତୀ ପୁଣି ଆଣି ଜଳ ପାତ୍ର ଦେଲେ
ଜନନୀ ମୋର ଆସିଅଛନ୍ତି ବୋଇଲେ ।
ଶୁଣିକରି ମହାମୁନି ହୋଇଲେ ହରଷ
ପାଦ ପଖାଳି ଯାଇ ଭିତରେ ପ୍ରବେଶ ।
ଦୋହରା ଅଗ୍ନିକି ମୁନି ସନ୍ତୋଷେ ପୂଜା କଲେ
ଦେବ ପିତୃଗଣଙ୍କୁ ଯେ ଅନ୍ନ ବଳି ଦେଲେ ।
ସତ୍ୟବତୀଙ୍କୁ ଯେ ବୋଇଲେ ହକରାଇ
ତୁମ୍ଭର ଜନନୀଙ୍କୁ ଅନ୍ନ ଗୋ ଦିଅ ନାହିଁ ।
ଅତିଥି ଚରଣ ଯାକ ମୁନି ଆପେ ଭୁଞ୍ଜି
କନ୍ଦମୂଳ ଫଳ ମନ ତାର ରଞ୍ଜି ।
ସତ୍ୟବତୀ ନିଜ ମାତାଙ୍କୁ ଅନ୍ନ ନେଇ ଦେଲା
ପୀତ ରସ ଭୁଞ୍ଜି ମାତା ସନ୍ତୋଷ ହୋଇଲା ।
ଏଥୁ ଅନନ୍ତରେ ସେ ଯେ ବଞ୍ଚିଲେ ରଜନୀ
ଝିଅ ଜୁଆଇଁ ଘର ମାତା ରହିଲେ ଦିନ ତିନି
ଦୁହିତାକୁ ତିଆର ବହୁତ କଥା କହି
ଭୋ ମାତ ତୋହର ଯେ ମୋହର ପୁତ୍ର ନାହିଁ
ମୋହର ବଂଶ ଏବେ ହୋଇଅଛି ଶେଷ
ତୁହି ଯେ ସୁଲକ୍ଷଣୀ କରିବୁ ଏବେ କିସ ।
ଭ୍ରାତା ତୁମ୍ଭର ଯେ ଅଟନ୍ତି ମହାଯତି
ପୁତ୍ର ଜାତ କଥା କିମ୍ପାଇ ନ କରନ୍ତି ।
କଶ୍ୟପ ଋଷିଙ୍କଠାରୁ ସେ ହେଲେ ଅବତାର
କିମ୍ପାଇ ମା ବାପ ଅର୍ଜିଲେ କୁମର ।
ସେ କିମ୍ପା ଅଜ୍ଞାନୀ ଯେ ଅଟନ୍ତି ମୁନିବର
ରତିରସେ ପୁଣ ଯେ ଆଣିଲେ କୁମାର ।
କେଉଁ ଧର୍ମ କରନ୍ତି ପୁତ୍ରର ଚିନ୍ତା ଛାଡ଼ି
ଗୋତ୍ର ଅକାରଣେ ସିନା ଯିବ ବୁଡ଼ି ।
ମୋହର ଯେ ବଂଶ ପୁଣ ଯାଉଛନ୍ତି ନାଶ
ତୋହର ଥାଉ ଥାଉ ମୋହର କେଉଁ ଆଶ ।
ଏବେ ବ୍ରହ୍ମଋଷି ତପରେ ନିନ୍ଦିଣ
ଏହାଙ୍କରେ ଦୟା କଲେ ହୋଇବ ପୁଣ ।
ତୁମ୍ଭେ ସତ୍ୟବତୀ ଗୋ ସ୍ୱାଇଁ କି ମୋର କହ
ବୋଲିବୁ ମାତାକୁ ମୋର ପୁତ୍ର ଦାନ ଦିଅ ।
ତୁମ୍ଭଙ୍କୁ ଯେମନ୍ତ ଦେଲେ ମୋର ମାତା ପିତା
ବେନି ବଂଶକୁ ରକ୍ଷା କର ହେ ବେଦବାନ୍ତା ।

ଏତେ କହିଲେ ସେ ଯେକି ବୋଲିବେ ପୁଣ
ଆଜକ ରହିବି ମୁଁ ଯେ ସେଥିର କାରଣ ।
ମାତା ଦୁହିତାଙ୍କର ଏସନକ କଥା
ପାକ ଶେଷ ହୁଅନ୍ତେ ଅସ୍ତ ହୋଇଲା ସବିତା
ତପସ୍ୟା ତେଜିଣ ଯେ ଅଇଲେ ମୁନିବର
ଏ ବିଧି ବିଧାନ ସେ ଦେଖିଲେ ତାଙ୍କର ।
ଶୟନ ସ୍ଥାନେ ଯାଇ କହିଲେ ସତ୍ୟବତୀ
ଜନନୀ ମୋହର ଯେଉଁ କାର୍ଯ୍ୟରେ ଆସିଛି ।
ତାଙ୍କ ପାଇଁ ତୁମ୍ଭ ଆଗେ କହଇ ଯେ ତାହା
କୁଳରକ୍ଷା ହୋଇ ତୁମ୍ଭେ ହୋଇଲ ଯେ ସାହା
ମୋହର ପିତା ମାତା ଅର୍ଜିଛନ୍ତି ମୋତେ
ସତ୍ୟ ମନରେ ମୁନି ସମପଛନ୍ତି ତୋତେ ।
ତୁମ୍ଭେ ହେ ବ୍ରହ୍ମଋଷି କର ପ୍ରତିକାର
ପୁତ୍ର ଦାନ ଦେଇଣ ମୋ ପିତାଙ୍କୁ ଉଦ୍ଧାର ।
ମୋହର ତନୟ ଏବେ ନୋହେଁ ବ୍ରହ୍ମଋଷି
ପ୍ରସନ୍ନ ଚିତ୍ତରେ ମୋତେ ପୁତ୍ର ଦାନ ଦେସି ।
କୁଳ ମୋର ରକ୍ଷା ହେଉ ତୁମ୍ଭର ପ୍ରସନ୍ନେ
ସାଧୁ ବଚନ ତୁମ୍ଭେ ଅର୍ଜ ହେ ସବୁଦିନେ ।
ଭାରିଜାର ମୁଖରୁ ଏସନ ବାଣୀ ଶୁଣି
ଗୁରୁଦେହ ମହାମୁନି ମନେ ମନେ ଗୁଣି ।
ସତ୍ୟବତୀଙ୍କୁ ବୋଲନ୍ତି ଯାହା ପ୍ରକାଶିଲୁମୋତେ
ଏମନ୍ତ କଥା ସଖୀ କହଇ ମୁଁ ତୋତେ ।
ତୁ ଗୋ ସୁନ୍ଦରୀ ରୂପ ଗୁଣରେ ସାର
ତୋହଠାରେ ଶରଧା ରଖିଲେ ମୋହର ।
ପୁତ୍ର ହୋଇଲେ ତୋର ଗୋ ସରିଦ ବୟସ
ତେଣୁ ସଙ୍ଗାତୁଣୀ ଗୋ ନ ପାଇ ରତି ରସ ।
ଏହା ବିଚାରି ଗୋ ନ କରେ ପୁତ୍ର ଜାତ
ତୋହର ଆଗରେ ସଖି କହିଲି ଯଥାର୍ଥ ।
ଯେହେତୁ ପୁତ୍ର ଇଚ୍ଛା କଲୁ ସତ୍ୟବତୀ
କାଲି ଅଗ୍ନିରେ ମୁଁ ଯେ ଦେବଇ ଆହୁତି ।
ବ୍ରହ୍ମାଙ୍କର ସମାନରେ ଉପୁଜିବ ପୁତ୍ର
ତେବେ ସେ ବର୍ଦ୍ଧିତ ହୋଇବ ଭୃଗୁଗୋତ୍ର ।
ତୋହର ଜନନୀ ପାଇଁ ଦେବି ଏକ ଚରୁ
ଏ ମହି ମଣ୍ଡଳେ ସେ ହୋଇବ ହନ୍ତକାରୁ ।
ଏତେ ହୋଇ ଯେ ଶୋଇଲେ ବେନିଜନ
ବଶିଷ୍ଠ ବୋଲନ୍ତି ଶୁଣ ଅଯୋଧ୍ୟା ରାଜନ ।

ଏଥୁ ଅନନ୍ତରେ ପୁଣ ରଜନୀ ପ୍ରଭାତ
ପୂର୍ବ ଦିଗରେ ଉଦୟ ହୋଇଲେ ଆଦିତ୍ୟ ।
ନିତ୍ୟକର୍ମ ସାରିଣ ଯେ ରୁଚିକ ମହାଯତି
ଦୋହରା ଘରେ ପ୍ରବେଶ ହୋଇଲେକ ଆସି ।
ସନ୍ତାନ ଜାତ ଅର୍ଥରେ ଅଗ୍ନିରେ ହୋମଦେଲେ
ଭିନ୍ନ ଭିନ୍ନ କରି ଦୁଇ ଚରୁ ନିର୍ଭା କଲେ ।
ନିଜ ପତିଙ୍କି ଚାହିଁଣ ସତ୍ୟବତୀ ବୋଇଲା
ଦେଖ ଦେଖ ଚରୁ ଏବେ ନିର୍ଭା ଯେ ହୋଇଲା
ତୁମ୍ଭେ ଯାହା ଭୁଞ୍ଜିବ ଗୋ ବେଳ ହୋଇଅଛି
ଆରେକ ଭାଗ ମାତାଙ୍କୁ ଦେବ ଗୋ ମୃଗାକ୍ଷୀ
ଏତେ କହି ମୁନି ଯହୁଁ ତପସ୍ଥାନେ ଗଲେ
ସତ୍ୟବତୀ ଯାଇକରି ମାତାଙ୍କୁ କହିଲେ ।
ଶୁଣ ତୁମ୍ଭେ ଜନନୀ ଗୋ ମୋର ନିଜ ବାଣୀ
ଜୁଆଇଁ ତୋହର ଚରୁ ନିର୍ଭାକଲେ ଆଣି ।
ମୋହ ନିମନ୍ତେ ସେ ନିର୍ଭାକଲେ ଚରୁ
ତୋହର ପୁତ୍ର ଯେ ହୋଇବ ମହାମେରୁ ।
ଶୁଣିଣ ହରଷ ଯେ ଗାଧିରାଜ ରାଣୀ
ଆନନ୍ଦ ମନରେ ସେ ଗଲେ ତତକ୍ଷଣି ।
ଶୁଚିବନ୍ତ ହୋଇଣ ଅଇଲେ ମହାସତୀ
ମନେ ମନେ ବିଚାର କରଇ ଯୁବତୀ ।
ରୁଚିକ ମହାମୁନି ଅଟନ୍ତି ଜ୍ଞାନବନ୍ତ
ଚରୁ ନିର୍ଭା ମୁନି ଯେ କଲେକ ଦୁଇ ମତ ।
ତାହାର ଘରଣୀ ସେ ଯାହା ଅଛି ଦେଇ
ଦୁହିଙ୍କର ସାରସ ତାହାର ସିନା ହୋଇ ।
ମୋହର ଚରୁ ଯେବେ ଦେଇଛନ୍ତି ଭଲ
ସତ୍ୟବତୀ ଚରୁକୁ ହୋଇ ସମୁତଲ ।
ଏତେ ବିଚାରି ସେ ଝିଅ ଚରୁ ଖାଇ
ଏହି ସମୟରେ ଯେ ସତ୍ୟବତୀ ମିଳଇ ।
ସ୍ନାନ ଶୌଚବନ୍ତ ହୋଇ ସେ ତରୁଣୀ
ଚରୁ ଭୁଞ୍ଜିଲା ସେ ଯେ କପଟ ନ ଜାଣି ।
ଏଥୁ ଅନନ୍ତରେ ଯେ ଦିବସ ଶେଷ ହୋଇ
ରୁଚିକ ମୁନିବର ମଢ଼ିଆରୁ ଆସଇ ।
ଭାରିଜାକୁ ଦେଖିଣ ବିଚାରଇ ଋଷି
ତାହାର ଗର୍ଭୁପୁଣ କ୍ଷତ୍ରିୟ ତେଜ ଦିଶି ।
ଚରୁ ପାଇଁକୁଟିକି ହୋଇଲା ତୋର କଳି
ମୋହର ବଂଶରେ ତୁ ଲଗାଇଲୁ କାଳି ।

ସତ୍ୟବତୀ ବୋଲନ୍ତି ଯୋଡ଼ିଣ ବେନି କର
ମୋତେ ତୁମ୍ଭେ କୋପ ନ କର ମୁନିବର ।
ମାତା ମୋର ଚରୁପାତ୍ରେ ବାନ୍ଧି ଥୋଇଥିଲା
ଜନନୀ ଗୋ ଚରୁ ଭୁଞ୍ଜି ଆଗ ହୋଇ ଗଲା ।
ଆଗ ଚରୁକୁ ମୁଁ ପଛେଣ ଗ୍ରାସ କଲି
କେ ଅଟଇ କାହାର ମୁଁ ଜାଣି ନ ପାରିଲି ।
ଋଷି ବିଚାରିଲେ ଏ ଦଇବର ଗତି
ତୋହର ମୋହର ମନ ନ ମିଳେ ସତ୍ୟବତୀ ।
ବ୍ରାହ୍ମଣର ପୁତ୍ର ଯେବେ ହୋଇ ବଳ କ୍ଷତ୍ରୀ
କ୍ଷତ୍ରୀୟ ପୁଅ ଯଦି ହୋଇବ ବାଳ ଯତି
ଏସନକ ଯୋଗଯେ ବିଧାତ ଭିଆଇଲେ
କାହାର ବଳେ ସେ ଯେ କାହାର ଆନକଲେ
ଏହା ଶୁଣି କମ୍ପିଲେ ଯେ ଗାଧିରାଜର ରାଣୀ
ରୁଚିକ ମୁନି ପାଦରେ କରଇ ଦଇନୀ ।
ଭୋ ଋଷି ମୋତେ ତୁମ୍ଭେ ଅନୁଗ୍ରହ କର
ଯେମନ୍ତେ ପୁତ୍ର ମୋର ହୋଇବ ନୃପବର ।
ତପୀ ହୋଇଲେ ତ ରାଜ୍ୟ ମୋର ଏବେ ଗଲା
ବେଦି ନାମେ ବଂଶ ମୋର ଏଠାରୁ ବୁଡ଼ିଲା ।
କନାଉଜ ଦେଶ ପୁଣ ହେବ ହତପାଟ
ଏ କଥା ମୁନି ତୁମ୍ଭେ କହ ପୁଣ୍ୟ ବାଟ ।
ସତ୍ୟବତୀ ଦଇନୀ କରଇ ମୁନିପାଦେ
ମୋତେ ପ୍ରତିକାର ତୁମ୍ଭେ କର ମୁନି ଦେବେ
ତୁମ୍ଭର ଭାରିଯା ହୋଇ କରି ନ ପ୍ରସବି
ଋଷିଆଣିଙ୍କ ଠାରେ ଉପହାସ ପାଇବି ।
ଭୃଗକୁଳ ଗୋତ୍ର ତୋର ଏଠାରେ ସରିବ
କ୍ଷତ୍ରୀ ହୋଇ ପୁତ୍ର ମୋର ଯୁଦ୍ଧରେ ଜିଣିବ ।
ଏଣୁ କୁଳ ଗୋତ୍ରି ତୋର ହୋଇବ ଯେ ନାଶି
ଏଥକୁ ପ୍ରତିକାର କର ତୁ ମହାଋଷି ।
ମାତା ମୋହର ଅଜ୍ଞାନପଣ ଆଚରିଲା
କାହାର କେଉଁ ଚରୁ ନ ଜାଣି ଭକ୍ଷିଲା ।
ସେ ଦୋଷରୁ କ୍ଷମା ମାତେ କର ମହାଋଷି
ମାଆ ଝିଅ କାକୁସ୍ଥ ହୋଇଣ ବୋଲନ୍ତି ।
ଋଷି ବୋଇଲେ ଆମ୍ଭେ ଜାଣୁ ଯୋଗବଳେ
ଲୋଭରେ ମାତା ତୁମ୍ଭର ଭୁଞ୍ଜିବେ ତାହାବଳେ
ଭିନ୍ନ ଭିନ୍ନ କରି ଆମ୍ଭେ ଚରୁ ଗଲୁ ଥୋଇ
ସେ କେମନ୍ତେ ଖାଇଲେ ତୋତେ ଯେ ନ କହି

ସତ୍ୟବତୀ ବୋଇଲେ ଶୁଣିବା ତପୋଧନୀ
ଯଦ୍ୟପି ଅଟନ୍ତି ସେ ମୋହର ଜନନୀ ।
ଯେ ଯାହାର ଶୁଭ ସେହି ପୁଣ ଯେ ମନାସଇ
ମାତା ଦୁହିତା ହେଲେ କାହାର କିସ ଯାଇ ।
ସର୍ବାଙ୍ଗ ପୁରୁଷ ତୁମ୍ଭେ ନ ଜାଣ ବା ତାହା
ଯେ ଯାହାର ଭଲ ବାଞ୍ଛା ମନରେ ସିନାଚାହିଁ
ମୋହର ପୁତ୍ର ଯେବେ ହୋଇବ ରାଜନ
ମୋତେ କେହି ସଂସାରେ ନ ବୋଲିବେ ଧନ୍ୟ
ଏହା ଜାଣିକରି ମୋତେ କର ଦୟା
ଜନନୀ ହୋଇ ମୋର ହୃଦରେ କଲା ମାୟା ।
ତେଣୁ ସେହି କଥା ହୋଇଲା ଯେ ମନ୍ଦ
ସେ ଦୋଷକୁ କ୍ଷମାକର ଭୃଗୁକୁଳ ଚନ୍ଦ୍ର ।
ଏତେ ବୋଲି ସତ୍ୟବତୀ ଜନନୀ ସହିତେ
କାର୍ପୂଣ୍ୟ ହୋଇଣ କହନ୍ତି ବହୁ ମତେ ।
ମୁନି ବୋଇଲେ ଆମ୍ଭେ କରୁଛୁ ଦୋଷ କ୍ଷାମ
ଉଠିଣ ଉଭା ତୁମ୍ଭେ ହୁଅ ବେନି ବାମା ।
ତପିର ଆଜ୍ଞାରେ ଗାଧି ରାଜାର ରାଣୀ
କରପଦ୍ର ଯୋଡ଼ି ଉଭା ହୋଇଲେ ତରୁଣୀ
ମାତାଙ୍କୁ ପଛ କରିଣ ସତ୍ୟବତୀ ଉଭା
ସୁରଭୀର ଆଗେ ଯେହ୍ନେ ନନ୍ଦିନୀ ଦିଶେ ଶୋଭା
ବ୍ରହ୍ମାଙ୍କ ଆଗରେ ଥିଲେ ଯେମନ୍ତେ ଶୋଭାଦିଶନ୍ତି
ବିନୟ ହୋଇଣ ସେ ବଚନ ବୋଲନ୍ତି ।
ଗାଧିରାଜା ପତ୍ନୀକି ଚାହିଁ ବୋଲନ୍ତି ମୁନି
ତୁମ୍ଭେ ଅଟ ଆମ୍ଭର ଗୋ ଗଉରବ ଜନନୀ ।
ଲୋଭ କରି ତୁମ୍ଭେ କଲ ଏସନକ କୃତ୍ୟ
ଅବଶ୍ୟ ତୁମ୍ଭଙ୍କୁ ହେବ ପୁତ୍ର ଯେ ପ୍ରାପତ ।
ରାଜ୍ୟେ ରାଜା ହୋଇ ସେ ବର୍ତ୍ତିବ ବହୁକାଳ
ପୃଥ୍ୱୀରେ ଏକାଙ୍ଗ ଚକ୍ରବର୍ତ୍ତୀ ମହିପାଳ ।
ଅସ୍ତ୍ର ଶସ୍ତ୍ରରେ ହୋଇବ ନିର୍ଜିତା
କାଳେଣ ହୋଇବ ସେ ପରମ ବ୍ରହ୍ମବେତ୍ତା ।
ଯୁଗେ ଯୁଗନ୍ତେଣ ଅନେକ କାଳ ଥିବ
ବ୍ରହ୍ମଋଷି ସଙ୍ଗତରେ ସେ ଗଣିତା ହୋଇବ ।
ତାହାଙ୍କର ପୁତ୍ର ହୋଇ ପାଳିବ ସେ ମହୀ
ଦଶରଥଙ୍କ ଆଗରେ ବଶିଷ୍ଠ ମୁନି କହି ।
ଶୁଣ ଗୋ ଭଗବତୀ ଶ୍ରୀରାମର କଥା
ପର୍ଶୁରାମ ଅବତାରଶୁଣ ତ୍ରୈଲୋକ୍ୟର ମାତ ।

ଶୁଣିଣ ପାର୍ବତୀ ଯେ ମନରେ ତୋଷ ହେଲେ
ମୁନିମାନଙ୍କ କଥା କହ ହେ ବୋଇଲେ ।
ଦଶରଥ ରାଜା ଆଗେ ବଶିଷ୍ଠ ମୁନି ଭଣି
ଆଦ୍ୟ ପ୍ରାନ୍ତ କରି ତୁମ୍ଭେ କହ ଶୂଳପାଣି ।
ଈଶ୍ୱର ବୋଇଲେ ତୁମ୍ଭେ ସ୍ଥିର ମନେ ଶୁଣ
ବଶିଷ୍ଠ କହିବାରୁ ଜାଣିଲେ ନୃପଗଣ ।
ଶୁଣ ତୁ ନୃପବର ଅପୂର୍ବ ରସ କଥା
ଗାଧି ରାଜା ଘରଣୀ ମନରେ ବଡ଼ ବ୍ୟଥା ।
ଋଷିଙ୍କର ଚରୁ ଯେ ଖାଇଲେ ଲୋଭ କରି
ଅବଶ୍ୟ ପୁତ୍ର ଯେ ହୋଇବ ବ୍ରହ୍ମଚାରୀ ।
ତୁମ୍ଭର ବଚନକୁ ଦେଲହିଁ ମୁହିଁ ବର
ସମୟେ ରାଜା ହୋଇଣ ପାଳିବ ନଗ୍ରପୁର ।
ଅନେକ ତପ କରିଣ ହୋଇବ ବ୍ରହ୍ମଋଷି
ଯୁଗେ ଯୁଗେ ରହିବ ସେ ବ୍ରହ୍ମଲୋକେ ବସି ।
ଏତେ କହିଣ ମୁନି ଭାରିଯା ଆଗେ କହି
ସନ୍ତୋଷ ହୋଇଣ ତୁମ୍ଭେ ଶୁଣରେ ରାମସହି ।
ବ୍ରହ୍ମଋଷି ସମାନରେ ହୁଅନ୍ତା ତୁମ୍ଭ ପୁତ୍ର
ମାୟା ତୋର ନାଶ ଯେ କଲେ ଦୁଇଗୋତ୍ର ।
ତାହାଙ୍କର ପୁତ୍ର ଯେ ହୁଅନ୍ତା ମହାରାଜା
ସକଳ ନୃପତିମାନେ କରନ୍ତେ ପାଦପୂଜା ।
ଏବେ ଯେ ବିପରୀତ ହୋଇଲା ପୁଣ ଆସି
ରାଜାର କୁମର ହୋଇ ହୋଇବ ତପସ୍ୱୀ ।
ଋଷିର ପୁତ୍ର ହୋଇ ହୋଇବ ମହିଧର
ଏସନକ ବିଧାତାର ଅଛି ଯେ ବିଚାର ।
ମୋତେ ଉପହାସ କରିବେ ସର୍ବଜନ
ରୁଚିର ମହାଯତିର ଏହିରୂପେ ଜନ୍ମ ।
ତେଣୁ ସେ ଭାଳେଣି ମୋର ପଞ୍ଚ ମନରେ ଗୁଣି
ଏଥକୁ ଉପାୟ ଯେ କରିବାକୁ ପୁଣି ।
ହରିର ଉପାୟରେ ଜନ୍ମିବ ଯେଉଁ ପୁତ୍ର
ମୁନି ବୋଇଲେ ସେ ଧରିବ ଯେଉଁ କୁଳଗୋତ୍ର
କ୍ଷତ୍ରିପଣ ସକାଶେ ଶିରଚ୍ଛେଦ ହେଉ
ତାହାର ପୁତ୍ରଠାରେ କ୍ଷତ୍ରୀପଣ ରହୁ ।
ତପ ଗୁଣ ଘେନିଣ ହୋଇବ ତପି ଆଦି
କ୍ଷତ୍ରିପଣେ କୀର୍ତ୍ତି ରହିବ ସର୍ବ ଭେଦି ।
ତେଣୁ ତାଙ୍କ ପିଅର ପର୍ଶୁ ବୋଲି ରାଇ
ଭଇମ ଆମନ୍ତ୍ରିଣ ପର୍ଶୁରାମ ବୋଲଇ ।

ଜ୍ୟେଷ୍ଠ ଚାରି ଭାଇ ଯେ ତପ କରି ଯାନ୍ତି
ପର୍ଶୁରାମକୁ ସଙ୍ଗେ ଘେନିଣ ସେ ଥାନ୍ତି ।
ନିପମ ବନସ୍ତରେ ଗୋମତୀ ନଦୀ ତୀରେ
ଧ୍ୟାନ ଧାରଣା ହୋଇ ବସନ୍ତି ତପଶାଳେ ।
ପର୍ଶୁରାମ ତହିଁଲେ ଅଭ୍ୟାସ କରେ ଯୋଗ
କ୍ଷଣକେ ତାର ଅଙ୍ଗେ ପ୍ରସନ୍ନ ହୁଏ ରାଗ ।
କାଠ କାଟି କୁଠାର ଘେନିଣ ବନେ ପଶି
ମୃଗ ଗଜ ଶୂକର ମାରଇ ବନେ ପଶି ।
ନବତନ ସିଂହ ସେ ଯେ ସହସ୍ରକେ ଘେନି
ବାମକରେ କେଶ ତାର ଆଣଇ ଧରି ପୁଣି ।
ପିତାଙ୍କର ଛାମୁକୁ ଘୋସାରଇ ନେଇ
ଦେଖିଣ ଯମଦଗ୍ନି ଦୟା ଜ୍ଞାନମତି ହୋଇ ।
ଛାଡ଼ ଛାଡ଼ ବାବୁରେ ମାରିବେ ବନ ପତି
ପିତାଙ୍କର ଆଜ୍ଞା ଶୁଣି ଛାଡ଼ିଦେଲେ ଯତି ।
ପଳାନ୍ତି କେଶରୀ ପୁଣି ଜୀବନ ବିକଳେ
ଗମନ୍ତେ ପାଦ ଯେ ନ ଲାଗଇ ତଳେ ।
ପିତା ବିଚାର କଲେ ଭାରିଯା ପୁତ୍ର ଘେନି
ପର୍ଶୁରାମକୁ ନିତି ତିଆର କରେ ମୁନି ।
ତୁ ବାବୁରେ କିମ୍ପାଇ ବନସ୍ତେ ଯିବୁ ନାଶ
ଜୀବନ ଥିଲେ ସିନା ମିଳଇ ପଉରସ ।
ତପିଙ୍କର କଥା ବାବୁ ଏସନ ନୁହଇ
ଏ ବଚନ ଶୁଣିଣ ପର୍ଶୁରାମ ଯେ ବୋଲଇ ।
ତପ କରିଣ ସାଧିବି କ୍ଷତ୍ରି ପୁଣ
ଏହି ଦୁଇ କଥା ମୋର ନିୟତ ପ୍ରମାଣ ।
କ୍ଷତ୍ରି ହୋଇଣ ମୁଁ ଯେ ସାଧିବଇ ମହୀ
ବୀର ବୋଲି ତିନିପୁରେ ନ ରହିବେ କେହି ।
ତପ ମୁଁ କରିବି ଯେ ବ୍ରହ୍ମାଙ୍କ ସମାନେ
ତ୍ରିଲୋକରେ ମଧମୋତେବୋଲିବେ ମହାମୁନେ
ଏହି ଦୁଇ କଥା ମୁଁ ଯେ ନପାରଇ ଛାଡ଼ି
ଭୋ ପିତାମହ ତୁମ୍ଭେ ନକହ ମୋତେ ବଢ଼ି ।
ଶୁଣିଣ ଯମଦଗ୍ନି ହୋଇଲେକ ତୁନି
କିଛି ନ କହିଲେ ଭ୍ରାତ ଯେ ଜନନୀ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦିଗମ୍ବର
ପର୍ଶୁରାମକୁ କ୍ରୋଧ ନୁହନ୍ତି ମୁନିବର ।
ସେ ଚାରି ଭାଇଙ୍କର ନାମ ଅଟେ କିସ
ଏହି କଥା ଫେଡ଼ି ମୋତେ କହ ଦିଗବାସ ।

ଯୋଗେ ଜାଣିଲି ମୁନିଙ୍କି ପିତା ଗଲେ କହି
ଏହି କଥାମାନ ମୋତେ କହିବ ବୁଝାଇ ।
ଶୁଣି କରି ଦିଗାମ୍ବର ମନରେ ତୋଷ ହେଲେ
ଶୁଣ ତୁମ୍ଭେ ଗଉରୀ କହୁଛି ରସରେ ।
ଦଶରଥ ଆଗରେ ବଶିଷ୍ଠ ଏହା କହି
ମୋ କଥା ତୁମ୍ଭ ଆଗରେ କହିଦେବି ମୁହିଁ ।
ଋଚିକ ମହାମୁନି ଯେ ଚରୁ ଭଗ୍ନ ବେଳେ
ସତ୍ୟବତୀଙ୍କୁ କ୍ରୋଧେ ବୋଇଲେ ସେ କାଳେ ।
ପାଲଟା ଚରୁରେ ପୁତ୍ର ଜାତ ପୁଣ
କ୍ଷତ୍ରିଅଂଶେ ଘେନି ଶିର ଛେଦିବେ ରାଜନ ।
ବ୍ରହ୍ମମୁନି ହୋଇଥିବେ ମୋହର କୁମର
ରେଣୁକା ନାମେ କନ୍ୟା ଭାରିଜା ହେବ ତାର
ତାର ଗର୍ଭେ ଜାତ ହେବ ପାଞ୍ଚ ଯେ କୁମର
ତପ ସାଧିବାକୁ ଚାରି କୁମର ଆଗୁସାର ।
କୋଳ ସେଛ ନନ୍ଦନ ସାଧିବକ୍ଷତ୍ରି ବୃତ୍ତି
ସହସ୍ର ବରଷ ତିନିପୁର କରିବେ ନିକ୍ଷତ୍ରି ।
ରାଜା କୁଳେ ବୀର କରି ନ ଥୋଇବ ଜଣେ
ବିଷ୍ଣୁ କାଳ ଘେନି ଜନ୍ମ ହେ ମହୀରଣେ ।
ଦଶସସ୍ର ପରିଯନ୍ତେ କ୍ଷତ୍ରିପଣ ଥିବ
ଶ୍ରୀରାମକୁ ନ ଦେଖିଲେ ତା କ୍ଷତ୍ରି ବୃତ୍ତି ଯିବ ।
ଚନ୍ଦ୍ର ସୂର୍ଯ୍ୟ ଥିବ ଯାକେ ହୋଇବ ସେ କ୍ଷତ୍ରି
ପର୍ଶୁରାମ ନାମ ତାର ତିନିପୁରେ ଖ୍ୟାତି ।
ଜ୍ୟେଷ୍ଠ ଭାଇ ନାମ ତାର ଚଣ୍ଡରାମ ହେବ
ଆର ତିନି ଭାଇଙ୍କ ନାମ ଶୁଣ ହେ ସମ୍ଭବ ।
ବସୁରାମ ବୋଲି ତାର ତିନି ଭାଇ
ତାର ତଳେ ଗଣ୍ଡରାମ ଶୁଣ ଉମା ତୁହି ।
ତାରତଳେ କେଶୀରାମ ପର୍ଶୁରାମ ସାନ
ପାଞ୍ଚ ଭାଇଙ୍କ ନାମ କଲୁ ତୁ ଶ୍ରବଣ ।
ଋଚିକ ଋଷି ପିତା ମାତା ସତ୍ୟବତୀ
ପୁତ୍ର ଆଗେ  କହିଲେ ସେ ଏ ସକଳ ରୀତି ।
ସେହିଠାରୁ ଯମଦଗ୍ନି ଶାନ୍ତିରୂପ ଧରେ
ଦୁଷ୍ଟଦେଖି ପର୍ଶୁରାମ କିଛି ନ କହିଲେ ।
ଯୋଗ ଜାଣି ଅଛନ୍ତି ସ୍ୱୟଂ ବିଷ୍ଣୁକଳା
ଦଶଅବତାର ସଙ୍ଗେ ହୋଇବେ ଏ ମେଳା ।
ଏଥୁଅନନ୍ତରେ ସେ ଯେ ପର୍ଶୁରାମ ଋଷି
ତପରେ ଜ୍ଜ ତା ହୋଇଲେକ ଆସି ।

କ୍ଷତ୍ରି ଗୁଣ ସାଧିଣ ବନରେ ବିହରେ
ମୃଗ ସମ୍ବର ଗଜ ସିଂହ ବଧ କରେ ।
ପିତାର ଆଜ୍ଞାରେ ତାକୁ ଛାଡ଼ି ଯେ ଦିଅଇ
ଏଥୁଅନନ୍ତରେ କିଛି ଦିନ ଗଲା ବହି ।
ଦିନକେ ଯମଦଗ୍ନି ତପ ସେ କରନ୍ତି
ଜଳ ପାତ୍ର ଘେନିଣ ରେଣୁକା ତୋଳି ଦ୍ୟନ୍ତି ।
ଚିତ୍ରସେନ ଗନ୍ଧର୍ବ ସେ ଆକାଶରେ ଯାଇ
ଛାୟା ସେ ଦିଶନ୍ତେ ରେଣୁକା ଦେଲେ ଚାହିଁ ।
ଯହୁଁ ସେ ମହାସତୀ ତହିଁକି ଲୟ କଲା
ଋଷିଙ୍କର କରରେ ଜଳ ନ ପଡ଼ିଲା ।
ତତ୍‌କ୍ଷଣେ ମୁନି ପୁଣ ଛାଡ଼ିଲେ ତର୍ପଣ
ରେଣୁକାଙ୍କୁ ଚାହିଁଣ ହୋଇଲେ କୋପମନ ।
ତୁହି ତ ପାମରୀ ଲୋ ହୋଇଲୁ ଦୋଚାରୀ
ପର ପୁରୁଷ ଚିତ୍ତ ବଳିଲା ତୋହରି ।
ତୁ ମୋତେ ଭାର୍ଜ୍ଜନ ନୋହୁ ଲୋ ମୋତେ ବାଳ
ଏତେ ବୋଲି ମୁନି ଯେ କ୍ରୋଧରେ ପ୍ରଜ୍ୱଳି ।
ସନ୍ଧ୍ୟାକାଳ ଦେଖିଣ ଜ୍ୟେଷ୍ଠ ପୁତ୍ର ଆସି
ତାହାକୁ ଚାହିଁଣ ଯେ ବୋଲନ୍ତି ବ୍ରହ୍ମଋଷି ।
ଶୁଣରେ ଚଣ୍ଡରାମ ଏ ମୋହର ବାଣୀ
ତୋର ଜନନୀର ପକାଅ ଶିର ହାଣି ।
ଦୋଚାରୁଣୀ ଚିତ୍ତ ବାବୁ ଜାଣିଲିଟି ଯାର
କଠୋର ବଚଣେ କଠୋର ଏହାକୁ କରତୁ ପ୍ରହାର
ଚଣ୍ଡରାମ ବୋଇଲେ ଶୃଣ ହେ ଭୋ ତାତ
ତୁମ୍ଭେ ଅଟ ପିଅର ସେ ଅଟନ୍ତି ନିଜ ମାତ ।
ତୁମ୍ଭର ବ୍ରହ୍ମବୀଜ ଯେବେ ଧଇଲେ ଉଦରେ
ଅନେକ କଷ୍ଟରେ ସମ୍ଭାଳଇ ସେ ଗଭରେ
ଦଶମାସ ପର୍ଯ୍ୟନ୍ତେ ଥୋଇଣ ପ୍ରାଣ ଦେଲା
ଅତିକଷ୍ଟେ ପୁଣ ଭବଦ୍ୱାରେ ଜାତକଲା ।
ଅତି ଦୁଃଖରେ ସେ ପାଳିଲାକ ପୁଣି
ସ୍ତନ ଭାଙ୍ଗି କ୍ଷୀର ଦେଲେ ସେହି ପୁଣି ।
ସେ ପୁଣ୍ୟ ତାହାରି ଶୁଝି ତ ନ ପାରି
ଏବେ ସ୍ୱହସ୍ତେ ତାକୁ କେମନ୍ତେ ଦେବି ମାରି ।
ଏକଥା ମୋର ଉଚିତ ନୋହେ କଦାଚିତେ
ପୁତ୍ର ହୋଇକରି କେହ୍ନେ ମାରିବି ନିଜ ମାତେ
ମାତାକୁ ବଧ କଲେ ଯିବ ଆମ୍ଭ ବଳ
କେହୁ ଯେ ଜାଣିବ ଆମ୍ଭ ହୃଦର ବିକଳ ।

ମାତା ଲାଗି କରି ପଛେ ଆମ୍ଭ ପ୍ରାଣ ଯାଉ
ତୁମ୍ଭର କୀର୍ତ୍ତି ଗୋଟି ଯୁଗେ ଯୁଗେ ଥାଉ ।
ଶୁଣିଣ ମହାମୁନି ହୋଇଲେ ମଉନ
ପୁତ୍ରଠାରେ କୋପ ସେ କରନ୍ତି ଘନ ଘନ ।
ଆବର ତିନି ପୁତ୍ର ମିଳିଲେକ ଆସି
ବସୁରାମକୁ ଚାହିଁଣ ବୋଲନ୍ତି ମହାଋଷି ।
ତୋହର ଜନନୀକି କରରେ ପ୍ରାଣ ହତ
ଦୋଚାରି ନାରୀ ଏହୁ ଜାଣିଲି ଚରିତ୍ର ।
ଶୁଣିଣ ବସୁରାମ ପିତାଙ୍କୁ କହିଲା
ମାତାପାଇଁ ମୋର ଶିର ଛେଦ ହେ ବୋଇଲା
ଚଣ୍ଡରାମକୁ ଋଷି କହିଲେ କ୍ରୋଧ ହୋଇ
ଜନନୀକୁ ଦୁଇ ଖଣ୍ଡ କର ତୁ ବେଗେ ଯାଇ ।
ଚଣ୍ଡରାମ ବୋଲେ ମୁଁ ଯେ ନମାରେ ନିଜ ମାତ
ମୋହର ପ୍ରାଣ ପଛେ ହର ହେ ଭୋ ତାତ ।
ପୁତ୍ରଠାରେ ଋଷି ମନରେ ରାଗ ହେଲେ
କେଶିରାମକୁ ଚାହିଁ ଯମଦଗ୍ନି ବୋଲେ ।
ମୋର ଆଜ୍ଞା ମାନି ତୁରେ ମାତାକୁ ବଧକର
ଦୋଚାରି ନାରୀକୁ ତୁ ନ ରଖ ଏବେ ଘର ।
କେଶିରାମ ବୋଲେ ତୁମ୍ଭେ ଶୁଣ ହେ ପିଅର
ପିତା ମାତା ମାରିଣ କେହୁ କରିଅଛି ଘର ।
ଅବିଚାର କଥା କିମ୍ପା କହ ଦେବ ମୋତେ
ମୋହର ମୁଣ୍ଡକୁ ଏବେ କାଟ ହେ ତୁରିତେ ।
ଧର୍ମ ଶାସ୍ତ୍ର ଦେଖାଇଣ ଅନେକ ତିଆରିଲେ
ଶୁଣିକରି ଚାରି ପୁତ୍ର ବୋଲ ଯେ ନକଲେ ।
ବିଶେଷେ ଜନନୀ ଆବର ସ୍ତିରୀ ବଧ
ଏତେ କଥା ଆଉ କେ କରିପାରେ ସିଦ୍ଧ ।
ଶୁଣିକରି ପିଅର ତବଦ ହୋଇ ବସି
ଏହି ସମୟରେ ପର୍ଶୁରାମ ମିଳେ ଆସି ।
ପିତାର ଚରଣେ ଆସି କଲା ନମସ୍କାର
ପୁତ୍ରକୁ ଚାହିଁଣ ବୋଲନ୍ତି ମୁନିବର ।
ଶୁଣ ତୁରେ ପର୍ଶୁରାମ ଏ ମୋହର ବାଣୀ
ତୋହର ଜନନୀର ପକାଅ ଶିର ଆଣି ।
ଦୋଚାରୁଣୀ ଚରିତ୍ର ମୁଁ ଦେଖିଲି ଏହାର
କୁଠାର ଘେନି ବେଗେ କର ତୁ ପ୍ରହାର ।
ଏହି ତୋର ଜ୍ୟେଷ୍ଠ ଯେ ଅଟନ୍ତି ଚାରିଭାଇ
ମୋହର ବୋଲ ଭାଙ୍ଗିଲେ ଜନନୀଙ୍କ ପାଇଁ ।

ଏ ଭାଇଙ୍କର ଶିର ଛେଦ ପର୍ଶୁଧର
ମୋହର ଆଜ୍ଞା ତୁ ଅବଜ୍ଞା ନକର ।
ଶୁଣିଣ ପର୍ଶୁରାମ ନିଅଇ ବଚନ
ବୋଇଲା କଥାଏ ମୁଁ କହୁଛି ତୁମ୍ଭେ ଶୁଣ ।
ମାତା ସଙ୍ଗେ ଚାରିଭାଇଙ୍କର କାଟିବି ମୁଁ ମୁଣ୍ଡ
ରକ୍ତ ନ ବହିବ ଭୁଞ୍ଜୁଣ ଥିବେ ତୁଣ୍ଡ ।
ଏତେ କହି ପର୍ଶୁରାମ ହୋଇଲେ ଗରମ
କ୍ରୋଧରେ ଅଙ୍ଗ ତାର କମ୍ପେ ଘନ ଘନ ।
କୁଠାର ଘେନିଣ ଯେ ମାତାର ମୁଣ୍ଡ କାଟି
ପକ୍ୱ ଫଳ ପ୍ରାଏ ଭୂମିର ଯେ ଲୋଟି ।
ମୁଣ୍ଡ ଗଣ୍ଡି ଦୁଇଖଣ୍ଡ ସମାନରେ ରଖି
ପୁଣି କ୍ରୋଧ ହୋଇଣ ବୁଲାଏ ବେନି ଆଖି ।
ସେହି କ୍ରୋଧରେ କୁଠାର ପେଶିଲାକ ପୁଣି
ଜ୍ୟେଷ୍ଠ ଚଣ୍ଡରମ ମୁଣ୍ଡ ପକାଇଲା ହାଣି ।
ଏକ ସରି ସାରେ ବେନି ଖଣ୍ଡକୁ ରଖିଲା
ବସୁରାମକୁ କ୍ରୋଧରେ ବେନି ଖଣ୍ଡ କଲା ।
ଏକସରି କରିଣ ରଖିଲା ମୁଣ୍ଡ ଗଣ୍ଡି
କ୍ରୋଧଭରେ ପୁଣି ହୋଇଲା ଉଦଣ୍ଡି ।
କେଶିରାମର ଧଇଲା ବାଳ କରେ
ଦକ୍ଷିଣ କରେ କୁଠାର ଛେଦନ କଲେ ଶିରେ
ଏକଠାବ କରିଣ ରଖିଲେ ତାକୁ ପୁଣ
କ୍ରୋଧ ଶାନ୍ତି ହୋଇଲା ଯେ ପର୍ଶୁରାମ ମନ ।
ଚାରି ଭାଇ ମାତାଙ୍କୁ ପକାଇଲେ ହାଣି
ଠାବ ଠାବ କରିଣ ରଖିଲେ ତାଙ୍କୁ ପୁଣି ।
ଦେଖିଲା ରକ୍ତ ଯେ ନ ବହିଲା କାହିଁ
ବେନି ନେତ୍ରୁ ପର୍ଶୁର ନୀର ଯାଏ ବହି ।
ଦେଖିଣ ସନ୍ତୋଷ ଯେ ଯମଦଗ୍ନି ହୋନ୍ତି
ଅମୃତ ନୟନରେ ପୁତ୍ରକୁ ଚାହାନ୍ତି ।
ମନରେ ବିଚାରନ୍ତି ଏ ପୁତ୍ର ମୋର ସାର
ଲଙ୍ଘିତ ନ କଲା ଏ ବଚନ ମୋହର ।
ପ୍ରସନ୍ନ ମୁଖ ହୋଇଣ ବୋଲନ୍ତି ମାଗ ବର
ଯେଉଁ ବାଞ୍ଛା ସିଦ୍ଧ ଯେ ହୋଇଲା ମୋହର ।
ପିତାକରେ ପ୍ରସନ୍ନ ବଦନ ବେଳ ଜାଣି
କୁଠାର କରୁ ଥୋଇଣ ପର୍ଶୁରାମ ଭଣି ।
ହେ ପିତାମହ ଦେବେ ଦୟା କଲେ ମୋତେ
କଥା ଏକ ଅଛି ମୋର କହୁଅଛି ତୋତେ ।

ଅମର ହୋଇବି ମୁଁ ଦିଅନ୍ତୁ ମୋତେ ବର
ଏହି ଦେହ ଘେନି ମୁଁ ଭ୍ରମିବି ତିନିପୁର ।
ଯମଦଗ୍ନି ବୋଇଲେ ଅସ୍ତୁ ହେଉ ତୋତେ
ପବିତ୍ର ଦେହ ଗୋଟି ଦେଖୁଥିବି ନିତ୍ୟେ ।
ଆବର ବରେକ ଦିଅ ମୋତେ ମୁନି
ମାଗକିନା ପୁତ୍ରରେ ଦେବଇ ଏହିକ୍ଷଣି ।
ଶୁଣିଣ ପର୍ଶୁରାମ ଯୋଡ଼େ ବେନିକର
ଭୋ ପିତା ମୋତେ ଦେବ ଯେବେ ବର ।
ଜନନୀ ସଙ୍ଗରେ ଗଲେ ଚାରିଭାଇ
ଏଥିରେ ଦୋଷ ଯେମନ୍ତେ ମୋତେ ନ ଲାଗଇ
ଋଷି ବୋଇଲେ ତୁ ଯେ ନୋହୁ ପାପୀ
ଏ ମୋହର ଆଜ୍ଞା ତୁ ପାଳିବୁ ଯଦ୍ୟପି ।
ତିନିବେଳ ବର ଦେବଇଁ ତୋତେ ମୁହିଁ
ଦୁଇବର ତୋତେ ଦେଲି ଆନନ୍ଦ ମନହୋଇ
ମାଗ ଆରେ କି ବର ଦେବି ଏହିକ୍ଷଣି
ପର୍ଶୁରାମ କରଯୋଡ଼ି ବୋଲେ ତାହା ଶୁଣି ।
ଯଦ୍ୟପି ପ୍ରସନ୍ନ ମୋତେ ହୋଇଲା ଭୋ ତାତ
ଯେମନ୍ତେ ବଞ୍ଚନ୍ତି ମୋର ଚାରିଭାଇ ମାତ ।
ଦୋଷ ଅନୁରୂପେ ପାଇଲେ ସେହୁ ଦଣ୍ଡ
ପାଞ୍ଚଜଣ ଯାକ ହୋଇଲେ ଦଶଖଣ୍ଡ ।
ଯେବେ ମୋଠାରେ ଦୟାକଲ ଭୋ ତାତ
ଦଇନୀ କରିଣ ମୁଁ ଯେ ମାଗୁଅଛି ସତ ।
ଜନନୀ ଭାଇ ମୋର ଜୀଆଇଁ ପୁଣ ଦେବୁ
ଚଉଦ ଭୁବନରେ କଥା ରଖାଇବୁ ।
ଆବର କଥାଏ ଭୋ ତାତ କରିବୁ ଯେବେ ପୁଣ
ମୋହର ମାରିବାର ନରହୁ ଦେହେ ଚିହ୍ନ ।
ମାରିଥିଲି ବୋଲି ନ ଜାଣିବେ ଭାଇମୋ ଜନନୀ
ନିଦ୍ରାରୁ ଉଠିଲା ପ୍ରାୟେ ମଣିବେ ସେ ପୁଣି ।
ଏ ବର ମାଗୁଅଛି ଦେବାକୁ ଭୋ ତାତ
ଶୁଣିଣ ପ୍ରସନ୍ନ ଯେ ହୋଇଲେ ତପୋବନ୍ତ ।
ପ୍ରସନ୍ନରେ ଋଷି ଯେ ବୋଲନ୍ତି ଶୁଣ ରାମ
ନିଶ୍ଚୟ ମଲା ଲୋକ ଜ୍ୟାଇଁ ଦେବା ଜାଣ ।
ଆମ୍ଭର ବୋଲେ ତୁମ୍ଭେ ବନସ୍ତକୁ ଯାଅ
ଲଳିତା ପତ୍ର ଗୁଡ଼ିଏ ଘେନିଣ ବେଗେଥାଅ ।
ଶୁଣିଣ ପର୍ଶୁରାମ ବନସ୍ତେ ଚଳିଗଲେ
ନୂତନ ପତ୍ର ଘେନିଣ ପ୍ରବେଶ ବେଗେହେଲେ
ପିତା ବୋଇଲେ ରାତ୍ର ଅନ୍ଧାର କାଳ ଜାଣ
ସଦନସ ଚଣ୍ଡୀ ସେ ଆଲୁଅ କର ପୁଣ ।
ଦୋହରା ଅଗ୍ନି ଘେନି ଉଜ୍ଜ୍ୱଳ ରାମ କଲେ
ଗଣ୍ଡୀ ମୁଣ୍ଡ ସବୁ ଯୋଡ଼ିଣ ବେଗେ ଦେଲେ ।
ପତ୍ର ଚୁପୁଡ଼ିଣ କାଟରେ ଦେଲେ ରସ
ନ ଦିଶିଲା ଚିହ୍ନ ଭଲରେ ସଦୃଶ୍ୟ ।
କମଣ୍ଡଳ ଜଳ ପୁଣ ମନ୍ତୁରିଲେ ଋଷି
ଜୀବନ୍ୟାସ କଲେ ମୃତ ଶବ ଉଠି ।
ଦିଅନ୍ତୁ ବୋଇଲେ ଯେ ଯହୁଁ ବ୍ରହ୍ମମୁନି
ତକ୍ଷଣେ ଜୀଇଲେ ଚାରି ଭାଇ ଯେ ଜନନୀ ।
ଉଠି ନମସ୍କାର କଲେ ପିତାଙ୍କର ପାଦେ
ସ୍ୱର୍ଗରେ ସାଧୁ ସାଧୁ କରନ୍ତି ଦେବ ବୃନ୍ଦେ ।
ଧନ୍ୟରେ ପର୍ଶୁରାମ ଧନ୍ୟରେ ତୋର ବୁଦ୍ଧି
କୁଠାର ଚୋଟକରେ ବୋଧିଲୁ ତପନିଧି ।
ପିତାର ଆଜ୍ଞା ଯେ ପାଳିଲୁ ଯତ୍ନକରି
ମାତା ଭ୍ରାତା ଜିଆଇଲ ପିତାକୁ ବୋଧକରି ।
ଅମର ହୋଇଲୁ ତୁ ରଖିଲୁ ନିଜ ପ୍ରାଣ
ବାବୁ ପର୍ଶୁରାମ ଭୃଗୁକୁଳ ଉଦ୍ଧାରଣ ।
ସ୍ୱର୍ଗରେ ଶୁଭିଲା ଯହୁଁ ଏସନକ ବାଣୀ
ଯମଦଗ୍ନି ସନ୍ତୋଷ ହୋଇଲେ ତାହା ଶୁଣି ।
ପର୍ଶୁରାମକୁ ମୁନି ନେଇ ବସାଏ କୋଳେ
ଚୁମ୍ବନ ଦେଇଣ ବୋଲନ୍ତି ତପଶିଳେ ।
ତୁହିତ ପର୍ଶୁରାମରେ ମୋହର କୁଳମଣି
ପ୍ରାଣର କାରଣ ମୋର ଜୀବନ ଧାରିଣି ।
ତୋହରେ ମୋର ବଂଶ ହୋଇବ ପୁଣ ରକ୍ଷା
ତୋତେ ଦେବି ପୁତ୍ର ଅନ୍ତେ ବ୍ରହ୍ମଦୀକ୍ଷା ।
ଏତେ ବୋଲିଣ ମୁନି ପର୍ଶୁରାମର କର୍ଣ୍ଣେ
ସାରସ୍ୱତ ମନ୍ତ୍ର ସେ କହିଲେ ବ୍ରହ୍ମଜ୍ଞାନେ ।
ଯେମନ୍ତେ ସେ ନ ମରେ ଯୁଗେ ଯୁଗେ ଥିବ
ସେମନ୍ତେ ଦୟା ତାକୁ କରନ୍ତି ବାସୁଦେବ ।
ନାରାୟଣ ମନ୍ତ୍ର ଉପଦେଶ ତାକୁ ଦେଲେ
ଧ୍ୟାନ ଯେ ଧାରଣା ମନ୍ତ୍ରମାନ କହିଦେଲେ ।
ତପ ମନ୍ତ୍ର କହିଲେ ସେ ଯେ ସେ
ଯେଣେ ସେ ସକଳ ଦେବେ ଅବଶ୍ୟ ।
ବିଷ୍ଣୁର ଧନୁ ହେ ରୁଦ୍ରଠାରେ ଥିଲା
ଯମଦଗ୍ନି ତାର ପିତା ଆଣି ଦେଲା ।

ସେ ଧନୁ ପର୍ଶୁ ରାମରେ ସମର୍ପିଲେ ତାତ
ରଘୁନାଥଙ୍କୁ ଦେଖିଲେ ଏଧନୁଦେବୁରେ ନିୟତ
ଏ ଧନୁ ବିଷ୍ଣୁ ଅବତାର ଅଟଇ ସମ୍ଭୁତ
ଏ ଧନୁ ଧରିଥିଲେ ଜିଣିବୁ ଜଗତ ।
ଏହ କୋଠାର ପ୍ରାପତ ହେଉରେବାବୁ ତୋତେ
ଅସ୍ତ୍ର ଶସ୍ତ୍ର ବିଦ୍ଧମୁନି କହିଣ ଦେଲ ଯେବେ ।
ଯେବଣ ମନ୍ତ୍ରରେ ଚଳଇ ଯେଉଁ ଶର
ତହିଁକି ପାଦଗତି ଯେବଣ ବେଭାର ।
ସହସ୍ର ସହସ୍ର ଯେ କହିଲେ ଯହୁଁ ମୁନି
ପର୍ଶୁରାମ ଆନନ୍ଦ ହୋଇଲେ ତାହାଶୁଣି ।
ଏଥୁଅନ୍ତେ ଯେ ଚାରିଭାଇ ମାତା
ନିତ୍ୟକର୍ମ ସାରିଣ ହୋଇଲେ ଜଗଜିତା ।
ପିତା ପୁତ୍ର ନିତ୍ୟକର୍ମ ସାରିଣ ତକ୍ଷଣ
ଯେକିଛି ଫଳ ମୂଳ ଆହାର କଲେ ଜାଣ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ପର୍ଶୁରାମ ଚରିତ୍ର ଶୁଣ ନିର୍ମଳ କରି ମତି ।
ଏଥୁ ଅନନ୍ତରେ ଯେ ଶୁଣ ଦିବ୍ୟ ରୀତି
ବିଷ୍ଣୁ ଆସନ ଧରି ଭୃଗୁପତି ।
ଆୟତ କରି ସେ ଯେ ବିନ୍ଧିଲେକ ବାଣ
ରଚିକ ତରୁ ଦେଲେକ କାରଣ ।
କ୍ଷତ୍ରି ଅଂଶ ଧରିଣ ହେଲେ ମହାବଳୀ
ବନରେ ପଶି ଗଜ ମୃଗ ସିଂହ ଦଳି ।
କେତେକ ଦିନକାଳ ଯହୁଁ ଗଲା
ପର୍ଶୁରାମ ତେଜ ଯେ ହେଲା ଅନର୍ଗଳା ।
ଦେଖିହରି ସନ୍ତୋଷ ହେଲେ ଯମଦଗ୍ନି
ଆବର ରେଣୁକା ଗର୍ଭଧାରୀ ଯେ ଜନନୀ ।
ପୁତ୍ରକୁ ପ୍ରଶଂସା କରନ୍ତି ବହୁତ ପୁଣି
ଏକାନ୍ତ ହୋଇଣ ପିତା ମାତାର ଭାଳେଣି ।
ଦିନେକ ଯମଦଗ୍ନି କରନ୍ତେ ଶୁଣି ଧ୍ୟାନ
ଆସିଣ ମିଳିଲେ ସେଠାରେ ସହସ୍ରାର୍ଜ୍ଜୁନ ।
ଦେଖିଣ ସନ୍ତୋଷ ହୋଇଲେ ଯମଦଗ୍ନି
ଆବର ରେଣୁକା ଅଟନ୍ତି ଋଷିର ଘରଣୀ ।
ଜାଣିଣ ମୁନିବର ପୂଜା ତାକୁ କଲେ
ସୁରଭୀକୁ ଯାଇଣ ସେ ସକଳ କହିଲେ ।
ଫଉଜ ଘେନିଣ ରାଜା ବିଜୟେ ସହସ୍ରାର୍ଜ୍ଜୁନ
ସବୁଙ୍କ ଭୋଜନ ଦେବ ଗୋ ତୁମ୍ଭେ ପୁଣ ।
ରାଜାର ପାତ୍ର ମନ୍ତ୍ରୀକୁ ସଞ୍ଚା ଆଣି ଦେଲେ
ସକଳ ଲୋକକୁ ଚରଚା ବିଧିକଲେ ।
ଯେ ଯାହାର ଅନୁରୂପେ ଭୂରୀ ଭୋଜନଦେଲେ
ସନ୍ତୋଷ ହୋଇଣ ତହିଁ ପ୍ରଶଂସା ସର୍ବକଲେ ।
ରାଜା ପଚାରିଲେ ସେ କାହୁଁ ଯେ ସମ୍ପାଦିଲେ ।
ଏତେ ସୈନ୍ୟଙ୍କୁ ମୋର ରାନ୍ଧଣା ମଞ୍ଚକଲେ ।
ଋଷି ବୋଇଲେ ତୁମ୍ଭେ ଶୁଣ ହେ ମହିଧର
ସୁରଭି ପ୍ରସାଦରେ ଚରଚା ସବୁ ତୋର ।
ଶୁଣି ନୃପତି ଗଣ ସନ୍ତୋଷ ହୋଇଲେ
ଲୋଭେଣ ଋଷିଙ୍କୁ ସୁରଭି ମାଗିଲେ ।
କଦାଚ୍ଚିଦେ ସୁରଭିକି ନଦେଲେକ କତି
କୋପଭର ହୋଇଣ ଗର୍ଜ୍ଜଇ ନରପତି ।
ଖଡ୍‌ଗ ଘେନିଣ ପୁଣ ଯତିକୁ ମାରିଲା
ଅନ୍ୟାୟ କରିଣ ରାଜା ବ୍ରହ୍ମହତ୍ୟା କଲା ।
ମହିରେ ପଡ଼ି ଋଷି ଗଲା ଶିର କଟି
ପବିତ୍ର ଅଙ୍ଗ ଗୋଟି ଭୂମିରେ ପଡ଼ିଲୋଟି ।
ଋଷିଙ୍କୁ ମାରିଣ ତହୁଁ ସୁରଭି ବାନ୍ଧିନେଲା
ଋଷିର ପାଶରେ ପର୍ଶୁରାମ ଯେ ନଥିଲା ।
ଋଷିଙ୍କି ମାରିଣ ତହୁଁ ଗଲେ ନୃପବର
ଆସିଣ ମିଳିଲେ ଋଷିଙ୍କ ପାଞ୍ଚ ଯେ କୁମର ।
ରେଣୁକା ଦେଖିଣ ଯେ ବହୁତ ଶୋକକଲେ
ଆହା ସ୍ୱାମୀ ବୋଲିଣ ସେ କୋଳରେ ଧଇଲେ
ପର୍ଶୁରାମକୁ ଚାହିଁଣ ଜନନୀ କାନ୍ଦନ୍ତି
ମୃଗୟାକୁ ଆସିଥିଲା ସହସ୍ରାର୍ଜ୍ଜୁନଟି ।
ଏଠାରେ ପ୍ରବେଶ ହୋନ୍ତେ ମୁନି ସୁଖୀହେଲେ
ପାତ୍ର ମନ୍ତ୍ରୀ ଲୋକଙ୍କୁ ଗନ୍ଧଣା ସଞ୍ଚା ଦେଲେ ।
ପକ୍ୱଗ୍ରାସ ଭୋଜନରେ ରାଜା ତୋଷ ହେଲେ
ମଢ଼ିଆରେ ନଥିଲା ମୁନି କାହୁଁ ଆଣିଦେଲେ
ପାତ ମନ୍ତ୍ରୀ ବୋଇଲେ ସୁରଭି ସବୁ ଦିଏ
ଶୁଣିକରି ରାଜନ ସୁରଭି ମଗାଏ ।
ନଦେବାରୁ ଋଷିଙ୍କୁ ମାଇଲା କ୍ରୋଧଭରେ
ପ୍ରାଣନାଥ ମାରି ମୋର ସୁରଭିକୁ ନେଲେ ।
ଯମଦଗ୍ନି ଋଷି ମୋର ଅନାସ୍ତ ହୋଇଲା
ଏମନ୍ତ ପ୍ରକାରେ ହେ ଶୁଣ ପଞ୍ଚୁବଳା ।
ପାରିଲେ ପିତୃକାର୍ଯ୍ୟ କରରେ ପର୍ଶୁଧର
କ୍ଷତ୍ରି ବୋଲାଇଣ ତୁ ଧର ଧନୁଶର ।

ଏହି ଚାରିଜଣ ତପରେ ଆସକ୍ତ
ଯୁଦ୍ଧ କରି ନପାରିବେ କହୁଣ ଅଛି ସତ ।
ତୁ ଯେବେ ଉଦ୍ଧରି ପାରୁ ପିତା ମନ
ଭ୍ରଥାଙ୍କୁ ଘେନି ମୁଁ ଯେ ପଶିବି ହୁତାଶନ ।
ଏତେ ବୋଲି ଦେବୀ ଯେ ରେଣୁକା ମହାସତୀ
ଚାର ପୁତ୍ରଙ୍କୁ ବୋଇଲା ଅଣାଅ କାଠ ଧାତି ।
ସ୍ୱାମୀକୁ ଘେନିଣ ଅଗ୍ନିରେ ପ୍ରବେଶ ବେଗ ହୁଏ
ଜ୍ୟେଷ୍ଠ ପୁତ୍ର ଚଣ୍ଡରାମ ମୁଖାଅଗ୍ନି ଦିଏ ।
ଋଷିଗଣ ନିମନ୍ତ୍ରିଣ ଦଶ କ୍ରିୟା କଲେ
ପିତା ଶୁଦ୍ଧି କ୍ରିୟାସାରି ଚାରିଭାଇ ଗଲେ ।
ଋଷିଗଣ ସବୁ ମେଲାଣି ହୋଇଲେ
ପିତୃ କାର୍ଯ୍ୟ କର ପର୍ଶୁରାମଙ୍କୁ କହିଲେ ।
ରାଜା ଯେବେ ଋଷିଙ୍କୁ କରିବ ପ୍ରାଣେ ହତ
ପର୍ଶୁରାମ କରିବେ ରାଜାଙ୍କୁ ନିପାତ ।
ଏତେ କହି ମୁନି ଯେଝା ସ୍ଥାନେ ଗଲେ ଚଳି
ପର୍ଶୁରାମ କ୍ରୋଧ ଯେ କହିଲେ ନ ସରି ।
ଚାରିଭାଇ ବୋଇଲେ ପର୍ଶୁରାମ ଆସ
ଆମ୍ଭର ହାତରେ ବାବୁ ରାଜା ନୁହେ ନାଶ ।
ନୃପତି ବାହୁବଳେ ଆମ୍ଭେ ଯେ ତପ କରି
ଅଜ୍ଞାନ ଚରିତ୍ର ଯେ କଲା ଦଣ୍ଡଧାରୀ ।
ମହାଋଷି ବଦ୍ଧ କଲେ ସୁଜ୍ଞାନ ନ ହୋଇ
ଏଡ଼େ ପାପ କଥା ନଥିଲା ତ ହୋଇ ।
ଯେବଣ କାଳରେ କାର୍ତ୍ତିକ ରାଜା ମୃତହୋଇ
ଅର୍ଜ୍ଜୁନ ରାଜା ହେବାକୁ ପାତ୍ର ମନ୍ତ୍ରୀ କହି ।
ନୋହିବି ରାଜା ବୋଲିଣ ଗଲା ସେ ପଳାଇ
ପାତ୍ର ମନ୍ତ୍ରୀ ପ୍ରଜାମାନେ ଦୁଃଖୀ ହୋଇ ।
ବତତ୍ରୟ ମହାଋଷି ଶରଣ ଯାଇ ପଶି
ଶୁଣିକରି ପାତ୍ର ମନ୍ତ୍ରୀ ମିଳିଲେକ ଆସି ।
ଋଷିଙ୍କୁ ବୋଇଲେ ତୁମ୍ଭେ ଶୁଣ ତପଚାରୀ
ହୋଇବ ଏହି ବଂଶରେ ଏହି ଦଣ୍ଡଧାରୀ ।
ପିତା ଦେଖ ଏହାର ଯେ ହୋଇଲା ମରଣ
ରାଜ୍ୟ ଛାଡ଼ଇ ଏ ଯେ କେବଣ କାରଣ ।
ଶୁଣିଣ ମହାମୁନି ଅର୍ଜ୍ଜୁନଙ୍କୁ ରାଇ
ଆଜ୍ଞା ଦେବେ ରାଜା ହୁଅ ତୁ ରେ ଯାଇ ।
କୁମର ବୋଇଲେ ନୋହିବ ନୃପତି
କିମ୍ପାଇ ପାଇବି ମୁଁ ଯେ ଏଡ଼େକ ଦୁର୍ଗତି ।
ରାଜା ହୋଇଲେ ପୁଣ ଜନ୍ମ ଆଉ ନାହିଁ
ଏଡ଼େ ପାପଭାର ସହିବି କିସ ପାଇଁ ।
ଋଷି ବୋଇଲେ ତୁ ଯେ କିମ୍ପା ଭୟ କରୁ
ରାଜାର ପୁତ୍ର ହୋଇଣ କଥା ନ ବିଚାରୁ ।
ତୁହି ରାଜା ନୋହିଲେକ ପାଳ ବାବୁ ପୃଥ୍ୱୀ
ତୁ କିମ୍ପାଇ ବାବୁରେ ପଶୁ ଏଥି ।
କୁମର ବୋଇଲେ ମୁଁ ରାଜାକୁ ଭୟ କରିଥାଇଁ
ଅନେକ ଶତ୍ରୁଛନ୍ତି ପିତା ମୋର ମଲେ ଭ୍ୟାଇ
ସତାଇଶ ସହସ୍ର ରାଜା ଅଟନ୍ତି ମୋର ବାଦି
ଏହି କଥା ଗୋଟି ଯେ ମନରେ ମୋର ଭେଦି
ଋଷି ବୋଇଲେ ତୋର ବହୁତ ଛନ୍ତି ବଳ
କିମ୍ପାଇ କୁମର ତୁରେ ହେଉଛି ବିକଳ ।
ମନ୍ତ୍ରୀ ଅମନାତ୍ୟ ଯେ ଅଇଲେ ତୋତେ ନେଇ
ନ ଜାଣିଣ ନାସ୍ତି ତୁ ରେ କରୁ ବାଳପୋଇ
ଯାଆଯା ରାଜ୍ୟରେ ତୁ ହୁଅସି ନୃପତି
ତୁହି ନପାଳିଲେ ପାଳିବ କେହୁ ପୃଥ୍ୱୀ ।
କୁମର ବୋଇଲେ ତୁମ୍ଭେ ଶୁଣ ହେ ବ୍ରହ୍ମଚାରୀ
ପିତା ଶତୃବଳ ମୋର ପକାଇବେ ମାରି ।
ରଥ ଗଜ ଅଶ୍ୱ ଅଳପ ଅଛି ମୋର
ତେଣୁ ଯେ ମନରେ ମୋର ହେଉଛି ବିକଳ ।
ତୁ ମୋତେ ଦୟା ଯେବେ କରିବୁ ମୁନିବର
ମୋତେ ଯେବେ ସାହା ତୁମ୍ଭେ ହେବ ମୁନିବର
ଏ ମୋହର ପାପ ପୁଣ୍ୟ ଯେତେକ ଲାଗିଥିବ
ତୁମ୍ଭେ ଯେବେ ବିନାଶିବ ନିର୍ଭୟ ହୋଇବ ।
ଋଷି ବୋଇଲେ ତୁରେ ଶୁଣସି କୁମର
ଯେ ତୋହର ଇଚ୍ଛା ମାଗ ତୁରେ ବର ।
ଏହା ଶୁଣି ଅର୍ଜ୍ଜୁନ ବୋଲନ୍ତି ବଚନ
ଯେବେ ଦୟା ମୋତେ କଲ ତପୋଧନ ।
ଯୁଦ୍ଧରେ ସମ ମୋତେ ନୋହିବ ଯେ କେହି
ଏକାଙ୍ଗ ଚକ୍ରୀବର୍ତ୍ତ ହୋଇବିଟି ମୁହିଁ ।
ଅନ୍ତରୀକ୍ଷ ଗମନ କରିବ ମୋର ରଥ
ଏହିକ୍ଷଣି ହେଉ ମୋର ସହସ୍ରକେ ହାତ ।
ଏହି ବରେ ମୁହିଁ ପୁଣି ହୋଇବି ନୃପତି
ଅସ୍ତୁ ହେଉ ବୋଲିଣ ବୋଇଲେକ ଯତି ।

ପୁଣି ଋଷି ଆଜ୍ଞା ଦେଲେ ଶୁଣରେ କୁମର
ଋଷିଙ୍କି ଲଙ୍ଘିଲେ ନ ରହିବ ବଂଶ ତୋର ।
ଶୁଣିଣ କୁମର ଯେ ସାଆନ୍ତ ପାତ୍ର ଧରି
ପ୍ରବେଶ ହୋଇଲା ଆପଣାର ପୁରୀ ।
ସିଂହାସନେ ବସିଣ ଧରାଏ ଦଣ୍ଡଛତ୍ର
ଅବିହିତ କହିଲା ଯେ କୀର୍ତ୍ତିବୀର୍ଯ୍ୟ ସୁତ ।
ପିତାଙ୍କୁ ଅଗ୍ନିରେ ନେଇ ଦହନ କରାଇଲା
ଅଗ୍ନି ଲଗାଇଣ ଯେ ମାତାକୁ ବୋଧିଲା ।
ଯେ ବିଧି ବିଧାନରେ ପ୍ରତେ କରେ
ଦଶକ୍ରିୟା କରିଣ ଯେ ପିତାଙ୍କୁ ଉଦ୍ଧରେ ।
ଚତୁର୍ଦ୍ଦଶ ରାଜାଙ୍କୁ ଆଣିଲା ପୁଣ ଧରି
ପୃଥ୍ୱୀରେ ନୃପତି ନୋହିଲେ କେହି ସରି ।
ସପ୍ତଦ୍ୱୀପରେ ଯେ ଯେ ହୋଇଲାକ ରାଜା
ତ୍ରୈଲୋକ୍ୟରେ ତାଙ୍କୁ କରନ୍ତି ପାଦ ପୂଜା ।
କ୍ଷତ୍ରି ହୋଇଣ ପୃଥ୍ୱୀରେ ଜଣେ ନୁହଁ ସରି
ଦୁଷ୍ଟଜନମାନଙ୍କୁ ସେ ନାଶେ ଦଣ୍ଡଧାରୀ ।
ଦାତା କ୍ରୟ ଯେ ଋଷିଙ୍କର ପ୍ରସାଦେ
ପୃଥ୍ୱୀ ସାଧ କଲା ସହସ୍ରା ଅର୍ଜ୍ଜୁନ ପ୍ରସାଦେ ।
ଯେ ଅବା ଦୋଷ କରଇ ମନ ଅବା ଜାଣି
ତକ୍ଷଣ ନୃପତି ତାକୁ ପକାଏ ବେଗେ ହାଣି ।
ବିମାନ ଆରୋହି ମିଳେ ଯାର ପାଶ
ଦୋଷ ଅନୁରୂପେ କରଇ ତାକୁ ନାଶ ।
ଦୁଷ୍ଟଜନଙ୍କର ଲାଗିଲାକ ଭୀତ
ମଗଧ ଦେଶରେ ଯେ ବ୍ରାହ୍ମଣ ଇନ୍ଦ୍ରଜିତ ।
ଶଶୀକର ନାମରେ ଯେ ଅଟଇ ତାର ସୁତ
ରୂପରେ ସୁନ୍ଦର ଯେ ଯୁବା କାମ ଜିଣିତ ।
ଧନବନ୍ତ ପଣେ ଯେ କୁବେର ସଙ୍ଗେ ସରି
ବୁଦ୍ଧି ବିଦ୍ୟାରେ ଅଟେ ଗଣେଶ ପରି ।
ତାହାର ଯୁବତୀ ନାମ ଅଟଇ କାଞ୍ଚିଶୋଭା
କେତେ ସମୟ ପରେ ହେଲେ ନବଯୁବା ।
ଶଶୁର ଚନ୍ଦ୍ରଜିତ ଇଙ୍ଗିତକୁ ରାଇ
ଫଳ ତଣ୍ଡୁଳ ସେ ଦେଇଣ ପଚାରଇ ।
ତୁମ୍ଭେ ଯେ ଖଡ଼ି ରତ୍ନ ତୁମ୍ଭଙ୍କୁ ଗଚାରି
କେବଣ ଦିନ ବନ୍ଧାପନା କହିବି ବିଚାରି ।
ଶୁଣିକରି ଯଉତିଶ ପଡ଼ିଲେ ଯେ ଖଡ଼ି
ନବ ଗ୍ରହ ସ୍ଥାପିଲେ ସେ କୋଠିଏ ସଜାଡ଼ି ।

ରଜ ଚକ୍ର ବିଧାନ ଡିକଟୀରେ ଗଣଇ
ଶୁଭା ଶୁଭ କର୍ମ ଯେ ବିଚାର ମଣଇ ।
ଚନ୍ଦ୍ରଜିତକୁ ରାଇ କହିଲେ ଗଣିତ
ଶୁଭ ଯୋଗେ ଏପରିତ ପଡ଼ି ସଙ୍ଗତେ ।
ସୌଭାଗୀ ସୁଲକ୍ଷଣୀ ହୋଇବ ମହାଦେଈ
ଧନ ପୁତ୍ର ପ୍ରାପତ ବହୁତ ହୁଅଇ ।
ସ୍ୱାମୀର ଯଶ ଶିରୀ ହୋଇବ ବର୍ଦ୍ଧମାନ
ସର୍ବ ସିଦ୍ଧି କଥା ଯାର ନାହିଁ ଅବିଗୁଣ ।
ଶୁକ୍ର ଶୁଭ ଥିବାରୁ ହୋଇଅଛି ଏହି
କାଳ ଅଶୁଦ୍ଧ ହୋଇଅଛି ଶୁଣ କିନା ଏହି ।
ଆବର ମାସେ ପୁଣ ତିନି ଦିନ ଯିବ
ଭୃଗୁ ଗ୍ରହେ ବେନି ଯେ ଉଦେ ହୋଇବ ।
ବୈଶାଖ ଶୁକ୍ଳପକ୍ଷ କ୍ରୟୋଦଶୀ ଦିନ
ସେହି ଦିନ ଭିତରେସେ ହେବ ବନ୍ଧାପନ ।
ଏତେ କହିଣ ହେ ଗଲାକ ଜ୍ୟୋତିଷ
ଚନ୍ଦ୍ରଜିତ ମନରେ ଯେ ହୋଇଲେ ହରଷ ।
ପୁତ୍ର ଶଶିକରକୁ ରାଇଣ ତିଆରି
ପଣ୍ଡିତ ବୋଇଲେ ଗ୍ରନ୍ଥ ବିଚାର କରି ।
ଚୈତ୍ର ମାସ ଗଲେ ଯେ ହୋଇବ କାର୍ଯ୍ୟସିଦ୍ଧି
ବୈଶାଖ ମାସରେ ହେବ ବନ୍ଧାପନା ବିଦ୍ଧି ।
ଶୁଣିଲେ ଶଶୀକର ପିତାଙ୍କର ବାଣୀ
ହେଉ ବୋଲି ବୈଶାଖ ମନରେ ଲାଜ ଭଣି ।
ଏଥୁ ଅନନ୍ତରେ ଗଲାକ ଦିନ ଦଶ
ଭାରିଯାକୁ ଦେଖି ଶଶିକର ମନରେ ହରଷ ।
ଦିନୁ ଦିନୁ ଦେହ ତାର ଦିନେ ଦିଶୁ ଆନ
ଶୁଦ୍ଧ ସୁବର୍ଣ୍ଣ ଜାଣିଣ ଜାନୁ ଯଉବନ ।
ଶଶୀକର ଭାରିଯା ଆଗରେ ପୁଣ ଥାଇ
ମନେ ମନେ କାମ ରତିରେ ଶ୍ରଦ୍ଧା ପାଇ ।
ମୋହର ଭାରିଜା ତ ରୂପରେ ରୂପବନ୍ତୀ
ଦେଖିକରି ପଞ୍ଚଆତ୍ମା ଅସ୍ଥିର ହେଉଛି ।
ଏ ନବ ଯଉବନକୁ ମର୍ଦ୍ଦନ୍ତି ଯେବେ କରେ
ଶୃଙ୍ଗାର କରନ୍ତି ନାନା ବିବିଧ ପ୍ରକାରେ ।
ସୁରଙ୍ଗ ଅଧର ମୁଁ ଯେ ଦିଅନ୍ତି ଚୁମ୍ବନ
ଏହି କଥା ବିଚାରଇ ଶଶିକର ମନ ।
ଏ ସମୟେ କାଞ୍ଚିଶୋଭା ପୁଷ୍ପବତୀ ହେଲା
ଚାରି ଦିନରେ ସେହୁ ଶୁଦ୍ଧ ସ୍ନାନ କଲା ।

ମଧ୍ୟରେ ଦୁଇ ଦିନ ଗଲା ଯେ ତହିଁ ବହି
ଶଶିକର କାମଭରରେ ଉତ୍ସାହ ମନ ହୋଇ ।
ସପ୍ତଦିନ କାଞ୍ଚି ଶୋଭା ଗୃହରେ ରାବୁଥିଲା
ଏ ସମୟେ ଶଶ୍ୟକର ଗୃହକୁ ଅଇଲା ।
ଦେଖିଲାକ କେହି ନାହିଁ ଏହି ଘର
କନ୍ଦର୍ପ ପୀଡ଼ାରେ ସେ ଯେ ହୁଏ ଥରହର ।
ମାତା ପିତା ଭଗ୍ନି ସେ କାହାକୁ ନ ଦେଖିଲା
ଶଶିକର କାମ ଦୁଃଖ ଆରତ ହୋଇଲା ।
କାଞ୍ଚି ଶୋଭାକୁ ସେ ଧରିଣ କୋଳକଲା
ହିଆରେ ହିଆ ଭିଡ଼ି ମୁଖରେ ଚୁମ୍ବ ଦେଲା ।
ବୋଇଲା ସଖୀରେ ରଖ ମୋର ପ୍ରାଣ
ହୃଦେ ମୋର ପୀଡ଼ାକଲା କାମଦେବ ବାଣ ।
ତୋରୂପ ଦେଖିଣ ମୋ ଜୀବନ ଅସ୍ଥିର
ରତିଦାନ ଦେଇ ମୋତେ ସତୀ ରକ୍ଷା କର ।
କାଞ୍ଚି ଶୋଭା ବୋଲେ ସ୍ୱାମୀ ହୋଇଲକି ବାଇ
ମୁହିଁ ତୁମ୍ଭର ଭାରିଜା ଅଟଇ ଗୋସାଇଁ ।
ମୋହର ଯୌବନରେ ତୁମ୍ଭର ସିନା ଭାଗ
ଅଳ୍ପଦିନ ଗଲେ ତୁମ୍ଭେ କରିବ ହେ ଭୋଗ ।
ଏ କାଳେ ଭୋଦେବ ହେ ତୁମ୍ଭେ ନକର ଇଚ୍ଛା
ସମୟ ଆସିଲେ ପୂରିବ ତୋ ମନବାଞ୍ଛା ।
ସମୟ ନୁହଇ ତୁମ୍ଭେ କରନ୍ତୁ ଉପେକ୍ଷା
ଅସମୟେ କାହିଁକି କରୁଛ ଆକାଂକ୍ଷା ।
ଅପ୍ରତିଷ୍ଠା ନାରୀ ମୁଁ ଯେ ଅତି ଅଭାଜନ
ବନ୍ଦାପନା ହେଲେ ମୁଁ ରଞ୍ଜିବି ତୁମ୍ଭ ମନ ।
ଛାଡ଼ ଛାଡ଼ ପ୍ରାଣନାଥ ନକର ଲୋଭଗତି
ଲୋକେ ଜାଣିଲେ ସବୁ ବୋଲିବେ ମନ୍ଦଟି ।
ଅଳ୍ପଦିନ ସିନା ଅଛଇ ବନ୍ଦାପନା
ଏ କଥାକୁ ପ୍ରାଣନାଥ ନକର ଶୋଚନା ।
ମାତ ଭଗ୍ନି ତୁମ୍ଭର ଆସିବେ ଏକ୍ଷଣି
ଏକଥା ଜାଣିଲେ ସେଯେ କି ବୋଲିବେ ପୁଣି
ଶଶୀକର ବୋଲେ ତୁ ଶୁଣ ଗୋ ସୁନ୍ଦରୀ
ଏ ରୂପ ଦେଖି ତୋର ମୁରୁଛି ନପାରି ।
ନକର ନିଷେଧ ମୁଁ କରିବି ରମଣ
ତୁହି ମୋହର ପ୍ରାଣ ଅଟୁ ଗୋ ସଖି ପୁଣ ।
ନକର ନିରାସ ତୁଗୋ ସରସ ବଦନୀ
ଏହିକ୍ଷଣି ଆସିଣ ମିଳିବେ ଜନନୀ ।

କାଞ୍ଚିଆଭା ବୋଲେ ତୁମ୍ଭେ ନକର ଦୁଷ୍ଟମତି
ସୁଜନ ଜନଙ୍କର ନୁହଇ ଏ ମତି ।
ଅବଶ୍ୟ ତ ହୋଇବ ବନ୍ଦାପନା ବିଧି
ଅସଙ୍ଗ ସଙ୍ଗ ହୋଇଲେ ହେବ ସର୍ବବିଧି ।
ଛାଡ଼ ଛାଡ଼ ସ୍ୱାମୀ ମୋର ନଛୁଅଁ ତୁମ୍ଭେ ଅଙ୍ଗ
ଶୁଣିକରି ଉମା ଯେ ପାଇଲା ପୁଣଖଙ୍ଗ ।
ବହନ ରମିବ ବୋଲି ଫେଡ଼ିଲା ତାର ଶାଢ଼ୀ
ଲାଜଭରେ ସୁନ୍ଦରୀ ଶୀରରେ କରଯୋଡ଼ି ।
ସଚ୍ଚ୍ୟଶୀଳ ଧର୍ମକୁ ଲଙ୍ଘିଲେ ଶଶିକର
ଯୋଗେଣ ଜାଣିଲେ ଅର୍ଜୁନ ନୃପବର ।
ବିମାନ ଆରୋହିଣ ମିଳିଲେ ବେଗେ ଆସି
ଦେଖିଣ ବେନିଜନ ମନରେ ଭୟ ତ୍ରାସୀ ।
କରରେ ଖଡ଼୍ଗ ଧରି ପଚାରଇ ରାଏ
ଧର୍ମକୁ ଲଙ୍ଘିଲୁରେ ଚନ୍ଦାଜିତ ପୁଏ ।
ଅପ୍ରତିଷ୍ଠା ନାରୀକୁ ତ ରମିବା ଇଚ୍ଛା କଲୁ
ଅବୋଧ ଯୁବତୀକୁ ବଳାତ୍କାରେ ହରିଲୁ ।
ବ୍ରାହ୍ମଣ ନୋହିଲେ କଟାନ୍ତି ତୋର ଶିର
ଏତେ ବୋଲି ବାହୁଡ଼ି ଗଲେ ନୃପବର ।
ଶଶୀକର ନିନ୍ଦା ଯେ ପାଇଲା ରାଜାମୁଖେ
ଭାରିଜା ବୋଇଲେ ତୁମ୍ଭେ ସମ୍ଭାଳ ଦିନାକେତେ
ଘର ଭିତରୁ ବାହାର ହେଲେ ଶଶିକର
ମାତା ଭଗ୍ନି ତାଙ୍କର ପ୍ରବେଶ ସତ୍ୱର ।
ଗୁରସ୍ତ ଭାରିଜା ଯେ ରାଜା ତିନି ଜଣ
ଅନ୍ୟଲୋକ ଆଉ ଯେ ଯମେ କିଛି ପୁଣ ।
ସେ ରାଜା ସାତ ଘଡ଼ିରେ ବୁଲେ ସାତ ଦ୍ୱୀପ
ନିଃଶ୍ୱାସ ବାରିଣ ଜାଣଇ ପାଦ୍ୟ ପାପ ।
ଧର୍ମରେ ରାଜା ପୁଣି ପାଳଇ ମହିଧର
ଏତେକାଳେ ଆସି ଧର୍ମ ହୁଏ ତାର ।
ନବସସ୍ର ନବ ବର୍ଷ ଲେଖାରେ ତିନିଦିନ
ବ୍ରହ୍ମହତ୍ୟା କଲେ ସେ ଯେ ସହସ୍ରାର୍ଜୁନ ।
ଶୁଣିବଟି ଗୋ ହେମବନ୍ତୁର ଦୁହିତା
ଏହି ପ୍ରକାରେ ସହସ୍ରାର୍ଜୁନର କଥା ।
ଶୁଣିକରି ପାର୍ବତୀ ବୋଲନ୍ତି ମୋତେ କହ
ପର୍ଶୁରାମ ପିତା ବଧ କେମନ୍ତେ ହେଲା କହ ।
ସୁଜନ ଜନଙ୍କର ନୁହେଁ ଯେ ଏ ଗତି
ପିତାର ଛଳେ ପଶୁପତି ଅସକତି ।

ପର୍ଶୁରାମ କଥା ତୁମ୍ଭେ ଶୁଣ ଗୋ ଗଉରୀ
ଚାରି ଭାଇ ଗଲେ ଯେ ବନକୁ ତପକରି ।
ପିତା ତାର ନିଜ ଯେ ଆଶ୍ରମେ ଥିଲା ପୁଣ
କାର୍ତ୍ତିକେଶ୍ୱର ନନ୍ଦନ ପ୍ରବେଶ ହେଲା ଜାଣ ।
ସୁରଭୀକି ଦେଖିଣ ରାଜା ଲୋଭ କଲା
ମାଗିବାରୁ ସୁରଭୀକୁ ଋଷି ଯେ ନଦେଲା ।
ବିଜେ କର୍ଣ୍ଣ କଟାରିରେ କାଟେ ରାଜା ମୁଣ୍ଡ
ଯମଦଗ୍ନି ଋଷି ଯେ ହେଲେ ବେନିଖଣ୍ଡ ।
ଋଷିଙ୍କୁ ମାରିଣ କାମଧେନୁକୁ ନେଲା
ନିଜ ନଗରରେ ତାର ପ୍ରବେଶ ଯାଇ ହେଲା ।
ଯମଦଗ୍ନି ଯହୁଁ ମାଇଲା ଦୁଷ୍ଟରାଜା
ଋଷିଆଣୀ ରେଣୁକା ରୋଦନ ଅପ୍ରମଦା ।
ଏମନ୍ତ ସମୟରେ ଦିବସ ଶେଷ ହେଲା
ସନ୍ଧ୍ୟାବେଳେ ଆସିଲେ ଚାରିପୁତ୍ର ପରା ।
ଦେଖିଲେ ଜନନୀ ଯେ କରନ୍ତି ରୋଦନ
ବେନିଖଣ୍ଡ ହୋଇ ପଡ଼ିଛି ପିତା ପୁଣ ।
ମାତାକୁ ପଚାରିଲେ ଏ କିସ ରୀତି କହ
ଜନନୀ ବୋଇଲେ ଶୁଣ ଆରେ ପୁଅ ।
କାର୍ତ୍ତିକେଶ୍ୱର ନନ୍ଦନ ସହସ୍ରା ଅର୍ଜ୍ଜୁନେ
ବନକୁ ଆସିଥିଲା ପାରଧି ନିମନ୍ତେ ।
ଏହିଠାରେ ପ୍ରବେଶ ହୋଇଲାକ ଆସି ।
ପିତାଙ୍କୁ ମାଗିଲା ଖାଇବାକୁ ବେଶୀ ।
ଶୁଣିକରି ପିତା ତୋର ଦୟା ତାକୁ କଲା
ସୁରଭୀକି ସୁମରନ୍ତେ ସକଳ ଦ୍ରବ୍ୟ ଦେଲା ।
ଭୋଜନ ସାରିଣ ଯେ ପଚାରେ ରାଜନ
ଏତେ ଦ୍ରବ୍ୟ ମୁନି ତୁମ୍ଭେ ଦେଲ କାହୁଁ ପୁଣ
ପିତା ବୋଇଲେ ଆମ୍ଭର ସୁରଭୀ ପ୍ରସାଦେ
ସୁରଭୀକି ମାଗିଗଲେ ଦିଏ ସବୁ ଦ୍ରବ୍ୟେ ।
ରାଜନ ପଚାରିଲା ସୁରଭୀ କିଏ ଦେଲା
ପିତା ତୋର ବୋଇଲା ବ୍ରହ୍ମା ଯେ ଦେଇଥିଲା
ରାଜନ ବୋଇଲା ସେ ଯେ ସମସ୍ତଙ୍କର ପିତା
ଆମ୍ଭଙ୍କୁ ନ ଦେଲା କିମ୍ପା କାମଧେନୁ ଗୋଟା ।
ପିତା ତୋର ବୋଇଲେ ଆମ୍ଭେ ଯେ ବ୍ରହ୍ମଚାରୀ
ତପ ସିଦ୍ଧ ହୋଇବାରୁ ବିଧାତା ବିଚାରି ।
ବ୍ରହ୍ମ ମୁନି କରିଣ ସୁରଭୀ ଦେଇଯାଇ
ସେହି ସୁରଭୀ ଆମ୍ଭର ପ୍ରାଣ ଯେ ଅଟଇ ।

ବିଚାରିଲେ ଅମୃତ ଦିଅଇ ଆଣିକରି
ତେବେ ସେ ତପରେ ହେଉ ଯେ ଆମ୍ଭେ ଭାରୀ
ଆହାର ଚିନ୍ତା ଆମ୍ଭର ନଥାଏ ରାଜନ
ତେଣୁ ଆମ୍ଭେମାନେ ବନସ୍ତେ ଅଛୁ ପୁଣ ।
ରାଜନ ବୋଇଲା ଆମ୍ଭଙ୍କୁ ନ ଦେଲା ବିଧାତା ।
ପିତା ବୋଇଲେ ତୁମ୍ଭେ ଶୁଣ ମହି ଚିନ୍ତା ।
ତପ ନଥିବାରୁ ରାଜ୍ୟ ତୁମ୍ଭର ଦେଲା
ପ୍ରଜାଙ୍କୁ ପାଳି ସୁଖୀ ହୁଅ ଯେ ତୁମ୍ଭେ ପରା ।
ସହସ୍ରାର୍ଜ୍ଜୁନ ଯେ ମୁନିଙ୍କୁ ବୋଇଲା
ଏ ସୁରଭୀ ଗୋଟି ଆମ୍ଭଙ୍କୁ ଦିଅରେ ଭଲା ।
ଋଷି ବୋଇଲେ ଏତ ନୁହଁଇ ବିହିତ
ଆମ୍ଭେ ତପଚାରୀ ନଦେଉ କଦାଚିତ ।
ଶୁଣିକରି ସହସ୍ରାର୍ଜ୍ଜୁନ କୋପ ମନ
ବିଜେ କର୍ଣ୍ଣ କଟାରୀ କାଢ଼ିଲାକ ପୁଣ ।
ବେଗି ଖଣ୍ଡ କରି ଋଷିଙ୍କି ହାଣିଲା
ସୁରଭୀଙ୍କି ଘେନିଣ ଏଥୁ ଚଳିଗଲା ।
ସନ୍ଦେଶ କହିବା ପାଇଁ ଅଛି ମୁହିଁ ବସି
ସ୍ୱାମୀର ସଙ୍ଗରେ ମୁଁ ଯାଉଛି ବାଳଶିଷି ।
ଚାରି କୁମର ବୋଇଲେ କିଛିଦିନ ଥାଅ
ଆମ୍ଭଙ୍କୁ ଛାଡ଼ିକରି ନ ଯାଅ ମାତ ପ୍ରିୟ ।
ରେଣୁକା ବୋଇଲେ ମୁଁ ନ ରହଇ ଦଣ୍ଡେ
ସ୍ୱାମୀ ସଙ୍ଗେ ନଗଲେ ପଡ଼ିବି ନର୍କକୁଣ୍ଡେ ।
ଶୁଣିଣ ଚାରିପୁତ୍ର ରୋଦନ ଘୋର କଲେ
ପାଞ୍ଚଜଣ ରୋଦନ ଶୁଭୁଛି ବନରେ ।
କିଛି ବେଳ ଉତ୍ତାରୁ ନିର୍ବଳ ହୋଇ ପୁଣ
ହାତୀ ଭଙ୍ଗା କାଠ ପୁଣ ଆଣିଲେ ଚାରିଜଣ ।
ଯଜ୍ଞ ଅଗ୍ନି ଲଗାଇ ପିତାଙ୍କୁ ଦାହ କଲେ
ପିତାଙ୍କର ସଙ୍ଗତେ ମାତା ସତୀ ଗଲେ ।
ମାତା ପିତା ଯିବାରୁ ଚାରିଭାଇ ପୁଣ
ପିତା ମାତାଙ୍କ କ୍ରିୟା କଲେ ସେ ବନେଶ ।
ସକଳ ଋଷିଙ୍କି ମନେ ସୁମରଣା କଲେ
ଭୂରୀ ଭୋଜନ ଦେଇ ଋଷିଙ୍କି ତୋଷିଲେ ।
ଯେ ଯାହା ସ୍ଥାନରେ ମିଳିଲେ ଯାଇ ପୁଣ
ପାର୍ବତୀ ବୋଇଲେ ଶୁଣ ହେ ଈଶାନ ।
ଯମଦଗ୍ନିରେ ରେଣୁକା ପାଇଲେ ମରଣ
ତଦନ୍ତେ ହୋଇଲା ସେ କେବଣ କାରଣ ।

ସ୍ୱର୍ଗକୁ ଗଲେ କି ରହିଲେ ମର୍ତ୍ତ୍ୟପୁରେ
ସେ କଥାଗୋଟି ଏବେ କହ ମୋ ଆଗରେ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ ।
ଯମଦଗ୍ନିକୁ ମାରି ଗଲା ଯେ ନୃପତି ।
ରେଣୁକା ଯିବାକୁ ଉପରେ ଥିଲେ ଚାହିଁ
ରେଣୁକା ଯିବାରୁ ଦୁଇ ଜଣ ସଙ୍ଗ ହୋଇ ।
ସ୍ୱର୍ଗପୁରେ ଯାନ ହେଲା ପରବେଶ
ଇନ୍ଦ୍ର ବୋଇଲେ ମୁନି ନମିଲେ ତୋତେ ଦଶ
ଯମଦଗ୍ନି ବୋଇଲେ କି ଦୋଷ ଅଛି ମୋର
ସୁରବର ବୋଲେ ତୋତେ ମାରେ ନୃପବର ।
ମାଇଲା ବେଳରେ ତୁ ଯେ ମନରେ ବିଚାରିଲୁ
ଏ ରାଜା ମଲେ ସ୍ୱର୍ଗେ ଯିବୁ ତୁ ବୋଇଲୁ ।
କେ ପାବନ୍ତିଲେ ତୁମେ ବସ ଦୁଇଜଣ
ସହସ୍ରାର୍ଜ୍ଜୁନ ମଲେ ଯିବୁ ମୁନିଙ୍କ ଆଶ୍ରମ ।
ଶୁଣିଣ ଯମଦଗ୍ନି ରେଣୁକା ରହିଲେ
ଶୁଣିଲୁ ଏହି କଥା ଈଶ୍ୱର ବୋଇଲେ ।
ପାର୍ବତୀ ବୋଲନ୍ତି ତୁମ୍ଭେ ଶୁଣ ମୋ ବଚନ
କଥାଏ ରହିଲା ମୋତେ କହ ତ୍ରିଲୋଚନ ।
ପୂର୍ବରେ ଯମଦଗ୍ନି କି ପାପ କରିଥିଲା
ବ୍ରହ୍ମ ମୁନି ହୋଇ ପୁଣି ଦୋଷ ତ ଲାଗିଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ପ୍ରାଣସହି
ଯମଦଗ୍ନି ପୂର୍ବରେ ବ୍ୟାଧ ଯେ ଅଟଇ ।
ବାଟ ଜଗିଣ ସେ ଯେ ମାରଇ ମନୁଷ୍ୟ
ପ୍ରତିଦିନ ଧନ ଆଣି କୁଟୁମ୍ବ ପୋଷେ ସେତ ।
ଏକ ଦିନେ ଦ୍ୱିଜବର ଗୋଟିଏ ଆସିଥିଲା
କୌମୁଦି ବନରେ ଯାଇ ତାହାକୁ ଆଗୋଳିଲା
ବ୍ରାହ୍ମଣକୁ ବୋଇଲା ତୁ ତଳରେ ଥୁଅ ଧନ
ନୋହିଲେ ତୋର ପ୍ରାଣ ହୋଇବ ନିଧନ ।
ବ୍ରାହ୍ମଣ ବୋଇଲେ ତୁମେ ଅଜ୍ଞାନ ବ୍ୟାଧ ଜାଣି
ଏ ଜନ୍ମରେ ବ୍ୟାଧ ଆର ଜନ୍ମେ ରୁଦ୍ର ମୂର୍ତ୍ତି ।
ଏକ ଜନ୍ମେ ପାପ କଲେ ଶତେ ଜନ୍ମେ ଥାଇ
ଧ୍ୟାନ ଧ୍ୟାନ କଲେ ପାପ କ୍ଷୟ ସେ ନ ଯାଇ ।
ଶୁଣିକରି ବ୍ୟାଧ ବୋଲେ ଶୁଣ ବିପ୍ରବର
କେମନ୍ତେ ସତର ପ୍ରାଣୀ ପୋଷାଯିବେ ମୋର ।
ବିପ୍ରବର ବୋଇଲା ପାତକ ତୋର ସିନା
ତୋଠାରୁ ପାପ ପୋଷିଲା ଲୋକ ନେବେ କିନା

ଆହାର ଲାଗି ସିନା ଦୋଷରେ ନୁହଁ ଦୋଷୀ
ସ୍ନେହ ଭାବ ଆଦି ସିନା ତାହାକୁ ତୁ ପୋଷି ।
ତୁହି ଏବେ ଯାଇଣ ସମସ୍ତଙ୍କୁ ପୁଛ
କି ବୋଲିବେ ତୋତେ ଶୁଣ ତୁ ପ୍ରତ୍ୟକ୍ଷ ।
ଶୁଣିକରି ବ୍ୟାଧ ପୁଣ ମନରେ କ୍ରୋଧ ହେଲା
କଟାରିରେ ବ୍ରାହ୍ମଣଙ୍କୁ ହାଣି ପକାଇଲା ।
ମାରିବାର ବେଳେ ବିପ୍ର ଦେଲେ ତାକୁ ଶ୍ୟାପ
ଯେତେ ତପକଲେ ରହିବ ମୋର ପାପ ।
ବ୍ରହ୍ମମୁନି ହୋଇଲେ ମାରିବେ ମହୀଧର
ବେନି ଖଣ୍ଡ ହୋଇ ତୁହି ପଡ଼ିବୁ ଭୂମିର ।
ଯେବେ ତୋର ପୁତ୍ର ପାରିବେ ତାକୁ ମାରି
ତାହାର ରୁଧିରେ ସେ ତର୍ପଣ କରି ସାରି ।
ସେତେବେଳେ ମୁକ୍ତି ଲଭିବୁ ତୁରେ ବ୍ୟାଧ
ଏତେ ବୋଲି ବିପ୍ରବର ଛାଡ଼ିଲାକ ଜୀବ ।
ବିପ୍ରଠାରୁ ଧନ ଘେନି ବ୍ୟାଧ ଚଳଗଲା
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲା ।
ଧନ ଘେନି ଘରଠାରେ ହୋଇଲା ପ୍ରବେଶ
ବ୍ରାହ୍ମଣର କଥା ଧରିଣ ଅଛି ଚିତ୍ତ ।
ମାତା ପିତା ଭାଇ ଯେ ଭାଉଜ ଡାକିଲା
ଆପଣା ଘରଣୀ ପୁଣ ପୁତୁରା ଅଣାଇଲା ।
ବୋଲଇ ନିତି ମୁଁ ଯେ ଯାଇ ଧନ ଆଣି
ମାରଇ ମନୁଷ୍ୟ ମୁଁ ଦ୍ରବ୍ୟ ଦେଖି ପୁଣ ।
ସେ ଧନ ଯେ ସମସ୍ତେ ବାଣ୍ଟିକରି ଖାଅ
ମାରିବାର ଦୋଷ ନିକି ସେଥିରେ ପ୍ରିୟ ହୁଅ ।
ସେମାନେବୋଇଲେଆମ୍ଭେଦୋଷରେନୋହୁଭାଗି
ଆମ୍ଭେ ତ କହି ନାହୁଁ ମାର ଜୀବ ବେଗି ।
କୁଟୁମ୍ବ ପୋଷଣ ଆଣି ଦେଉ ଧନ
ସେ ପାପରେ ଆମ୍ଭେମାନେ ନୋହୁ ଯେ ଭାଗିପୁଣ
କେଉଁଠାରୁ ଆଣି ଦେଉଛ କେଉଁ ଦ୍ରବ୍ୟ
ସେ ପାପ ଆମ୍ଭଙ୍କୁ ନ ଲାଗଇ ତୁମ୍ଭର ସେ ଭାଗ୍ୟ
ଶୁଣିଣ ବ୍ୟାଧ ମନରେ ବିସ୍ମୟ ହୋଇଲା
ଦ୍ରବ୍ୟ ଭକ୍ଷିଲେ ପାପ ଯେ ମୋର ହେଲା ।
ଏମନ୍ତ ବିଚାର ଯେ ମନରେ ବ୍ୟାଧକରି
ସକଳ ପାତକରେ ମୁଁ ହୋଇଲି ସରି ।
କି କାର୍ଯ୍ୟ ଅଛି ମୋର ଏ ଜୀବରେ ପୁଣ
ବନସ୍ତରେ ପଶି ତପ କରିବି ଯାଇଣ ।

ଏମନ୍ତ ବିଚାରି ଯେ ବ୍ୟାଧ ଚଳିଗଲା
ଯେଉଁଠାରେ ବ୍ରାହ୍ମଣକୁ ସେହୁ ମାରିଥିଲା ।
ସେ ସ୍ଥାନରେ ପ୍ରବେଶ ହୋଇଲା ଯାଇକରି
ଦେଖିଲା ବ୍ରାହ୍ମଣ ପଡ଼ିଛି ବେନିଖଣ୍ଡ ହୋଇ
ହାତୀ ଭଙ୍ଗା କାଠ ଯେ ଆଣିଲେକ ବହି
ତହିଁରେ ଅନଳ ଯେ ଲଗାଇଲେ ଯାଇ ।
ବ୍ରାହ୍ମଣ ପିଣ୍ଡକୁ ସେଥିରେ ନେଇ ଭରି
ବିପ୍ରକୁ ଭସ୍ମ କଲେ ଦାବାନଳ ଘେନି ।
ସେ ବନସ୍ତରେ ଯାଇ ଆଶ୍ରମ କଲା
ଏମନ୍ତ ନଉ ସହସ୍ର ବରଷ ବହିଗଲା ।
ରକ୍ତ ମାଂସ ବ୍ୟାଧ ଦେହରୁ ଶେଷ ହେଲା
ଅସ୍ଥି ଗତରେ ତାହାର ପ୍ରାଣ ରହିଲା ।
ଦେଖିଣ ବେଦବର ବିଚାରେ ମନରେ
× × ×
ପରମ ହଂସ ସେଠାରେ ମିଳେ ଯାଇ
ବ୍ୟାଧକୁ ବର ଦେଲେ ତ୍ରଇଲୋକ୍ୟ ସାଇଁ ।
ବୋଇଲେ ବ୍ୟାଧରେ ହେଲୁ ବ୍ରହ୍ମମୁନି
ଉଠ ବୋଲି ବର ତାକୁ ଦେଲେ କୁଶପାଣି ।
ସଞ୍ଜିବନୀ ମନ୍ତ୍ର ଯେ ପଢ଼ିଣ ପାଣି ସିଞ୍ଚି
ତତକ୍ଷଣେ ବ୍ୟାଧର ଯେ ଶରୀର ପାଲଟି
କର ଯୋଡ଼ି ଉଭା ହୋଇଲା ବ୍ୟାଧ ପୁଣ
ବୋଇଲା ଏ ସଂସାରୁ କର ହେ କାରଣ ।
ବେଦବର ବୋଇଲେ ପାତକ ତୋର ଗଲା
ବ୍ରହ୍ମ ଯତି ରୂପେ ଏବେ ପ୍ରକାଶ ପାଇଲା ।
ବ୍ରାହ୍ମଣର ଶ୍ୟାପ ହେତୁ ହୋଇବୁ ବଦଳ
ସେ ବ୍ରାହ୍ମଣ ତୋତେ ଯେ ମାରେ ଅନ୍ତକାଳ ।
ଯେଉଁରୂପେ ବ୍ରାହ୍ମଣକୁ କରିଛୁ ତୁରେ ନାଶ
ସେହିରୂପେ ନୃପବର କରିବ ତୋତେ ନାଶ ।
ତୋର ନାମ ଏବେ ଯମଦଗ୍ନି ହେଉ
ସେ ବିପ୍ର ଜନ୍ମ ହୋଇଣ ରାଜକୁଳେ ରହୁ ।
ସେହି ତୋତେ ମାରିବ ବେନି ଖଣ୍ଡ କରି
ସେତେବେଳେ ବ୍ରାହ୍ମଣ ଶ୍ୟାପରୁ ଯିବୁ ତରି ।
ଏତେ କହି ବେଦବର ସୁରଭି ଆଣିଲା
କାମଧେନୁ ଦେଇ ସେ ଯେ ନିଜପୁରେ ଗଲା ।
ସେଠାରେ ବ୍ୟାଧ ମୁନିରୂପ ଧରି
ଅନ୍ତର୍ଗତେ ସୁମରଣା କରଇ ନିତ୍ୟ ହରି ।

ଏମନ୍ତେ କେତେଦିନ ଯେ ସେଥିରେ ବହିଗଲା
ଗାନ୍ଧାର ମୁନି ଯେ ସେ ସ୍ଥାନକୁ ଆସିଲା ।
ଦେଖିଲା ବ୍ରହ୍ମମୁନି ଯେ ଅନର୍ଗଳେ କରୁଛି ତପ
ବ୍ରହ୍ମଚାରି ମନରେ ହେଲେ ତୋଷଚିତ୍ତ ।
ରେଣୁକା ନାମରେ ଯେ କୁମାରୀ ତାହାର
ସେ କନ୍ୟାକୁ ବିଭା ହେଲା ଆସିଣ ମୁନିବର ।
ସେ କନ୍ୟାକୁ ବିଭା ହୋଇ ମଢ଼ିଆ ସେଥିକଲା
ଏମନ୍ତ କେତେଦିନ ସେଥି ବହିଗଲା ।
ତିନିପୁତ୍ର ତାର ଠାରୁ ହୋଇଲେକ ଜାତ
ଶୋଭା ସୁନ୍ଦର ସେ ଯେ ଦିଶେ ଗୁଣବନ୍ତ ।
ଅନେକ ରୂପବନ୍ତ ତିନିପୁରେ ହୋଇ
ରାଜାମାନଙ୍କୁ ପରଜା କର କହି ।
ଦଶ ପାଞ୍ଚ କେଉଁଠାରେ ହୁଅନ୍ତି ପୁଣ ମେଳ
ପ୍ରଜାଙ୍କୁ ପିଡା କରି ନିଅନ୍ତି ବେଶି ବେଳ ।
କ୍ଷୁଦ୍ର ରାଜାମାନଙ୍କୁ କରନ୍ତି ପୁଣ ନାଶ
ଧନିମାନଙ୍କର ଧନ ହରିଲେ ବିଶେଷ ।
ନିଉନ ରାଜାମାନଙ୍କୁ କରନ୍ତି ନାଶ ପୁଣ
ବିପ୍ର ଋଷିଙ୍କର ଧନ ହରନ୍ତି ରାଜଗଣ ।
ଦେବତାଙ୍କୁ ଅପୂଜ୍ୟ କଲେ ଦେବୀଙ୍କି ନମାନିଲେ
ଯାଗ କଲା ଲୋକଙ୍କୁ ଗୋଳ କରିଣ ମାଇଲେ ।
ଦେବତାଏ ଏହାଙ୍କୁ ଯେ ନପାରିଲେ ଜାଣ
ଦେବୀମାନଙ୍କୁ ପୋଡୁଅ ଛାଗଳ ନଦେଲେ ପୁଣ
ବ୍ରାହ୍ମଣଙ୍କୁ ଭୋଜନ ଦାନହିଁ ନ ଦେଲେ
ମାଗଣା ଲୋକମାନେ ଯେ ନିରାଶ ହୋଇଲେ ।
ହାଟ ବାଟ ଦାଣ୍ଡ ଜୁର କଲେ ଜାଣ
ରାଜାମାନଙ୍କୁ ଦେଖାଅରେ ନେଇ ପ୍ରଜାଗଣ ।
ଏମନ୍ତେ ମର୍ତ୍ତ୍ୟପୁରେ ଅନ୍ୟାୟ ବଢ଼ ହେଲା ।
ଧର୍ମରେ ନରହନ୍ତା ଅଧର୍ମ ବଢ଼ ହେଲା ।
ଦେଖିକରି ଦୀନମଣି ଇନ୍ଦ୍ରଙ୍କୁ କହିଲା ।
ମର୍ତ୍ତ୍ୟପୁରେ ଏବେ ଅନ୍ୟାୟ ହୋଇଲା ।
ଦେବଗଣଙ୍କୁ ଡକାଇଣ ସଭା କରି
ସଭାରେ ଗୁଆ ଆଉ ନ ହେଲା କାହାରି ।
ବାର ରବି ଷୋଳ ଚନ୍ଦ୍ର ଥିଲେ ବସି
ସେମାନଙ୍କୁ ଇନ୍ଦ୍ର ଯେ ପଚାରିଲେ ହସି ।
ବୋଇଲେ ମର୍ତ୍ତ୍ୟପୁରେ କିସ ରୀତି ପୁଣ
ଚନ୍ଦ୍ର ସୂର୍ଯ୍ୟ ବୋଇଲେ ଶୁଣ ହେ ସୁରଗଣ ।

ମର୍ତ୍ତ୍ୟପୁରେ ପାପ ପ୍ରବଳ ଏବେ ହେଲା
କାହାକୁ କେହି ସେଥିରେ ନ ମାନିଲେ ପରା ।
ପ୍ରଜାଙ୍କୁ ରାଜ ଯେ ଅନେକ ଦୁଃଖ ଦେଲେ
ଋଷି ବ୍ରାହ୍ମଣଙ୍କର ଧନ ସେ ହରିଲେ ।
ଦାନ ପୁଣ୍ୟ କିଛି ଯେ ନକରିଲେ ପୁଣ
ପାପରେ ଗହଳ ହେଲେ ସର୍ବଜନ ।
ଉଦୟ ହେବାକୁ ଡର ଯେ ଆମ୍ଭର ଏବେ
ଦୁଃଖୀ ଦରିଦ୍ର ଲୋକଙ୍କ କଳ ଦୁଃଖଭାବେ ।
ଶୁଣି ଜନମାନେ ଯେ ଡରିଲେ ରାଜାଙ୍କୁ
ଦେବତାଏ କିସ ଯେ ବିଚାର ମନକୁ ।
ଧରଣୀ ଛାଡ଼ିବାକୁ ବାସୁକିର ମନ
ସମୁଦ୍ର ଲଙ୍ଘିବାକୁ କୂଳକୁ କରେ ମନ ।
ଜଳର ଜରୀମାନ ହୋଇଲେ ବିକଳ
ଧରଣୀର ରୋଦନ ଶୁଣିଣ ସକଳ ।
ବୃକ୍ଷମାନେ ଫଳ ଯେ ନ ଫଳନ୍ତି ପୁଣ
ଶସ୍ୟ ହାନୀ ହୋଇଲା ଯେ ଅଧର୍ମ କାଳପୁଣ ।
ଗାଈମାନେ କ୍ଷୀର ନ ଦେଲେ କ ପୁଣ
ଯାଗ ବଞ୍ଚ ସେ ଯେ ଭାଙ୍ଗିଲେ ଗଜଗଣ ।
ବେଳକାଳ ନ ଜାଣିଣ ନ ବରଷେ ମେଘ
ହୋଇଲା ଦୁର୍ଯୋଗ ଯେ ମର୍ତ୍ତ୍ୟପୁର ମଧ ।
ଜାହ୍ନବୀର ମୁଖ ଯେ ଦିଶିଲା ମଳିନ
କେମନ୍ତେ ଧରଣୀ ରହିବ ହେ ପୁଣ ।
ଶୁଣିଣ ସୁରରାଜା ବୋଇଲେକ ବାଣୀ
ଆରତ ହୁଅ ତୁମ୍ଭେ ଉଦୟ ହୁଅ ଦିନମଣି ।
ବେଦବରଙ୍କୁ ପଚାରି କରିବାକ କାର୍ଯ୍ୟ
ଦିଗପାଳମାନେ କରନ୍ତୁ ନିଜକାର୍ଯ୍ୟ ।
ଏମନ୍ତ ବଚନ ଯେ କହିଲେ ସୁରପତି
ତ୍ରିଦଶ ଦେବଙ୍କୁ ସଙ୍ଗେ ନେଲେ ନୃପତି ।
ଯଶୋବନ୍ତୀ ପୁରକୁ କଲେକ ଗମନ
ଦେଖିଲେ ବେଦବ୍ରହ୍ମା ବସିଣଛନ୍ତି ପୁଣ ।
ସକଳ ଦେବତା ଘେନିଣ ସୁରପତି
ବେଦବର ଚରଣରେ କଲେକ ବିନତି ।
ଦେଖିଣ ବେଦବର ଆନନ୍ଦ ହୋଇଲେ
କେଣେ ଅଇଲ ନୃପତି ବୋଲିଣ ପଚାରିଲେ ।
ସୁରରାଜ ବୋଇଲେ ଦେବ ହେଲେ ଅସମ୍ଭାଳ
ତିନିପୁର ଚଉଦ ବ୍ରହ୍ମାଣ୍ଡ କମ୍ପିଲେ ବେଦବର

ନବଖଣ୍ଡ ମେଦିନୀ ହୋଇଲା ଟଳମଳ
ନିଶ୍ଚୟ ପ୍ରଳୟ ଯେ ହୋଇବ ସେ କାଳ ।
ବିଚାରିଲେ ସ୍ଥିର ହେବ ନୋହିଲେ ହେବ ନାଶ
ପଛନ୍ତେ ମୋତେ ଆଉ ନଦେବଟି ଦୋଷ ।
ବିଧତା ବୋଇଲେ ଦେବ ଏମନ୍ତ ପ୍ରକାର
ଚାଲ ସମସ୍ତେ ଯିବା ରମ୍ୟକ ଦ୍ଵୀପର ।
ଅନନ୍ତ ଶୟନ ଠାରେ ହେବାକ ପ୍ରବେଶ
ବାସୁଦେବଙ୍କୁ ସ୍ତୁତି କରିଣ ତହୁଁ ଆସ ।
ଶୁଣିକରି ସକଳ ଦେବ ତୋଷ ହେଲେ
ବିଧାତାଙ୍କୁ ଘେନିଣ ବେଗେ ଚଳିଗଲେ ।
କ୍ଷୀର ସାଗରେ ପ୍ରବେଶ ହୋଇଲେକ ଯାଇ
ଅନନ୍ତ ଶୟନ ପଶ୍ଚିମ ଦ୍ଵାରେ ରହି ।
ନିରଞ୍ଜନ ପୁରୁଷଙ୍କୁ କରନ୍ତି ସେ ଧ୍ୟାନ
ସହସ୍ରେ ବର୍ଷ କଲେକ କୃତଜ୍ଞାନ ।
ସହସ୍ର ବର୍ଷରେ ବାସୁଦେବ ଜାଣି
ଅନନ୍ତ ଶୟନକୁ ତେଜିଲେ ନୀଳମଣି ।
ଅନନ୍ତକୁ ବୋଇଲେ ଏଠାବରେ ଥିବ
ପାଶକୁଆସିବାଯାଏ କେଣିକି ନ ଯିବ ।
କମଳାଙ୍କୁ ଘେନି ଆମ୍ଭେ ଯାଉଛୁ ଭୂତଳ
ଗୋଲଖ କୃଷ୍ଣ ଦେଖିଲେ ହୋଇବୁ ଶୀତଳ ।
ଏତେକହି କମଳାଙ୍କୁ କହିଲେ ଶ୍ରୀହରି ।
ସପତଣୀ ଦେଖିବାକୁ ଅଛି କି ମନୋତୋରି ।
କମଳା ବୋଇଲେ ତୁମ୍ଭର ଦୟା ହେଲେ
ନିଶ୍ଚୟେ ଠାକୁରାଣୀକୁ ଦେଖିବି ମୁଁ ଭଲେ ।
ନାରାୟଣ ବୋଲେ ଆସ ମୋର ସଙ୍ଗ
ଏତେ ବୋଲି ବାସୁଦେବ ବିଜୟ କଲେ ଆଗ
ପଶ୍ଚିମ ଦ୍ଵାରେ ଯାଇ ହୋଇଲେ ପ୍ରବେଶ
ନିବଳି କିଳଣୀ ଯେ ଫେଡ଼ିଲେ ପୀତବାସ ।
ପଶ୍ଚିମ ଦ୍ଵାରେ ଯାଇ ସୁବର୍ଣ୍ଣ ପଞ୍ଜରୀ ମେଲାକରି
ବିଜୟ କରିଲେ ପ୍ରଭୁ ଦଇତ୍ୟାରୀ ।
ଦେଖିଣ ଦେବତାଏ ଉଠିଲେ କରଯୋଡ଼ି
ସତେବାର ପର୍ଯ୍ୟନ୍ତେ ପଡ଼ିଲେ ପାଏଡ଼ି ।
ସୁରପତି ବେଦବର କରଯୋଡ଼େ ପରା
ବିନୟ ଭାବରେ ସରବେ ଯେ ତ୍ଵରା ।
ବାସୁଦେବ ବୋଇଲେ କି କାର୍ଯ୍ୟଅଛି ଏଥି
ଦଶଦିଗପାଳ ସଙ୍ଗରେ ମୋତେ ତ ତୁମେପୁଛି

ବୈକୁଣ୍ଠବାସୀ ପରା ହୋଇବ ଦେବଗଣ
ଅସୁରମାନେ କରିବେ ଅସୁର ଶୟନ ।
ରାଜାମାନେ ସକଳ ଗୋଲଖ ନାଥ ହେବେ
ଗନ୍ଧର୍ବମାନେ ଦେବରଷି ବୋଲାଇବେ ।
ଦଶଦିଗପାଳେ ହେବେ ଈଶ୍ୱର ବ୍ରହ୍ମା
ତେବେ ମନୋରଥ ପୂରିବ କରିଛ ଗାରିମା ।
ଶୁଣିଣ ଦେବଗଣ ଲଜ୍ଜା ଏବେ ପାଇ
ଗରୁଡ଼କୁ ଅଣାଇଲେ ବ୍ରହ୍ମାଣ୍ଡ ଗୋସାଇଁ ।
ଆଗରେ ମିଳିଲେ ଆସି ବିନତା ନନ୍ଦନ
ବେଦବର ବୋଇଲେ ଶୁଣ ହେ ନାରାୟଣ ।
କ୍ରୋଧ ଛାଡ଼ି ସକଳ ଦେବଙ୍କୁ ରକ୍ଷା କର
ଯେରୂପେ ସଂସାର ରହିବ ବିଚାର କର
ଜଗନ୍ନାଥ ବୋଇଲେ ସକଳେ ତୁମ୍ଭେ ଯାଅ
ସହସ୍ର ବର୍ଷ ଯେ ସମ୍ଭାଳି ହୋଇ ଥାଅ ।
ସହସ୍ର ବର୍ଷ ଉତ୍ତାରୁ ଯେ ହେବ ଭଲ
ଏତେ କହି ବୋଧିଲେ କମଳାଙ୍କ ବର ।
ଶୁଣିଣ ସକଳ ଦେବତା ଚଳିଗଲେ
ଯେ ଯାହା ଯାନରେ ଯାଇଣ ବସିଲେ ।
ଏଥୁ ଅନନ୍ତରେ ଗୋ ଶୁଣ ଭଗବତୀ
ଗରୁଡ଼ ଉପରେ ବିଜୟ ଦାଶରଥି ।
କମଳାଙ୍କୁ କୋଳେ ଘେନି ହର୍ଷ କଲେ ମତି
ବିନତା ନନ୍ଦନଙ୍କୁ ଉତ୍ତର କହନ୍ତି ।
ରସାତଳକୁ ଯିବା ଚଳ ହେ ଝଟତି
ଶୁଣିଣ ଖଗେଶ୍ୱର ଚଳିଲେକ ଧାତି ।
ରସାତଳରେ ବେଗେ ହେଲାକ ପ୍ରବେଶ
ଗୋଲୋକ ଦ୍ୱାରେ ଉତୁରିଲେ ତୁରିତ ।
ଦେଖିଣ ରାଧା କୃଷ୍ଣ ମାନ୍ୟ ଧର୍ମ କଲେ
କେଣେ ଆସିଛ ବୋଲି ଉଙ୍କାର ଭାଷିଲେ ।
ଈଶ୍ୱର ବୋଇଲେ ତିନିପୁରେ ପୁଣ
ମିଳିକରି ଗୋଳ କଲେ ସର୍ବଜନ ।
ଦେବ ଅସୁର ନର ବାନର ଆଦି ଜୀବ
ସମସ୍ତେ ବିଚାରନ୍ତି ଆମ୍ଭେ ସବୁ ବଡ଼ ।
ରାଧାକୃଷ୍ଣ ବୋଇଲେ ସେ କଥା ତୁମ୍ଭେ ଶୁଣ
ସେ ଜଞ୍ଜାଳ ଆମ୍ଭକୁ ନକର ନାରାୟଣ ।
ଜଗନ୍ନାଥ ବୋଇଲେ ଉଚିତ କଥା ନୁହେଁ
ସର୍ବକଥା ସମ୍ଭାଳି ବଡ଼ ସେ ବୋଲାଏ ।

ଗୋଲୋକ ନାଥ ବୋଲେ ଶୁଣ ମୋର ବାଣୀ
ଦୁଷ୍ଟକୁ ମାରି ସନ୍ଥକୁ ରଖ ତୁମ୍ଭେ ପୁଣି ।
ଜୀବମାନଙ୍କର ଅଟ ଯେ ତୁମ୍ଭେ ପ୍ରଭୁ
ସକଳ ମାୟା ସିନା ଜାଣ ତୁମେ ସବୁ ।
ବାସୁଦେବ ବୋଲେ କହୁଛ ଆପଣ
ମୋହର ସଙ୍ଗେ ତୁମେ ଜାତ ଯେ ପ୍ରମାଣ ।
ଗୋଲଖ ନାଥ କହେ କିସ ମୁଁ କରିବି
ତୁହି ଯେବେ ବୋଲିବୁ ତୋ ସଙ୍ଗରେ ଯିବି ।
ରାହାସ ଲୀଳା ଏବେ ରହିଲାଟି ମୋର
ଶୁଣିକରି ବାସୁଦେବ କହିଲେ ଉତ୍ତର ।
ଗୋଲୋକ ପୁରେ ତୁମ୍ଭେ ଯାଇକରି ରହ
ରାହାସ କ୍ରୀଡ଼ା କରି ଅଂଶ ଡ଼ୋର ଦିଅ ।
ମୁହିଁ ସେ ନ୍ୟାୟରେ ରହି ଦେଉଛି ଅଂଶମୋର
ନର ନାରାୟଣ ହୋଇବା ଅବତାର ।
ହେଉ ବୋଲି ଶ୍ରୀକୃଷ୍ଣ କହିଲେକ ପୁଣି
ରାଧିକା ବୋଇଲେ ତୁମ୍ଭେ ଶୁଣ ହେ ଚକ୍ରବର୍ତ୍ତୀ ।
ତୁମ୍ଭେ ଦୁଇଜଣ ତ ଏ ପୁରେ ଜନମ
ଜନ୍ମ ଆମ୍ଭେ ଦୁହେଁ କିରୂପେ ହେବୁ ପୁଣ ।
ବାସୁଦେବ ବୋଇଲେ ପ୍ରକାରେ ଭିନ୍ନ ହେବ
ଦୁଇ ଭଗ୍ନି ହୋଇ ଜନ୍ମ ଯେ ଲଭିବ ।
ତୁମ୍ଭେ ନରଖୁ ମୋତେ ଯେ ସେବିବ କମଳା
ଅବତାରକୁ ଅବତାର ପରା ।
ଶୁଣିଣ ସନ୍ତୋଷ ଗୋଲୋକ ଠାକୁରାଣୀ
କେଉଁ କଥା ତୁମ୍ଭେ ଯେ ନ ଜାଣ ଚକ୍ରପାଣି ।
ପାର୍ବତୀ ବୋଇଲେ ଯେ ସେ ଦୁହେଁ କଲେକିସ
କେମନ୍ତେ ଅଂଶ ତାଙ୍କର ହୋଇଲା ପ୍ରକାଶ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଶକମ୍ଭରୀ
ଆଗକରି ସେ କଥାକୁ କହୁଛି ବିସ୍ତାରି ।
ବେଦମତୀ ଧୀରାବତୀ ଦୁଇ ଯେ ଭଉଣୀ
ମେରୁ ଘରେ ଜାତ ସେ ହୋଇଥିଲେ ପୁଣି ।
ବେଦମତୀ କମଳାଙ୍କ ଅଂଶରୁ ଜାତ ହେଲା
ଧୀରବତୀ ରାଧିକା ଅଂଶରୁ ଜାତ ହେଲା ।
ବେଦମତୀ ଜାନକୀ ହୋଇଲେକ ପୁଣ
ତାହାଙ୍କୁ ବିବାହ ହେଲେ ଅନନ୍ତ ନାରାୟଣ ।
ଧୀରମତୀ ପାତାଳ ପୁରରେ ଅଛି ରହି
ପର୍ଶୁରାମକୁ ଦେଖି ବିଭା ହେବେ ଯେ ସେହି ।

ଗୋଲେଖ ଅଂଶରୁ ପର୍ଶୁରାମ ଜାତ
ବାସୁଦେବ ଅଂଶରୁ ଶ୍ରୀରାମ ସମ୍ଭୂତ ।
ମୋହର ଅଂଶ ଘେନି ଲକ୍ଷ୍ମଣ ହେବେ ଜାତ
ତୋରଅଂଶରୁ ଉର୍ମିଳା ହୋଇଛି ସମ୍ଭୁତ ।
ପାର୍ବତୀ ବୋଇଲେ ଶୁଣିଛି ମୁଁ ଏକଥା
ରହିଲା କଥା ଏଥିରେ କହ ପଞ୍ଚମଥା ।
ଈଶ୍ୱର ବୋଇଲେ ଶୁଣ ଗୋ ହୈମବତୀ
ଗୋଲେକ ନାରାୟଣ ଅଂଶେ ଯେ ଗଲେ ଧାତି
ଯମଦଗ୍ନି ଶରୀରେ ପଶିଲେକ ଯାଇ
ରେଣୁକା ଶୁଦ୍ଧାଶ୍ରାଦ୍ଧ ସ୍ନା ସେ ଦିନଅଛି ହୋଇ
ଯମଦଗ୍ନି ଋଷି ଯେ ସେଦିନ କାମପୀଡ଼ା
ରେଣୁକା ସଙ୍ଗରେ ଶୃଙ୍ଗାର କଲେ ରତି ଲୀଳା
ଯତି ବୀର୍ଯ୍ୟ ଯାଇ ରେଣୁକା ଗର୍ଭେ ରହି
ଦଶମାସରେ ପୁତ୍ର ଜନ୍ମ ହେଲେ ତହିଁ ।
ଜନକ ସୁବର୍ଣ୍ଣ ପ୍ରାୟେ ଦିଶଇ ରୂପତାର
ଦେଖିକରି ରେଣୁକା ହରଷ ମନର ।
ସେ ପୁତ୍ରକୁ ଯାଇଣ ଯମଦଗ୍ନି ଦେଖି
ବିଚାରିଲେ ଏତ ଅଟନ୍ତି ବ୍ରହ୍ମ ଋଷି ।
ଏତେ ବୋଲି ମନେ ମନେ କଲେକ ଭାବନା
ଦାସୀଗଣ ମିଳିଣନିର୍ମଳ କଲେ ସିନା ।
ପଞ୍ଚୁଆତି ଷଷ୍ଠୀଘର ଉଠିଆରୀ ସାରି
ଏକୋଇଶ ଦିନେ ନାମ ଦେଲେ ବ୍ରହ୍ମଚାରୀ ।
ନବକୋଟି ଋଷି ଯେ କଲେ ସୁପରିଣ
ସକଳ ଋଷଗଣ ମିଳିଲେ ଆସି ପୁଣ ।
ବିଚାରିଣ ନାମ ଦେଲେ ଯେ ତାଙ୍କର ପର୍ଶୁରାମ
ପର୍ଶୁରାମ ନାମ ତାଙ୍କର ହୋଇଲାକ ସାର ।
ସୁକଲ୍ୟାଣ କରି ସର୍ବେ ଅମୃତ ଭୁଞ୍ଜିଲେ
ମେଲାଣି ହୋଇଣ ଗଲେ ଯେ ଯାହାରେ ।
ସେଠାରୁ ସତର ବର୍ଷ କାଳ ଗଲା
ବେଦ ବିଦ୍ୟା ପଣେସିଦ୍ଧାନ୍ତ ପୁତ୍ର ହେଲା ।
ବନକୁ ଗମନ ଯେ କଲେ ଋଷି ବଳା
ଷୋଳ କୋଟି ସିଂହରେ ବଳ ବହେ ପରା ।
ସିଂହ ଶାର୍ଦ୍ଦୁଳ ଯେ ବରାହ ଶୁକର
ହସ୍ତୀ ଅଶ୍ୱ ସାରେଣୀ ବଳରେ ବଳୀୟାର ।
ଏମାନଙ୍କୁ ନାଶ ଯେ କରଇ ବନେ ପଶି
ତାଙ୍କୁ କୁମର ମାନଙ୍କୁ ଧରି ଘେନି ଆସି ।
ବଧ କରି ଖାଇ ପାଞ୍ଚ ସାତ ଦିନ
ପିତା ମାତା କହିବାରୁ ଫେଡ଼ଇ ବହନ ।
ବଳବନ୍ତ ମତୀଙ୍କୁ ଦେଖିଣ ତାର ଋଷି
ବୋଇଲେ ପର୍ଶୁଧରରେ ତପକର ବସି ।
ଶୁଣିଣ ପର୍ଶୁରାମ ଯେ ତୋରେ ମନଦେଲା
ସହସ୍ର ବର୍ଷ ସେ ବନରେ ତପ କଲା ।
ଏହି ସମୟରେ କାର୍ତ୍ତିକେଶ୍ୱର ପୁତ୍ର
ସହସ୍ରାର୍ଜ୍ଜୁନ ଯେ ଅଟନ୍ତି ବଳବନ୍ତ ।
ପିତା ନାଶ ଯିବାରୁ କୁମର ରାଜା ହେଲା
ସହସ୍ର ବରଷ ଯେ ଏଥିରେ ବହିଗଲା ।
ପ୍ରଜାଙ୍କୁ ପାଳଇ ସେ ପୁତ୍ରର ସମାନ
ପ୍ରଶଂସା କରନ୍ତି ପ୍ରଜା ଜନମାନ ।
ଏମନ୍ତେ ପନ୍ଦର ଯେ ସହସ୍ର ବରଷ
ସେଥିରେ ବହିଗଲା ରାତ୍ର ଯେ ଦିବସ ।
ତାହାକୁ ଦୂର୍ଯୋଗ ଯେ ଘୋଟିଲାକ ଆସି
ଏକଦିନେ ପାରିଧିକୁ ଗଲେ ନୃପରାଶି ।
ନିର୍ଦ୍ଧନ ଗ୍ରୀଷମରେ ନପାରିଲେ ଜଳ
ଆକୁଳ ହୋଇଲେ ଯେ ସକଳ ।
ସେ ବନର ଭିତରେ ଋଷି ଘର ଦେଖି
ସେଠାରେ ସୈନ୍ୟବଳ ମିଳିଲେକ ଆସି ।
ସହସ୍ରାର୍ଜ୍ଜୁନ ଯେ ଋଷିଙ୍କୁ କହେ ପୁଣ
କ୍ଷୁଧାର୍ତ୍ତ ହୋଇଛୁ ଆମ୍ଭେ ଦିଅ ଅନ୍ନାଦାନ ।
ଶୁଣିଣ ଯମଦଗ୍ନି ସୁରଭି ପାଶେ ଗଲା
ସୁରଭିକୁ କହିଣ ସକଳ ଦ୍ରବ୍ୟ ଦେଲା ।
ରାଜାର ସୈନ୍ୟ ବଳଙ୍କୁ ନେଲା ଦେଇକରି
ଖାଇଣ ଶାନ୍ତହେଲେ ସମସ୍ତେ ଯେ ଧରି ।
ଦେଖିଣ ରାଜନ ଯେ ଋଷିଙ୍କୁ ପଚାରିଲା
କେଉଁଠାରୁ ଏତେ କଯେ ସାମଗ୍ରୀ ଅଇଲା ।
ଋଷି ବୋଇଲେ ମୋର ସୁରଭି ଦେଲେ ସବୁ
ରାଜନ ବୋଇଲେ ଆମ୍ଭେ ସେ ସୁରଭିକୁ ନେବୁ
ମାଗିବାରୁ ଋଷି ଯେ ନଦେଲେ କାମଧେନୁ
ମାଗିକରି ଋଷି ଯେ ସୁରଭି ନେଲେ ତେଣୁ ।
ରେଣୁକା ନାରୀ ତାର ଯେ ରୋଦନ କରୁଥିଲା
ପୁତ୍ରକୁ କହିବାରୁ ରୋଦନ ପୁଣି କଲା ।
ପୁତ୍ରକୁ ବୋଧକରି ନାରୀ ସ୍ୱର୍ଗକୁ ଗଲା
ପର୍ଶୁରାମ ମନରେ ଅନୁତାପ ହେଲା ।

ସେତେବେଳେ ପର୍ଯ୍ୟନ୍ତ ଏକ ମନେ ବସି
ହରିଙ୍କି ଲୟ କଲା ଯମଦଗ୍ନି ବସି ।
ସତ୍ୱରେ ବାସୁଦେବ ଅଇଲେ ସେ ସ୍ଥାନ
ଗରୁଡ଼ ଉପରେ ବିଜୟ ନିରଞ୍ଜନ ।
କମଳା ଯେ କୋଳରେ ଅଛନ୍ତି ତାଙ୍କର
ପ୍ରବେଶ ହୋଇଲେ ଆସି ପର୍ଶୁଧର ଆଗର ।
ବୋଲନ୍ତି କିମ୍ପା ଚିନ୍ତା ଯେ ତୋହର
ପର୍ଶୁରାମ ବୋଲନ୍ତି ମାରିବି ସହସ୍ରା ଅର୍ଜ୍ଜୁନ ବୀର
ଶୁଣିଣ ନାରାୟଣ ଗରୁଡ଼ ପରୁ ଖସି
ଆପଣା ଗଳାରୁ ହାର କାଢ଼ିଲେ ବ୍ରହ୍ମରାଶି ।
ପର୍ଶୁରାମ ହୃଦୟରେ ଦେଲେକ ହାର ନେଇ
ଦେଖିଣ ପର୍ଶୁରାମ ହରଷ ମନ ହୋଇ ।
ପର୍ଶୁରାମ ବୋଇଲେ ଦେଲୁ କେତେ ବଳ
ନାରାୟଣ ବୋଇଲେ ଦେଲି ମୁଁ ସାଗର ।
ପର୍ଶୁରାମ ବୋଇଲେ ମୁଁ ମାରିବି ସକଳ
ଶ୍ରୀହରି ବୋଇଲେ ଏ ନୁହଇ ବିଚାର ।
ଦୁଷ୍ଟ ମାରି ସନ୍ଥଙ୍କୁରେ କରିବୁ କାରଣ
ଦେବତାଙ୍କର ଗର୍ବ ଯେ ଗଞ୍ଜିଲୁ ଯାଇ ପୁଣ ।
ଅସୁରଙ୍କ ବଳ ଯେ ଭାଙ୍ଗିଲୁ ତୁରିତ
ଦୁଷ୍ଟ ରାଜନଙ୍କୁ ମାରିଣ ସନ୍ଥଙ୍କୁ ପାଳିତ ।
ଏଥୁ ଅନନ୍ତରେ ଜନ୍ମ ମୋର ଜାଣ
ଅସୁର ବଳ ମାରିବି ଖୋଜିଣ ।
ଏତେ ବୋଲି ବାସୁଦେବ କୌମୁଦି ଗଜ
ବୈଷ୍ଣବ ଧନୁ ଦେଲେ ଦେବାଧି ରାଜ ।
ବିଜେ କର୍ଣ୍ଣ କଟାରୀ କୁଠାର ପୁଣି ଦେଲେ
ସାଗର ବିନୁ ତ ବାହାର ହୋଇଲେ ।
ବୋଇଲେ କପିଳାସ ତ ଯିବୁ ଏହିକ୍ଷଣ
ଶିବଠାରୁ ମାଗିଆଣ ନାମ ତୃଣ ।
ପର୍ଶୁରାମ ନାରାଚ ଆଣିବଟି ପୁଣ
ଦେବତାମାନେ ଜାଣିବେ କହିବୁ ତାଙ୍କୁ ପୁଣ ।
ଏତେ ବୋଲି ବାସୁଦେବ ସକଳ ଶସ୍ତ୍ର ଦେଲେ
ମୋର ସଙ୍ଗେ ବାଦକଲେ ବଳଯିବ ଯେଭଲେ
ଏତେ କହି ବାସୁଦେବ ଗରୁଡ଼ ପରେ ଚଢ଼ି
କମଳାଙ୍କୁ କୋଳ କରି ଚଳିଲେ ଦେବ ହରି ।
ପର୍ଶୁରାମ ବୋଇଲେ ମୁଁ କରିବି କି ପୁଣ
ବାହନ ନ ଦେଲେ ମୁନିହେ ହେବି ଅକାରଣ ।
ଶ୍ରୀହରି ବୋଇଲେ ଯାକୁ ସୁମରିବୁ ଜାଣ
ସେ କଥା ପ୍ରାପତ ହେବ କହିଣ ଗଲି ପୁଣ ।
ଶୁଣିକରି ପର୍ଶୁରାମ ହରଷ ହୋଇଲା
ଅନନ୍ତ ଶର୍ଯ୍ୟାକୁ ଯେ ବାସୁଦେବ ଗଲା ।
କମଳାଙ୍କୁ ଘେନି ଦେବ ଗଲେ ନିଜ ସ୍ଥାନେ
କ୍ଷୀରସାଗରେ ବାସୁଦେବ ଶୟନ କଲେତେଣେ
ଶୟନ କରିବାରୁ ବାସୁଦେବର ବଳ
ପର୍ଶୁରାମ ଶରୀରେ ହୋଇଲେ ଆସିଠୁଳ ।
ବଶିଷ୍ଠ କହିବାରୁ ଦଶରଥ ଶୁଣି
ଚିନ୍ତା ତେଜ୍ୟା କରିଥିଲା ଭୟ ଯେ ଗଲାପୁଣି ।
ବେଦବରଙ୍କୁ ମନାଇ ବଶିଷ୍ଠ କହନ୍ତି କଥା
ଏମନ୍ତ ପ୍ରକାରେ ପର୍ଶୁରାମ ଜନ୍ମର ବ୍ୟବସ୍ଥା ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ପର୍ଶୁରାମ ଜନ୍ମ ଯେ ଶୁଣିଲି ମୁହିଁ କର୍ଣ୍ଣ ।
ଜାଣଇ ପର୍ଶୁରାମ ଅଟଇ ନିରଞ୍ଜନ
ଆପେ ଜଗନ୍ନାଥ ଜନ୍ମ ହେଲେ ପୁଣ ।
କେଉଁ ଅବତାର ମୋର ଆଗେ କହ
କିମ୍ଭୁତ ଅବତାର ନୁଅଇ କି ପ୍ରିୟ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ଅବତାର ଲେଖ ପର୍ଶୁରାମ ନାମ ଗୋଟି ।
ସଙ୍ଖାସୁର ମାରିବାକୁ ମୀନ ରୂପେ ହରି
ପ୍ରଥମ ଅବତାର ଯେ ମତ୍ସ୍ୟରୂପ ଧରି ।
ଦ୍ୱିତୀୟ ଅବତାର କର୍ମଠ ରୂପ ଧରି
ସାଗର ମନ୍ଥନ କାଳେ ମନ୍ଦର ଧରି ।
ତୃତୀୟ ଅବତାର ଶୂକର ରୂପ ତାର
କଶ୍ୟପ ଅସୁରକୁ କଲେ ଯେ ନିବାର ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଈଶ୍ୱର
ଏକା ଅସୁରକୁ ମାରିବାକୁ ହୁଅନ୍ତା ଅବତାର ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ ।
ଅନେକ ଅସୁର ମାରନ୍ତି ଅବତାରେ ହରି ।
ଶଙ୍ଖାସୁରକୁ ଯେତେବେଳେ କଲେକ ନିଧନ
ନଉ ସାଗର ଅସୁର ନାଶିଲେ ଦେବ ପୁଣ ।
ଯେତେବେଳେ ମନ୍ଦର ଧରିଲେ କମଠ ରୂପରେ
ମର୍ତ୍ତ୍ୟେଆସିସାଗର ତତ୍ୱମାଇଲେ ସେତେବେଳେ
ଯେତେବେଳେ ଶୁକ ରୂପ ହେଲେ ଅବତାର
ବିଶ୍ୱାସମତେ ସାଗର ମାଇଲେ ଦୈତ୍ୟବଳ ।

ପାର୍ବତୀ ବୋଇଲେ ସେଠାରୁ କିସହେଲା
ଏବେ ମୋର ମନ ଯେ ଅପ୍ରତେ ପୁଣ ଗଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ଚତୁର୍ଥ ଅବତାର ହୋଇଲେ ଦେବ ପୃଥ୍ୱୀ ।
ନୃସିଂହ ଅବତାର ସ୍ତମ୍ଭରୁ ବାହାରିଲେ
ହିରଣ୍ୟ ଦୈତ୍ୟକୁ ସେ ନଖରେ ବିଦାରିଲେ ।
ସେତେବେଳେ ତାହାର କୁମର ପ୍ରହଲ୍ଲାଦ
ସ୍ୱର୍ଗପୁରେ ଇନ୍ଦ୍ର ତାକୁ କଲେ ଦେବରାଜ ।
ଏକାଦଶ ସାଗର ମାଇଲେ ଦୈତ୍ୟବଳ
ସେତେବେଳେ ଶାନ୍ତ ମୂର୍ତ୍ତି ଧଇଲେ ଆଦିମୂଳ
ଶାନ୍ତି ହେବାରୁ ଚତୁର୍ଥ ମୂର୍ତ୍ତି ପ୍ରକାଶିଲେ
ତିନିପୁର ସମ୍ଭାଳି ସ୍ୱର୍ଗରେ ମିଳିଲେ ।
ସୁଧର୍ମା ସଭାରେ ବସାଇ ଅସୁରକୁ
ଆପେ ଆପେ ଦେବରାଜ ଯେ କଲେକ ତାହାକୁ
ସକଳ ଦେବତା ତାହାର ପଦେ ଖଟି
ଦେବ ଗର୍ବ ଚୂନାକଲେ ବିଚାରି ଯଦୁପତି ।
ଅସୁରକୁ ଦେଖି ଯେ ଶଚି କୋପମନ
ବୋଇଲା ଦୈତ୍ୟକୁ ମୁଁ ନ ଦେବି ଦେହ ପୁଣ
ଆଦର ନ କରିବି ନଯିବି ତାର ପାଶ
ଏମନ୍ତ ବିଚାର କଲେ ଅଚ୍ୟୁତ ନାରୀ ସେତ ।
ତାହା ଜାଣି ଚକ୍ରପାଣି ସେଠାରେ ପ୍ରବେଶ
ଦେଖିକରି ସେହି ନାରଦ ଆସିଲେ ପାଶ ।
ଦେଖିଣ ଶ୍ରୀହରି ଯେ ମନରେ ତାପ କରି
ସିଙ୍ଘ କୁମର ଯେ ପାଖକୁ ଡାକି କରି ।
ବୋଇଲେ ରାଣୀକି ପଚାର ଯାଇ କରି
କିମ୍ପାଇ ମୋହଠାରେ ମନ ଯେ ତାହାଙ୍କରି
ଶୁଣିଣ ସିଙ୍ଘର କୁମର ଚଳିଗଲା
ଇନ୍ଦ୍ରାୟଣୀ ପାଶରେ ଯାଇଣ ମିଳିଲା ।
ବୋଇଲା ଦେବରାଣୀ ଶୁଣ ମୋ ବଚନ
ସ୍ୱର୍ଗର ନାରୀ ତୁ ନୋହିବୁ ପୁଣ ।
ଇନ୍ଦ୍ରାୟଣୀ ବୋଇଲେ କି କାର୍ଯ୍ୟ ଅଛି ମୋର
ଦୈତ୍ୟ ଗୁରସ୍ତ କରିବାର ନୁହଁଇ ବେଭାର ।
ରାହୁ ବୋଇଲା ତୋତେ ପ୍ରମାଦ ଆସି ହେଲା
ବାଡ଼ିତାଟି ଖଟିବାକୁ ଯୋଗ ଯେ ଘଟିଲା ।
ସାଆନ୍ତାଣୀ ନୋହିବୁ ମଙ୍ଗଳା ଖଟିବୁ
ଏଥି ଉତ୍ତାରୁ ଆଉ କି ସୁଖ ପାଇବୁ ।

ଶଚିଦେବୀ ବୋଇଲେ ହେବି ମୁଁ ନୀଚ ପୁଣି
ନିଶ୍ଚେ ପାଣ ତେଜ୍ୟା କରିବି ମୁହିଁ ଜାଣି ।
ରାହୁ ବୋଇଲେ ତୋର ଜୀବନ ସିନା ଯିବ
ମାଟିରେ ମିଶିବୁ ସିନା ଲଭିବୁ କେଉଁ ଯୋଗ
ଶଚିଦେବି ବୋଇଲେ ମୁଁ ଶ୍ରୀହରିଙ୍କ ହେଲିତୋଷ
ରାହୁ ବୋଇଲେ ସେ ଯେ ବ୍ରହ୍ମାଣ୍ଡ ପୁରୁଷ ।
ଉତ୍ପତ୍ତି ସ୍ଥିତି ପ୍ରଳୟ ତାହାର ହସ୍ତେ ସିନା
ସବୁ ଜୀବ ତାରଠାରୁ ହୋଇଲେ ଜାତ ସିନା ।
ଜାତକରି ମାଇଲେ କିଛି ଦୋଷ ନାହିଁ
ଦୋଷ ଥିଲେ ପ୍ରଳୟ ହୁଅନ୍ତା କାହିଁ ପାଇଁ ।
ରାଣୀ ହେବାର ତୁ ହୁଅଇ ଉଚିତ
ଭୋଗ ସରିବାରୁ ତୋତେ ଲାଗିଲା ଉସତ ।
ଅନେକ ଦିନ ପୁଣି ପାଇଲୁ ଭୋଗ ଯୋଗ
ସେ ତୋତେ ଅବିଗୁଣ କରାଉଛି ଭୋଗ ।
ଶଚି ବୋଇଲେ ସେ କିମ୍ପା ଇନ୍ଦ୍ରଙ୍କୁ ଭୋଗକଲେ
ରାହୁ ବୋଇଲେ ସେ କଥା ତୁହି ଶୁଣ ଭଲେ ।
ତୋତେ ଇନ୍ଦ୍ର ତେଜିଲା ତେଜିଲା ବିଦ୍ୟାଧରୀ
ଅପସରୀ କିନ୍ନରୀ ଗଲା ଯେ ତେଜ୍ୟା କରି ।
ଗଉତମ ନାରୀ ଯେ ଅଟନ୍ତି ଅହଲ୍ୟା
ତାର ସଙ୍ଗେ କେଳ ହେଲେ ତୋର ସଙ୍ଗେଭଲା
ସେତେବେଳେ ତାହାଙ୍କୁ ନ କଲୁ କିମ୍ପା ମନା
ଏବେ ତୁ ଗୁରସ୍ତ ପାଇଁ କରିଛୁ କାମନା ।
ଋଷ ସେତେବେଳେ ଅଛଇ ଶ୍ୟାପ ଦେଇ ।
ଧର୍ମକୁ ଲଙ୍ଘିଲୁ ଯେ ସୁର ପ୍ରଜା ହୋଇ ।
ଦୁଇମନୁ ପର୍ଯ୍ୟନ୍ତ ନ ରହିବ ସ୍ୱର୍ଗ
ତୋର ଭାରିଯାକୁ ହରିବେ ଦେବରାଜ ।
ଦୁଇମନୁ ପର୍ଯ୍ୟନ୍ତ ମଳ ଯେ ତୁହି ହେବୁ
ତେବେ ସେ କାରଣ ଶ୍ୟାପରୁ ପାଇବୁ ।
ଶଚି ବୋଇଲା ମଳ ହୋଇଲା କେଉଁଭାବେ
ରାହୁ ବୋଇଲେ ଦେବୀ ଶୁଣ ତୁ ସରାଗେ ।
ଯେତେବେଳେ ବୃତ୍ରାସୁର ତାକୁ ଜାଳିଦେଲା
ତାହାର ଗର୍ଭରେ ଇନ୍ଦ୍ର ଯାଇଣ ରହିଲା ।
ପେଟ ଫାଟନ୍ତେ ସିନା ହୋଇଲା ବାହାର
ବୃତ୍ରାସୁର ମଳ ଯେ ହୋଇଲେ ବଜ୍ରଧର ।
ଶରୀର ଦୁର୍ଗନ୍ଧ ଯେ ଦେବତା ନ ଖଟିଲେ
ପାପୀ ବୋଲି ତାର ମୁଖହିଁ ନ ଚାହିଁଲେ ।

ଅପସରୀ ବିଦ୍ୟାଧାରୀ କିନ୍ନରୀ ଗନ୍ଧର୍ବେ
ସମସ୍ତେ ଅବିଗୁଣ ପାତକ ଦେଖି ସର୍ବେ ।
ସେଥି ସକାଶେ ତୋର ସ୍ୱାମୀ ଯେ ପଳାଇଲା
ବଂଶାସ ସରବରେ ତାପ ଯାଇ କଲା ।
ଏତେବେଳେ ସେହିଠାରେ ଅଛି ଯେ ସୁନ୍ଦରୀ
ସେ କଥା ଚଳିବ ଛାଡ଼ିଣ ସ୍ୱର୍ଗପୁରୀ ।
ଦେବ ଅସୁର ସିନା ଗୋ ଅଟନ୍ତି ଏକତ୍ର
ଗୋବିନ୍ଦର ବୋଲ କର ଗୋ ତୁରିତ ।
ଶୁଣିଣ ଶଚିଦେବି ସୁବେଶ ହୋଇଲା
ଅର୍ଘ୍ୟ ଥାଳି ହସ୍ତରେ ଘେନିଣ ଚଳିଗଲା
ବାସୁଦେବଙ୍କୁ ଅର୍ଘ୍ୟ ଯେ ଦେଲା ନେଇକରି
ବାସୁଦେବ ବୋଇଲେ ଶୁଣରେ ସୁନ୍ଦରୀ ।
ପ୍ରହ୍ଲାଦ ଶରରେ ଦିଅରେ ଅର୍ଘ୍ୟ ନେଇ
ଆଜଠାରୁ ପ୍ରହ୍ଲାଦ ସ୍ୱାମୀ ଯେ ତୋର ହୋଇ ।
ମନୁଏ ପର୍ଯ୍ୟନ୍ତ କରିଲେ ତୋତେ ଭୋଗ
ସେଠାରୁ ବଳି ତୋତେ ହୋଇବ ପୁଣ ଯୋଗ ।
ମନୁଏ ପର୍ଯ୍ୟନ୍ତ ସେହି ଯେ ରାଜା ହେବ
ତେବେ ତୋର ସ୍ୱାମୀ ଦେହ କ୍ଳେଶ ହେବ ।
ସେତେବେଳେ ତୋର ସଙ୍ଗେ ମିଳିବି ମୁହିଁପୁଣି
ଶୁଣିକରି ଦେବୀ ସନ୍ତୋଷ ହେଲା ଜାଣି ।
ପ୍ରହ୍ଲାଦ ଶିରରେ ଅର୍ଘ୍ୟ ନେଇ ଦେଲା
କରଧରି ନିଜ ମନ୍ଦିରକୁ ନେଲା ।
ହାସ୍ୟ ପରିହାସ ଖେଳ ଯେ କୌତୁକ
ହରଷରେ ଦୁଇଜଣ ହରଷ କଲେ ଚିତ୍ତ ।
ରତି ରସ ବିନୋଦେ ନାନାରଙ୍ଗେ
ଭାବପ୍ରୀତି ଉପୁଜିଲା ଦୁଇଜଣ ସଙ୍ଗେ ।
ସୁବାସ ଜଳରେ ରାଜା କଲେକ ସ୍ନାହାନ
ଅମଳାଣ ପିନ୍ଧି ବିଭଶ ସତ୍ୱର ହେଲେ ଜାଣ ।
ଅପସରୀ କିନ୍ନରୀ ବିଦ୍ୟାଧରୀ ଆସି
ଯେ ଯାହା ସେବାରେ ରହିଲେ ପୁଣ ଖଟି ।
ନୃତ୍ୟରଙ୍ଗ କଲେ ଯେ ଅପସରୀ ଗଣ
ପ୍ରହ୍ଲାଦ କୋଳରେ ଶଚିଦେବ ପୁଣ ।
ବେଣୁ ବୀଣା ତାର ଝଞ୍ଜାଳ ମର୍ଦ୍ଦଳ
ଗାନ୍ଧାର ରାଗରେଗୀତ ତହିଁ କଲେ ସ୍ଥିର ।
କ୍ଷେମଟା ରଙ୍ଗରେ ନାଟ କଲେ ପୁଣି
ରାଜା ରାଣୀ ଦୁହିଁଙ୍କର ମନ ଯେ ଦୁରେ ପୁଣି ।

ଦେବଗଣ ଆସିଣ ଖଟିଲେ ତାକୁ ପୁଣି
ସମସ୍ତ ରାଜ୍ୟରେ ରାଜା ହେଲ ତୁମ୍ଭେ ପୁଣି ।
ସ୍ୱର୍ଗପୁରେ ରାଜା ଦୈତ୍ୟ ପୁଣି ହେଲେ
ସେଠାରୁ ଶ୍ରୀହରି ଯେ କିସ ପୁଣ କଲେ ।
ସେ କଥା ଗୋଟି ମୋତେ କହ ପଞ୍ଚାନନୀ
ଈଶ୍ୱର ବୋଇଲେ ଶୁଣ ସଙ୍ଗାତୁଣୀ ।
ବାସୁଦେବର କଥା ପଚାରୁ ପ୍ରାଣସହୀ
ପ୍ରହ୍ଲାଦକୁ ସ୍ୱର୍ଗରେ ରାଜା କରିଦେଇ ।
ଅନନ୍ତ ଶୟନକୁ ଚରିଲେ ନାରାୟଣ
କମଳାଙ୍କୁ ଘେନି ଶୋଇଲେ ନିଜସ୍ଥାନ ।
ସହସ୍ର ବର୍ଷ ପର୍ଯ୍ୟନ୍ତ ବିହରେ ନାରାୟଣ
ଲୀଳାସାରି ଶୟନ ଅନନ୍ତ ପରେ ପୁଣ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଶୂଳଧର
ଯେଉଁ ସ୍ତମ୍ଭରୁ ବାସୁଦେବ ହେଲେ ଅବତାର ।
ସେ ସ୍ତମ୍ଭ ଅଜୀବ ଜୀବ ନାହିଁ ତାର
ଅଜୀବ ଶରୀରେ ରହି ସେହି ବାସୁଦେବ ଜାତ
ସେ କଥା ମୋର ଆଗେ କହ ପ୍ରାଣନାଥ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ପ୍ରାଣଶ୍ୱରୀ ।
ହିରଣ୍ୟ ଦୈତ୍ୟ ଯେ ସାଧକଲା ମହି
ନରବାନର ଦେବ ଅସୁରବଳ ସେହି ।
ସମସ୍ତେ ଖଟିଲେ ଯେ ପୟରେ ତାହାର
ସବୁରି ଉପରେ ସେ ହୋଇଲା ଈଶ୍ୱର ।
ସ୍ୱର୍ଗର ଦିଗପାଳ ଶୁକ୍ର ଯେ ମନ୍ତ୍ରୀଜାଣ ।
ସେହି ଦୈତ୍ୟବଳ ହୋଇଲେ ମନ୍ତ୍ରୀଗଣ ।
ସମସ୍ତଙ୍କୁ ଜିଣିଣ ଅସୁର ନୃପତି
ଜେନାମଣି ପାଟଣାରେ ତାର ନିଜ ସ୍ଥିତି ।
ବାରସ୍ୱତୀ ଭୂବନ ସେଥିରେ ସ୍ଥାପିଲା
ଶୁକ୍ରମନ୍ତ୍ରୀ ସେ ଭୂବନ ଜୀବନ୍ୟାସ କଲା ।
କୋଟିଏ ଖମ୍ବ ସେଥିରେ ବସାଇ ଦୈତ୍ୟଥିଲା
ଖମ୍ବମାନଙ୍କୁ ଜୀବପୁଣି ଉଜ୍ୱଳ କଲା ।
ଓରା ଗୁଜ ଶେଣୀ ରୁଅ ଚାରିବର୍ଣ୍ଣ
ଓରାପରେ ତ୍ରିଦଶ ଦେବତା ନାମ ଜାଣ ।
ଗୁଜକୁ ନବଗ୍ରହ ନାମ ଦେଲା ମାନି
ଦଶଦିଗ ପାଳଙ୍କନାମ ସେ ଅଟେ ପୁଣି ।
ଗନ୍ଧର୍ବ କିନ୍ନର ଯେତେକ ଦେବଗଣ
ରୁଅଙ୍କର ନାମ ଯେ ହୋଇଲା ସବୁ ପୁଣ ।

ସେଥି ଭିତରେ ସିଂହାସନ କଲେକ ଯେ ସେହୁ
ନାମଦେଲା ଅମର ସିଂହାସନ ହେଉ ।
ଅମର ରାଜା ଯେ ଅଟଇ ସୁରପତି
ତାର ନାମ ସିଂହାସନ ଦେଲ ଦୈତ୍ୟ ସେଥି
ଏମନ୍ତେ ବାରସ୍ୱତୀ ଭୂବନ ଯେ ଯେ କଲା
ଦେବ ଋଷିଙ୍କର ନାମ ଯେ ତାକୁ ଦେଲା ।
ପାର୍ବତୀ ବୋଇଲେ କିମ୍ପା ସେ ଏହା କଲା
ଈଶ୍ୱର ବୋଇଲେ ଦୈତ୍ୟ ପର୍ବତ ହୋଇଲା ।
ବିଚାରିଲା ମୋର ପୁରେ ସମସ୍ତ ନାମଥିବ
ଦେବତାଙ୍କୁ ଦେଖିଲି ମୁଁ ସେ ମୋର ଶତଭାବ
ତାଙ୍କର ନାମମାନ ଏଥିରେ ଯେବେ ଥିବ
ସକଳ ଦେବ ଖଟିଲା ପରାଏ ମୋତେ ହେବେ ।
ଏମନ୍ତ ବିଚାର ଯେ କରିଣ ଦୈତ୍ୟବର
ଋଷ ଦେବତା ନାମରେ କଲା ଯେଉଁ ଘର ।
ବାରକୋଟି ମନ୍ଦିର ସେଥିରେ ରଚିଲା
ବାରସ୍ୱତୀ ଭୂବନ ତେଣୁ ନାମ ଦେଲା ।
ଶୁକ୍ରଙ୍କୁ ବୋଇଲା ଶୁଣ ହେ ମନ୍ତ୍ରୀବର
ଦେବତାଙ୍କ ନାମଦେଲି ଦେବ ଯେ ହେଲା ମୋର
ସେମାନେ ମୋତେ ଯେ ଖଟିଲେ ପତିଭାବେ
ଏକଥା ଭଲଟିକି କହ ମନ୍ତ୍ରୀ ବେଗେ ।
ମନ୍ତ୍ରୀ ବୋଇଲେ ଏକଥା ଭଲ ହେଲା
ଦେବତା ଖଟିଲା ପ୍ରାଏ ମୋତେ ଯେ ଲାଗିଲା ।
ହିରଣ୍ୟ ବୋଇଲା ମିଛ କିସତ ପୁଣ
ସୁମରିବା ବେଳେ ମୋତେ କହିବ ବଚନ ।
ଶୁକ୍ର ମନ୍ତ୍ରୀ ବୋଇଲେ ମୁଁ ଜୀବନ୍ୟାସ କଲି
ମନ୍ତ୍ରରେ ତାହାକୁ ଯେ ଘରେ ରଖାଇଲି ।
ହିରଣ୍ୟ ବୋଇଲେ ଏବେ ପରୀକ୍ଷା କରିବା
ଡାକିବା ଶୁଣିଲେ ପ୍ରତେ ତେବେ ଯିବା ।
ଶୁଣିଣ ଶୁକ୍ର ମନ୍ତ୍ରୀ ବୋଇଲେ ବଚନ
ମନ୍ତ୍ରରେ ଦେବତାଏ ହୁଅନ୍ତି ପ୍ରସନ୍ନ ।
ଗନ୍ଧ ପୁଷ୍ପ ସେହି ଯେ କରନ୍ତି ଆହାର
ସକଳ ଦେବତାଙ୍କୁ ଏମନ୍ତ ପ୍ରକାର ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ବିଶ୍ୱନାଥ
ଖମ୍ବ ଶେଣୀ ଗୁଜ ରୁଅ ବତା ସହିତ ।
ଏମାନଙ୍କର ଦେବତା କଲା ଯେ ବିଶ୍ରାମ
ସେ ପୁର ନାମ ଗୋଟି କିସ ହେଲେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ବଲ୍ଲଭି ଏବେ
ସେହିକଥା କହିବା ଶୁଣରେ ସ୍ୱଭାବେ ।
ସେ ପୁର ନାମ ଗୋଟି କିସ ଦେଲେ ଅସୁର
ହିରଣ୍ୟ ଗର୍ଭ ବୋଲି ନାମ ଦେଲେ ତାର ।
ସ୍ତମ୍ଭଯାକ ମାଣିକ୍ୟ ଯେ ଅଟେ ହିରା
ଓରାଯାକ ବୈଢୁର୍ଯ୍ୟ ଗୁଜ ମୋତି ହିରା ।
ବଣଯାକ ବିଳାରେ ସୁବର୍ଣ୍ଣ ଛାଏଣୀ
ଏମନ୍ତେ ଜରାଗୋଟି ନିବାଡ ଗୋଟି ପୁଣି ।
ଶତେ ଯୁଣ ପ୍ରତି ଯେ ଶତେଯୁଣ ଦୀର୍ଘ
ଭିତରେ ନଗ୍ର ଚନ୍ଦ୍ର ସୂର୍ଯ୍ୟଙ୍କୁ ରଣ ଦୈତ୍ୟ ।
କାଳ ଯୁଗକୁ ଚିର କଲେକ ମନ୍ଦିର
ନବ କ୍ଷଉଣୀ ସେଥିରେ ରଖେ ଦୈତ୍ୟବଳ
ଉପରେ ଧବଳ ଯେ ମେରୁକୁ ଘୋଡାଇଲା
ତଳେ ନଦୀ ପୁଷ୍କରଣୀ କୂପବାଙ୍ଗୀ କଲା ।
ଅଷ୍ଟରନ୍ ତ୍ରିପୁର ଦେଇଥିଲା ଦୈତ୍ୟ
ସେଥିର ଭିତରେ ରଖିଲା ଦୈତ୍ୟ ନାଥ ।
ଆଇବାର ଜୀବମାନ ସେଥିରେ ଦେଇକରୀ
ସକଳ ଜୀବଙ୍କୁହିଁ ରଖିଲା ବାନ୍ଧିକରି ।
ଧାନ ଚାଉଳ ଅନେକ ପ୍ରକାରେ ବ୍ୟଞ୍ଜନ
ଷଡ ବର୍ଣ୍ଣେ ଚିକଣ ରଖିଲା ନେଇ ପୁଣ ।
ଦେବାଙ୍ଗରେ ପତନୀ ଯେତେକ ଦେଇଥିଲା
ସେହି ଗର୍ଭ ଭିତରେ ନେଇଣ ରଖିଲା ।
ଅମର ସିଂହାସନେ ବସିଲା ରାଜନ
ମନ୍ତ୍ରୀଙ୍କୁ ବୋଇଲେ ଶୁଣ ମୋ ବଚନ ।
ଏ ପୁର ଗୋଟି ମୋର ଅମର ପୁରହେବ
କୌଣସି କାଳେ କ୍ଷୟ ଯେ ନୋହିବ ।
ଏ ପୁର ଭିତରେ ଶତେକ ମୋର ବଳ
ସମସ୍ତେ ଅମର ହୋଇବେ ଚିରକାଳ ।
ଶୁକ୍ର ଦେବ ବୋଇଲେ ଶୁଣ ହେ ରାଜନ
ଏ ପୁରେ ଥିଲାଯାକ ନୋହିବ ମରଣ ।
ବାହାରକୁ ଅଇଲେ ମରିବ ନିଶ୍ଚେ ଜାଣ
ଏ ପୁର ଭିତରେ ଯାହାକୁ ରଖିବୁ ତୁ ଜାଣ ।
ସେ ଅମର ହୋଇବ ମାରି ନ ପାରିବୁ
ଏହି କଥା ମୋହର ଅସ୍ତୁ ହେଉ ବାବୁ ।
ଶୁଣିଣ ରାଜନ ଯେ ପରମ ତୋଷ ହେଲେ
ଶୁକ୍ର ଦେବ ତାହାକୁ ସନ୍ତୋଷେ ବୋଇଲେ ।

ଏହି ପୁର ଗୋଟି ପ୍ରଳୟ ଯାଏ ଥିବ
ସ୍ୱର୍ଗପୁର କ୍ଷୟ ଗଲେ ଏ ପୁର କ୍ଷୟ ଯିବ ।
ଶୁଣିଣ ରାଜନ ଯେ ହରଷେ କହେ ବାଣୀ
ପରୀକ୍ଷା ଦେଲେ ସିନା ତୁମ୍ଭର ସତ୍ୟ ମାନି ।
ଶୁକ୍ରଦେବ ବୋଇଲେ ଦେବୁ କାହାକୁ ସଙ୍କେତ
ହିରଣ୍ୟ ବୋଇଲେ ଯେ କଶ୍ୟପ ମୋର ତାତ
ଆଗେ ପିତାଙ୍କୁ ଯେ ଦେଖିବି ନୟନେ
ପଛେ ଦେବତାଙ୍କ ପ୍ରମାଣ କଥା ପଶେ ।
ପ୍ରଥମେ ମାଣିକ୍ୟ ସ୍ତମ୍ଭକୁ ଶୁକ୍ର ମନ୍ତ୍ରୀ କହି
ମନ୍ତ୍ର ଉଚ୍ଚାରିଣ ବସିଣ କଲା ସେହି ।
ତତକ୍ଷଣେ କଶ୍ୟପ ଖମ୍ଭରୁ ଅବତରି
ମନ୍ତ୍ରର ବଳେ ଋଷି ଛାୟା ରୂପ ଧରି ।
ଦେଖିଣ ହିରଣ୍ୟ ଯେ ପରମ ତୋଷହେଲା
ପିତାର ଚରଣେ ଯେ ନମସ୍କାର କଲା ।
ହସ୍ତ ଟେକି ପିତା ଯେ ସୁକଲ୍ୟାଣ କଲେ
ଛାୟାରୂପ ଗୋଟି ସ୍ତମ୍ଭରୁ ମିଶିଗଲେ ।
ଦେଖିଣ ହିରଣ୍ୟ ଦୈତ୍ୟ ହରଷ ମନରେ
ଦେଖିଲା ଶୁକ୍ର କଥା ଭେଟିଲାକ ଖରେ ।
ହିରଣ୍ୟ ବୋଇଲେ ତୁମ୍ଭେ ଦିଗପାଳେ ଶୁଣ
ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କୁ ଦେଖାଅ ତା ପୁଣ ।
ଶୁଣିଣ ଶୁକ୍ରଦେବ ବସିଲେ ନିଶ୍ଚଳେ
ଆସନ ଶୁଦ୍ଧକଲା ମନ୍ତ୍ରର ପ୍ରବଳେ ।
ଅଙ୍ଗନ୍ୟାସ କରିଣ ମନ୍ତ୍ର ଉଚ୍ଚାରିଲେ
ରବିଚନ୍ଦ୍ର ମନ୍ତ୍ର ଯେ ସୁମରଣା କଲେ ।
ହୃଦ ପଦ୍ମରେ ସ୍ତୁତି ଯେ କରଇ ମାନ୍ୟଧର୍ମ
ବୋଇଲା ବିଜୟ କର ଦାନବ ଆଗେଣ ।
ବିଜୟ ନ କଲେ ଯେ ସ୍ୱର୍ଗ ଯିବ ନାଶ
ସକଳ ଦେବତାଏ ଖଟି ଯାର ପାଶ ।
ବନ୍ଦି ଆକଟରେ ଏହାର ପାଶେ ଥିବ
ଇଚ୍ଛାରେ ବିହରଣ କେବେ ନ କରିବ ।
ମୋହର ଦୋଷ ନାହିଁ ପଛନ୍ତେଣ ଜାଣ
ତୁମ୍ଭଙ୍କୁ ଅକାରଣ ମୋତେ ଯେ ମରଣ ।
ବେଦବିଦ୍ୟା ସେବୁ ହରିବ ଦୈତ୍ୟବୀର
ଜଳସ୍ଥଳେ କେଉଁଠାରେ ରହି ନପାର ।
ଶୁଣିଣ ରବିଚନ୍ଦ୍ର ଆଗରେ ଆସି ମିଳି
ଦେଖିଣ ହିରଣ୍ୟ ଦୈତ୍ୟ ବେନି କରଯୋଡ଼ି

ବୋଇଲେ ରାତ୍ରଦିନ ମୋଠାରେ ଦୟାକର
ହିରଣ୍ୟ ଗର୍ଭ ଭିତରେ ସଦା ରହି ବିହର ।
ରବିଚନ୍ଦ୍ର ବୋଇଲେ ହୋଇଲେ କଥା ସତ
ଆମ୍ଭେ ନ ରହିଲେ କେମନ୍ତେ ହେବ ଆତଯାତ
ରାତ୍ର ଦିବସରେ ଏଥେ କରୁଛୁ ଆମ୍ଭେ ଡର
ପ୍ରଳୟ ହେବା ପର୍ଯ୍ୟନ୍ତ ରହିଲୁ ତୋର ପୁର ।
ଏତେ କହି ରବିଚନ୍ଦ୍ର ବେଗେ ଚଳିଗଲେ
ହିରଣ୍ୟ ଗର୍ଭ ଭିତରେ ଉଦୟ ଅସ୍ତ ହେଲେ
ଶୁଣିଲେ ଦେବୀ ପରମ ତୋଷ ହୋଇ
ହରଷରେ ପାର୍ବତୀ ପୁଣିହିଁ ପଚାରଇ ।
ଦେବଙ୍କୁ ବନ୍ଦି ନକରି ନାମକୁ ବନ୍ଦିକଲେ
ବେଳକୁ ସେ ଦୈତ୍ୟ ଯେ ଧର୍ମକୁ ରଖିଲେ ।
ଈଶ୍ୱର ବୋଇଲେ ଦେବୀ ବୋଲେ ମନ୍ତ୍ରୀ
ଉପାୟ କରିଣ ରଖିଲାକ ସେଥି ।
ଦେବତାଙ୍କୁ ଦେବ କଲେ ଉପକାର
ସକଳ ଦେବତା ଯେ ତୋଷ ତୋହଠାର ।
ପଛନ୍ତେ ପ୍ରହ୍ଲାଦ ଠାରୁ ହେଲା ଜାତ ।



ସେ କୁମରଙ୍କୁ ପାଠ ପଢ଼ାଏ ଯେ ଦେବରାଜ
ତାହାର ହୃଦେ ଦେବୀ ଯେ କଲେ ଦେବରାଜ ।
ସେ ଦୈତ୍ୟକୁ ନାଶ ଯେ କରିବାର ହେତୁ
ପୁତ୍ରର ଶରୀର ନେଇ ରଖିଲେ ସେତୁ ।
ବିଦ୍ୟା ପଢ଼ନ୍ତେ କୁମର ଶ୍ରୀହରି ନାକ ଘୋଷି
ତେଣୁ ସେ ଅସୁର କ୍ରୋଧଭରେ ଧ୍ୱଂସି ।
ବୋଇଲା କୁମରେ ଶିବ ନାମ ଘୋଷ
ହରିନାମ ଗୋଟି ଯେ ଅଟଇ ମୋତେ ବିଷ ।
କୁମର ବୋଇଲା ମୋତେ ନ ଆସେ ଶିବନାମ
ହରି ନାମ ଗୋଟି ଆସଇ ଉତ୍ତମ ।
ଶୁଣିକରି ହିରଣ୍ୟ ହୋଇଲା ତାକୁ ରାଜ
ତୋର ମୁଖ ଚାହିଁବାରେ ମୋତେନୁହେଁ ଯୋଗ
କଟୁଆଳକୁ ବୋଇଲା ଯାକୁରେ ଦିଅ ବେଗ ।
ଶୂଳିଆ ପଦାରେ ଶୂଳି ଦିଅରେ ନେଇ ବେଗ
ଶୁଣିଣ କଟୁଆଳ ବେଗେ ଘେନିଗଲା.
ବେକ କାଟି ଶୂଳିଆ ପଦାରେ ଶୂଳିଦେଲା ।
ରାଜାର ଆଗରେ କହିଲା ଆସିକରି
ପ୍ରହ୍ଲାଦ କୁମରକୁ ମାଇଲି ମୁହିଁ ଧରି ।

ଶୁଣିଣ ହିରଣ୍ୟ ଦୈତ୍ୟ ହରଷ ହୋଇଲା
ଏହି ସମୟରେ ଚାର ଆସି ଜଣାଇଲା ।
ବୋଇଲା ପ୍ରହ୍ଲାଦ କୁମର ତୋହର
ପାଠ ପଢୁଅଛି ଦେଖ ଯା ନୃପବର ।
ଶୁଣିକରି ରାଜନ ବେଗେ ଯାଇ
ଦେଖି ତିଙ୍କିରେ କୁଟିଶୀଳରେ ତାକୁ ବାଟି ।
ବ୍ୟଞ୍ଜନ କରି ଖାଇଲେ ଦୈତ୍ୟରାଣ
ଭୋଜନ ସାରନ୍ତେ କଲେକ ଆଚମନ ।
ପ୍ରଡିଆ ଭୁଞ୍ଜିଣ ଜଗତିପରେ ବିଜେ
ବିହ୍ଲାଦ ମିଳିଲେ ଆସି ଅସୁର ସେ ଯେ ।
ପିତାଙ୍କୁ ଦେଖିଣ ନମସ୍କାର କଲା
ଦେଖିଣ ହିରଣ୍ୟ ଉଠିଣ ଧଇଲା ।
ସ୍ତମ୍ଭ ମୂଳେ ନେଇଣ ବସାଏ ସେହୁ ପୁଣ
ବୋଇଲା କୁମରରେ ଛାଡ ଅବିଗୁଣ ।
ଶ୍ରୀହରି ନାମ ଛାଡି ହରିନାମ ଜପ
ଯେବେ ତୁ କଥା ରଖିବୁରେ କାଳେକାଳେପକା
ପ୍ରହ୍ଲାଦ ବୋଇଲେ ଏକଥା ସବୁ ମିଛ
ଶ୍ରୀହରି ମସ୍ତକରୁ କମଳା ସିନା ଜାତ ।
ମୂଳକୁ ଧଇଲେ ସିନା କାର୍ଯ୍ୟ ହୁଏ ସିଦ୍ଧି
ଡାଳକୁ ଧଇଲେ ଛିଡି ପଡ଼ଇ ଅବଧି ।
ଡାଳ ଭାଙ୍ଗିଲେ ପିତା ପଡ଼ଇ ସିନା ମୂଳେ
ମୂଳ ଛିଡିଲେ କି ଯାଅଇ ଡାଳ ଆଡେ ।
ହିରଣ୍ୟ·ବୋଇଲା ଡାଳ ମୂଳ କିସ
ସେଥିର କଥା ମୋତେ କହି ବାଳ ଶିଷ୍ୟ ।
ପ୍ରହ୍ଲାଦ ବୋଇଲେ ମୂଳଟି ନାରାୟଣ
ତାଙ୍କଠାରୁ ଜାତ  ହେଲେ ଦେବଗଣ ।
ସେ ଦେବତାମାନଙ୍କୁ ନକରୁ ଯେ ସେବା
ସ୍ଥିର ହୋଇ ନ ରହିବୁ ମରିବୁ କାଳେ ଅବା ।
ପୁତ୍ରର ବଚନକୁ ଶୁଣିଣ ଦୈତ୍ୟରାଏ
ବରଡ଼ା ପତ୍ର ପ୍ରାଏ ଛାତିକୁ କମ୍ପାଏ ।
କ୍ରୋଧରେ ପ୍ରହ୍ଲାଦକୁ ଧଇଲା ପୁଣ ଟାଣେ
ବୋଇଲେ ଶ୍ରୀହରି ତୋତେ ରଖୁରେ ବାବୁ ଏଣେ
ପ୍ରହ୍ଲାଦ ବୋଇଲେ ପିତା ହୋଇକି ବାଟ ବଣା
ନିକଟେ ମରଣ ତୋର ହୋଇଲା ଆସି ସିନା
ଶୁଣିଣ ହିରଣ୍ୟ ଦୈତ୍ୟ ବୋଇଲା ବଚନ
ନିଶ୍ଚୟ କାଳ ତୋର ପୁରିଲା ନନ୍ଦନ ।

ପ୍ରହ୍ଲାଦ ବୋଇଲେ ମୋହର ପ୍ରଭୁ ବଡ଼
ତୁ ଛାର ହୋଇ ମୋତେ କି କରିବୁ ରାଢ଼ ।
ବିଚାରିଲେ ଏହି ସ୍ତମ୍ଭରେ ଅଛନ୍ତି ପୁରୀ
ମୁଢ଼ଜନ ପ୍ରାପତରେ ନୁହନ୍ତି ହରି ।
ଶୁଣିକରି ହିରଣ୍ୟ ଉଠିଲା ଗର୍ଜ କୋପମତେ
ନାତେକ ମାଇଲା ନେଇ ସ୍ତମ୍ଭ ଉପଲତେ ।
ନୃସିଂହ ରୂପେ ହରି ସ୍ତମ୍ଭରୁ ହେଲେ ଜାତ
ଜାତ ହୋଇ ହିରଣ୍ୟକୁ ଧଇଲେ ତୁରିତ ।
ଦଶନଖ ମାରିଣ ବିଦାରିଣ ତାର ପେଟ
ପ୍ରାଣ ହାରି ତୁରିତ ପଡିଲା ପାପିଷ୍ଠ ।
ବଳରାମ ଦାସ ସେକଥା ଶୁଣୁଥିଲା
ଜଗନ୍ନାଥ ଚରଣେ ପଡ଼ିଣ ବର୍ତ୍ତିଗଲା ।
ଏଥୁଅନ୍ତରେ ଗୋ ଶୁଣ ଭଗବତୀ
ହିରଣ୍ୟକୁ ନାଶକଲେ ନୃସିଂହ ମୂରତି ।
ଅନେକ ସୈନ୍ୟବଳ ମିଳିଲେକ ଆସି
ସମସ୍ତଙ୍କୁ ନାଶକଲେ ସାର୍ଦ୍ଧୋଳ ସିଂହଟି ।
ଦେଖିଣ ପ୍ରହ୍ଲାଦ ଅନେକ ସ୍ତୁତିକଲା
ତେବେ ସେ ନୃସିଂହ ମୁରତି ଶାନ୍ତ ହେଲା ।
ଶୁଣିଲଟି ଗୋ ହେମବନ୍ତର ଦୁଲଣୀ
ତୁ ବୋଇଲୁ ଅଜୀବରୁ କେଉଁ ଜୀବ ପୁଣି ।
ଏହି ରୂପେ କୁଟ ଯେ କଲାକ ଅଚ୍ୟୁତ
ତେବେ ସେ ମୃତ୍ୟୁ ପାଇଲା ହିରଣ୍ୟାକ୍ଷତ ।
ପାର୍ବତୀ ବୋଇଲେ ଚତୁର୍ଥ ଅବତାର ଗଲା
ପଞ୍ଚମ ଅବତାରେ କିସ ପୁଣି ହେଲା ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଶଶିମୁଖି
ବାମନ ଅବତାର ହୋଇଲେ ଭାବଗ୍ରାହି ।
ପ୍ରହ୍ଲାଦ ନାତୀ ଯେ ଅଟଇ ବଳି ପୁଣ
ଦାନଦେଇ ଦାତା ହୋଇଲା ବଳେଣ ।
ବାମନ ରୂପେ ଶ୍ରୀହରି ଦାନ ତାକୁ ମାଗି
ରସାତଳେ ତାକୁ ସେ ରଖିଲେକ ବେଗି ।
ପାର୍ବତୀ ବୋଇଲେ କଥାଏ ଏବେ ଶୁଣି
କେଉଁଠାରୁ ଜୟଦୁର୍ଗା ଜାତ ହେଲେ ପୁଣ ।
କେଉଁ ତପ କରିଣ ସେ ତୁମ୍ଭଙ୍କୁ ଲଭିଲା
ଈଶ୍ୱର ବୋଇଲେ ସେ କଥା ଶୁଣି ଭଲା ।
ପୂର୍ବରେ ଦୁର୍ଗା ଯେ ଯୋଗମାୟା ଜାଣ
ଯୈନରେ ଦେବୀ ଯେ ଦେଉଳରେ ସ୍ଥାନ ।

ନବକୋଟି ଦେବତା ସଙ୍ଗରେ ହୋନ୍ତି ମେଳା
ନିଶ୍ଚିନ୍ତରେ ଦେବୀ ଯେ କରଇ ନାନା କ୍ରୀଡା
ଏକଦିନେ ସେ ଦେବୀ ମୋହପୁରେ ଆସି
ମୋତେ ସେ ମୋହିତ କଲେ ଗରୁ ହଂସି ।
ମୋରମନ ମିଳିବାରୁ ତା ସଙ୍ଗେ କଲି ଲୀଳା
ବେଦବର ଜାଣିଣ ସେ ମୋତେ ବିଭାକଲା ।
ସେହିଦିନୁ ସେ ମୋର ଅଟନ୍ତି ଘରଣୀ
ସେହିକଥା ତୋର ଆଗେ କହୁଛି ସଙ୍ଗାତୁଣୀ ।
ପାର୍ବତୀ ବୋଇଲେ ତୁମ୍ଭେ ଗୋଟିକ ବିଭାହେଲେ
ଆଉ ଦେବୀମାନେ କି କଲେ ସୁଲଭ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଅଷ୍ଟ ଚଣ୍ଡୀ ଅଷ୍ଟ ଦୂର୍ଗା ସ୍ୱରୂପ ସେ ଅଟନ୍ତି ।
ତାହାଙ୍କର ସଙ୍ଗରେ ନବକୋଟି ଦେବୀ
ଚଉଷଠି କୋଟି ଅଟନ୍ତି ଯୋଗ୍ନି ଭେଦି ।
ଏମାନେ କିସ କଲେ କହ ମୋ ଆଗରେ
ପାର୍ବତୀ ବୋଇଲେ ମୁଁ ଶୁଣିବି କର୍ଣ୍ଣରେ ।
ଈଶ୍ୱର ବୋଇଲେ ସମସ୍ତେ ମୋତେ ସେବି
ଏକ ଦୁର୍ଗା ଅଶଂରୁ ସକଳେଛନ୍ତି ଜନ୍ମି ।
ସେବା କରିବାରୁ ଦୟା ମୁଁ ଯେ କଲି
ମୋର ଅଂଶରୁ ଚଉଦ କୋଟି ଭିଆଇଲି ।
ଚଉଦକୋଟି ଦେବଙ୍କୁ ତେରଷ୍ଟରୀ କୋଟିଦେବୀ
ବାଣ୍ଟିଣ ଦେଲି ମୁଁ ଯେ ହୋଇଣ ସଦଭାବି ।
ତେବେ ସେ ଦେବୀଗଣ ହୋଇଲେ ସନ୍ତୋଷ
ନାନାରଙ୍ଗେ ଲୀଳା ଯେ କରନ୍ତି ବିଶେଷ ।
ପାର୍ବତୀ ବୋଇଲେ ଏ ରୂପେ ହେଲେ ବଶ
ମୈଷାସୁର ଅସୁରକୁ କେ ପୁଣି କଲା ନାଶ ।
ଈଶ୍ୱର ବୋଇଲେ ତୁମେ ଶୁଣ ଗୋ ଶାକମ୍ଭରୀ
ଜୟଦୁର୍ଗା ମାଇଲେ ଶୁଣ ଗୋ ହେତୁକରି ।
ପାର୍ବତୀ ବୋଇଲେ ଦୁର୍ଗା ଏକା କି ନାଶକଲେ
ଈଶ୍ୱର ବୋଇଲେ ସକଳ ଦେବୀ ନାଶକଲେ ।
ସେ ଅସୁର ପ୍ରବାଳ ଅନେକ ସୈନ୍ୟବଳ
ସକଳ ଦେବୀ ନାଶକଲେ କଲେ ରଣଗୋଳ ।
ପାର୍ବତୀବୋଲେକେଉଁଠାରୁ ଆଣିଲେ ଧନୁଦ୍ରୋଣ
ଆସିଣ ଅସୁରକୁ କଲେ ନିଶୋଧନ ।
ଈଶ୍ୱର ବୋଇଲେ ମୁଁ ଅକ୍ଷୟ ଦ୍ରୋଣ ଦେଲି
ବେଦବର ଶକ୍ତି ଦେଲେ ଆଣିକରି ।

ବାସୁଦେବ ଦେଲେ ସକଳ ଶସ୍ତ୍ର ପୁଣ
ତେବେ ସେ ଅସୁରକୁ ମାଇଲେ ଦେବଗଣ ।
ପାର୍ବତୀ ବୋଇଲେ ସେ ଅସୁରକୁ ପୁଣ
କେହୁ ବର ଦେଲେ ସେ ପ୍ରବଳ ହେଲାଜାଣ ।
ଈଶ୍ୱର ବୋଇଲେ ବ୍ରହ୍ମା ଯେ ଦେଲେ ବର
ବରପାଇ ଅସୁର ଯେ ହେଲା ବଳିୟାର ।
ତିନିପୁର ଚଉଦ ଭୁବନ ସାଧ କଲା
ତ୍ରିଦଶ ଦେବତାଙ୍କୁ ସେ ପାଦରେ ଖଟାଇଲା ।
ତେବେ ସେ ଦେବକୂଟ ହୋଇଲାକ ପୁଣ
ବେଢ଼ି ମାଇଲେ ତାକୁ ସକଳ ଦେବଗଣ ।
ପାର୍ବତୀ ବୋଇଲେ ତାକୁ ପୁରୁଷେ ନମାରି
ମୋତେ ଏହି କଥା ଅସମ୍ଭବ ପରି ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଚନ୍ଦ୍ରମୁହିଁ
ଯେତେବେଳେ ବରମାଗେ ସେ ଚାନ୍ଦମୁହିଁ ।
ବୋଇଲେ ବେଦବର ଶୁଣ ମୋ ବଚନ
ଯେଉଁ ଦେବୀ ମାଗିବ ଦେବୀ ମୁଁ ନିଷ୍ଟେ ଜାଣ
ବେଦବର ବୋଇଲେ ମାଗରେ ବରଇଚ୍ଛା
ବେଦବର ତୋତେ ନ କରିବି କକ୍ଷା ।
ଶୁଣିଣ ଅସୁର ବୋଇଲା ଦେବ ଶୁଣ
ଏମନ୍ତ ବର ମୋତେ ଦେବ ଯେ ପ୍ରମାଣ ।
ଜଳରେ ନ ବୁଡ଼ିବ ପବନରେ ନ ଉଡିବ
ଅଗ୍ନିରେ ନ ପୋଡ଼ିବ ନର ବାନରେ ନମରିବ
ଦେବ ଅସୁରଙ୍କୁ ହସ୍ତେ ନ ମରିବି ପୁଣ
ନାଗବଳ ଧ୍ୱଂସିଲେ ନୋହିବି କିଛି ପୁଣ ।
ଦିବସେ ନ ମରିବି ନ ମରିବି ରାତ୍ରେ
ସ୍ତିରୀ ପୁରୁଷ ହସ୍ତେ ନ ମରିବି ଯୁକତେ ।
ଅସ୍ତୁ ହେଉ ବୋଇଲେ ବେଦବର
ବରପାଇ ଅସୁର ହୋଇଲା ପ୍ରବାଳ ।
ଯଶୋବନ୍ତ ପୁରକୁ ବିଧାତା ଚଡିଗଲା
ଚଉଦ ବ୍ରହ୍ମାଣ୍ଡ ତିନିପୁର ଅସୁର ସାଧିଲା ।
ତାହାର ପ୍ରତାପ ଯେ ସହେ ମହିଆଳି
ଶୁଣିଣ ବେଦବର ଧରଣୀକୁ କହି ।
ଅଳପ ଦିନ ଯେ ସମ୍ଭାଳ ହୁଅ ରହି
ଶୁଣିଣ ମହିଆଳି ବେଗେ ଚଳିଗଲା ।
ବେଦବର ଦେବତାଙ୍କୁ ଘେନିଣ ଭାଳିଲା ।

× × ×

ଦୁର୍ଗାଙ୍କୁ ସୁମରଣ କଲେକ ବିଧାତା
ପ୍ରବେଶ ହେଲେ ଯେ ତ୍ରୈଲୋକ୍ୟର ମାତା ।
ବେଦବର ବୋଇଲେ ଶୁଣ ଗୋ ରାଣୀ
ପଡ଼ିଲା ବିପଦ ରଖ ଗୋ ଠାକୁରାଣୀ ।
ଜୟଦୁର୍ଗା ବୋଇଲେ କିମ୍ପାଇ ଭାଳ ତୁହି
ବେଦବର ବୋଇଲେ ଦୁଃଖ ଯେ ସହି ନୋହି
ତପବଳେ ମହିଷାସୁର ମୋହିଲା ମୋର ମନ
ତେଣୁ ତାକୁ ବର ମୁଁ ଅକ୍ଷୟ ଦେଲି ଜାଣ ।
କାହାରି ହସ୍ତରେ ଯେ ନ ମରିବ ସେହୁ
ଦେବତାଙ୍କୁ ହୋଇଲା ଏବେ ପୁଣ ରାହୁ ।
ଯୋଗମାୟା ବୋଇଲେ କେମନ୍ତେ ମରିବି
ପୁରୁଷ ହତ୍ୟା ଦୋଷ କେମନ୍ତେ ମୁଁ ବହିବି ?
ବେଦବର ବୋଇଲେ ତୋଠାରେ ଅସମ୍ଭବ
ପୋତୁଅ ଛାଗଳ ତୁ କେମନ୍ତେ କରୁବଧ ।
ସ୍ଥିର ଗର୍ଭିଣୀଙ୍କି କେମନ୍ତେ ପୁଣ ଜିଣି
ଜୟଦୁର୍ଗା ବୋଇଲେ ନିଶ୍ଚୟ ମୁଁ ମାରିବି ।
ପୋତୁଅ ଛାଗଳ ସଙ୍ଗରେ ସରି ଯେ କରବେଗ
ଶୁଣିକରି ବେଦବର ପ୍ରସନ୍ନ ହୋଇଲେ
ପଶୁ ପୋକ୍ଷଣ ତାର ନାମରେ ଉଚ୍ଚାରିଲେ

× × ×

ବେଲ ପତ୍ର ପାଣି ଧରି କୁଶଧର
ମହିଷାସୁର ମୁଣ୍ଡକୁ ଛଡ଼ାଏ ଧାଡିକାର ।
ପୋତୁଅ ଛାଗଳ ସଙ୍ଗରେ ତାହାକୁ ସରିକଲା
ମନରେ ଅସୁରକୁ ଯେ ବଳିକରିଦେଲା ।
ବୋଇଲା ଦେବୀ ଏବେ କରନ୍ତୁ ଆହାର
ଶୁଣିଣ ଜୟଦୁର୍ଗା କହିଲେ ଉତ୍ତର ।
ମୋହର ପ୍ରାଣନାଥ ଅଟନ୍ତି ସଦାଶିବ
ସେ ବୋଇଲେ ମୁହିଁ ସିନା କରିବି ପ୍ରମାଦ ।
ଶୁଣିଣ ବେଦବର ମୋତେ ଯେ ସୁମରିଲା
ତତକ୍ଷଣେ ବିନୟ କଲି ମୁହିଁ ପରା ।
ମୋତେ ଦେଖି କୁଶପାଣି ବୋଇଲେ ବଚନ
ମହିଷାସୁର ଦୈତ୍ୟକୁ ବିଶୋଧନ ।
ମୁଁ ବୋଇଲି ବିଡ଼ମ୍ବନା ବର ଯେ ଦେଲତାକୁ
ସ୍ତିରୀ ପୁରୁଷ ହସ୍ତେ ନ ତୁଟେ ତାର ବପୁ ।
ସେ ବୋଇଲେ ତୁ ଯେବେ ତାକୁ କରିବୁ ନାଶ
ନିଶ୍ଚୟ ନାଶକଲେ ଦେବତା ତ୍ରିଦଶ ।

ତିନିପୁର ଚଉଦ ବ୍ରହ୍ମାଣ୍ଡ ଯିବ କ୍ଷୟ
ଏ କଥାକୁ ବିଚାର କର ଦେବରାୟ ।
ମୁଁ ବୋଇଲି ସ୍ତିରୀବିନା ନମରେ ପୁରୁଷ
ସେ ବୋଇଲେ ତୋତେ ମାରି ଉପମା ବିଶେଷ
ମୁଁ ବୋଇଲି ମୋର ନାରୀ ପାର୍ବତୀ ଅଟଇ
ପରମ ବଇଷ୍ଣବୀ କାହାକୁ ନ ମାରଇ ।
ଦୟାରେ ସୁଦୟା ତାର ଶାନ୍ତିରେ ଗଙ୍ଗାଜଳ
ଅତୁଟ ନାରୀବର ସତୀରେ ଅନର୍ଗଳ ।
କେବେ ହେଁ ପୁରୁଷ ଯେ ନକରଇ ହତ୍ୟା
ଏହିକଥା ବିଚାର କରହେ ବିଧାତା ।
ବେଦବର ବୋଲେ ତୋର ଅନେକ ଜାରିପୁଣ
ଯୋଗମାୟାକୁ କହିଲେ ମାରିବ ସେହିଜାଣ ।
ମୁଁ ବୋଇଲି ତାହାକୁ ତୁମ୍ଭେ ଏବେ କହ
ବେଦବର ବୋଇଲେ ତୋହର ଅଟେ ପ୍ରିୟ ।
ମୋରଠାରୁ ବଡ଼ ଯେ ଅଟଇ ଶ୍ରୀହରି
ସେହି କହିଲେ ତାର କଥା ନ ମାନିବେ ନାରୀ
ତୋତେ ପତି କରିଅଛି କାହାକୁ ତା ଡର
ତୁମ୍ଭେ ନ କହିଲେ ସେ ନମରେ ଅସୁର ।
ଶୁଣି ଦୁର୍ଗାକୁ ସୁମରଣା କଲ ମୋର ଆଗେ
ଉଭା ହେଲେ ଆସିଣ ସେହି ନାରୀ ଏବେ ।
ଓଳଗ ମେଲାଇ ମୋର ଚରଣେ ନମିଲା
କରଯୋଡ଼ି ମୋର ଆଗେ ସେ ନାରୀ କହିଲା ।
ମୁଁ ବୋଇଲି ଅସୁରକୁ କର ଗୋ ବିନାଶ
ନବଖଣ୍ଡ ମେଦିନୀ ଯେ ହେଉଛି ବିନାଶ ।
କାଳଯୁଗେ ତୋରକଥା ରହିଣ ଥାଉ ପୁଣ
ମହିଷାସୁର ଦୈତ୍ୟକୁ ମାଇଲେ ଦୁର୍ଗା ଜାଣ ।
ମହିଷାସୁର ମର୍ଦ୍ଦନ ହେଉ ନାମପରା
ତିନିପୁରେ ସେବା ତୋତେ କରନ୍ତୁ ହୋଇତ୍ୱରା
ଗ୍ରାମେ ଗ୍ରାମେ ରହି ତୁ ସର୍ବ ପୂଜା ପାଅ
ସମସ୍ତଙ୍କ ଶରୀରେ ବ୍ୟାପିଣ ରହି ଥାଅ ।
ଆଜଠାରୁ ତୋର ନାମ ସର୍ବ ଯେ ମଙ୍ଗଳା
ତୋହର ନାମ ଧଇଲେ ସଙ୍କଟ ଫିଟୁପରା ।
ଶଙ୍କଟ ତାରିଣୀ ସେ ଅଟଇ ତୋର ନାମ
ଦେବା ସୁର ନରେ ଜପନ୍ତି ତୋର ନାମ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦଶଦିଗପାଳ
ତୋର ନାମ ଧରିଲେ ନ ଘୋଟେ ଆସିକାଳ ।

ତୋର ନାମ ନଧରିଯେ ଦାଣ୍ଡରେ ପ୍ରବେଶ
ହିରଣ୍ୟ ବଳବନ୍ତ ନୋହିଲେ ବିଶେଷ ।
ଶୁଣିକରି ଦୂର୍ଗା ମନରେ ତୋଷ ହେଲେ
ଶୁଣ ହେ ପ୍ରାଣନାଥ ବୋଲିଣ ବୋଇଲେ ।
କେଉଁଠାରେ ନାରୀ ଯେ ପୁରୁଷ ହତ୍ୟାକରି
ସେ କଥା ଫିଟାଇ ମୋତେ କହ ଶୂଳଧାରୀ ।
ମୁଁ ବୋଇଲି ପ୍ରହ୍ଲାଦ କୁମର ଦୈତ୍ୟ ଜାଣ
ବୈଲୋଚନ ନାମ ଯେ ଅଟଇ ତାର ପୁଣ
ତିନିପୁର ଜିଣିଣ ଦେବଙ୍କୁ ସାଧ କଲା
ଦେଖିଣ ନାରାୟଣ ମନରେ ବିଚାରିଲା ।
ତାହାଙ୍କର ଘରଣୀ ଯେ ହୋଇଲା ବାସୁଦେବ
ସ୍ତିରୀ ହୋଇ ନାଶକଲା ସେହୁ ଦୈତ୍ୟ ରାଜ ।
ଶୁଣିଣ ଶାକମ୍ଭରୀ ବୋଇଲେ ମୋତେ ପୁଣ
ମୋହର ଶରୀରେ ତୁମ୍ଭେ ହୁଅ ଯେ ମେଳଣ ।
ଶୁଣିଣ ମୁହିଁ ତାକୁ ପ୍ରସନ୍ନରେ କହି
ଏକଅଙ୍ଗ ଗୋଟା ଶୁଣରେ ପ୍ରାଣସହୀ ।
ସେ ବୋଇଲେ ମୁଁ ଯେବେ ମାରିବି ଅସୁର
ସକଳ ଦେବତା ଘେନି ହୋଇବେ ଅନ୍ତର ।
ମୁଁ ବୋଇଲି ସେଥିର ଚରିତ ମୋତେ କହ
ସେ ବୋଇଲେ ଉଲଗ୍ନେ ମାରିବ ଦୈତ୍ୟପ୍ରିୟ
ଭବଦ୍ୱାର ଦେଖି ମୋର ବଶ ହେବ ସେହି
ଘରଣୀ କରିବାକୁ ଦୟା ଯେ ଭାବ ବହି ।
ସେତେବେଳେ ତ୍ରିଶୂଳ ମାରିବି ତାର ଅଙ୍ଗ
ପ୍ରାଣ ଛାଡି ଦୈତ୍ୟ ଯେ ପଡ଼ିଲା ମହିଭାଗ ।
ତାହାର ବଚନ ଶୁଣି ବୋଇଲି ବିଧାତାକୁ
ସମ୍ଭାଳ ଦେବଗଣ ଗୁପତ କରି ତାକୁ ।
ଶୁଣିଣ ବେଦବର ବେଗେ ଚଳିଗଲା
ସକଳ ଦେବଙ୍କୁ ନିଜ ଭୁବନେ ରଖାଇଲା ।
ସୁରଗଣଙ୍କୁ ଚାହିଁଣ ବୋଇଲା ଅଷ୍ଟ ଆଖି
ତଳକୁ ଚାହିଁଲେ ତୁମ୍ଭ ଚକ୍ଷୁ ଯିବ ଫୁଟି ।
ତଳପୁରେ ମୈଷା ସଙ୍ଗେ ଦୁର୍ଗା ରଣଗୋଳ
ଅତୁଟ ଅସୁରକୁ ମାରିବ କରି ଗୋଳ ।
ଉଗ୍ରମୂର୍ତ୍ତି ହୋଇ ଦେବୀ ମୋତେ ଆଜ୍ଞାଦେଲା
ଦେବତାଙ୍କୁ ମନା କରିବ ବୋଲିଣ ବୋଇଲା ।
ମର୍ତ୍ତ୍ୟପୁରକୁ ଦେବତା ନଚାହିଁବ ପୁଣ
ଚାହିଁଲେ ଚକ୍ଷୁଫୁଟି ଯିବଟି ନିଶ୍ଚେ ଜାଣ ।

ଶୁଣିକରି ସକଳ ଦେବ ଗୁପତ ହୋଇଲେ
ମନାକରି କୁଶପାଣି ନିଜସ୍ଥାନେ ଗଲେ ।
ମୋତେ ଜୟଦୁର୍ଗା କରଇ ଜଣାଣ
ଦିଅ ମୋତେ ତ୍ରିଶୂଳ ହୋଇଣ ପ୍ରସନ୍ନ ।
ଅକ୍ଷୟ ତ୍ରୋଣ ମୋତେ ଦିଅ ହେ ପ୍ରାଣନାଥ
ତେବେ ସିନା ଅସୁର ହୋଇବ ପ୍ରାଣେହତ ।
ଶୁଣିଣ ତ୍ରିଲୋଚନ ପ୍ରସନ୍ନ ତାକୁ ହେଲେ
ତ୍ରିଶୂଳ ଅକ୍ଷୟ ପୁଣ ସମର୍ପିଲେ ।
ମୋର ଚରଣ ତଳେ କରିଣ ବିନତି
ଆୟୁଧ ଧରିଣ ଯେ ହୋଇଲେ ଉଗ୍ରମୂର୍ତ୍ତି ।
ସିଂହପରେ ବସିଣ ବନ୍ଧ୍ୟଗିରି ଗଲା
ସକଳ ଦେବୀଙ୍କୁ ଯେ ଯାଇଣ କହିଲା ।
ନବକୋଟି ଦେବୀ ଯେ ହୋଇଲେ ବେଶ ପୁଣ
ପୁଣଖଣ୍ଡା ଖପର ଯେ ଧଇଲେ ହସ୍ତେ ପୁଣ ।
ଚୌଷଠି ଯୋଗିନ୍ନି ହୋଇଲେ ବେଶ ତ୍ୱରା
ତାଙ୍କ ସଙ୍ଗରେ ବାହନ ଶାଢୋଳ ରଖିପରା ।
ନବକୋଟି ପିଶାଚୁଣୀ ଯେ ଯାହା ବେଶହେଲେ
କଟାରୀ କମାଣ କରରେ ଧରିଲେ ।
ଦେଖିଣ ଜୟଦୁର୍ଗା ଯେ ସମସ୍ତଙ୍କୁ କହି
ମୈଷାସୁର ଦୈତ୍ୟ ଯେ ଆମ୍ଭଭୋଗ ହୋଇ ।
ନିଶୋଧନ କରିବେ ତାହାର ବଳ ପୁଣ
ତେବେ ସେ ସର୍ବଠାରେ ପୂଜା ଯେ ପାଇଣ ।
ଶୁଣିଣ ସକଳ ଦେବୀ ହରଷ ହୋଇଲେ
ରକ୍ତମାଂସ ଆମ୍ଭେ ଭୋଜନ କରିବା ବୋଇଲେ
ଜୟଦୁର୍ଗା ବୋଇଲେ ଗୁପ୍ତେ ତୁମ୍ଭେ ରହ
ମୋଠାରେ ଦୈତ୍ୟରାଜ କରି ଆଗ ସ୍ନେହ ।
ଦାସୀଙ୍କୁ ବୋଇଲେ କରାଅ ମୋତେ ବେଶ
ମୋର ବେଶ ଦେଖି ସର୍ବେ ହୋଇବେ ଉଲ୍ଲାସ
ଶୁଣିଣ ଦାସୀମାନେ ବେଶ ଯେ କଲେ ତାକୁ
ଚରଣେ ଅଳତା ଦେଇ ତ୍ରିଦଶ ମୋହିବାକୁ ।
ମାଣିକ୍ୟର ଅଳଙ୍କାର ଦୁଇକର୍ଣ୍ଣେ ଦେଲେ
ହିରାଲୀଳା ଟୋପି ଯେ ବିନ୍ଦୁ ବସାଇଲେ ।
ଅଙ୍ଗୁଷ୍ଠିମାନଙ୍କରେ ଚନ୍ଦ୍ର ଝୁଣ୍ଟିଆସାଜି
ଝୁଣ୍ଟିଆର ପରେ ମାଣିକ୍ୟ ପୁଞ୍ଜି ପୁଞ୍ଜି ।
ସେଇ ସଙ୍ଗେ ବଳା ଯେ ପାହୁଡ଼ ନୂପୁର
ଝଟକ ବିଜୁଳି ପ୍ରାଏ ତେଜ ଯେ ତାହାର ।

କଟିରେ ମେଖଳା ସଙ୍ଗରେ ଘଣ୍ଟ ପୁଣ
ଚାଲିଲେ ଶବଦ କରିବ ଗରୁଟାଣ ।
ଅଷ୍ଟରତ୍ନ ଜଡିତ ଦେହେ ଦେଲେ
ତିନିପୁରେ ମୋହର ତିନିପୁର ତେଜରେ ।
ସେଥିପରେ ଚନ୍ଦ୍ରହାର ସୂର୍ଯ୍ୟର ମଣିମାଳ
ପୋହଳା ମଣିମାନ ଦିଶଇ ଉଜ୍ଜ୍ୱଳ ।
ତାରପରେ ମୁନିଆ ମାଳ ଖଞ୍ଜି
ସକଳ ଦେବଙ୍କ ତେଜ ସେଥିରେ ବିରାଜି ।
ତଥିପରେ ଚାପସରୀ ଗଳାକୁ ପାପ ଶୋଭା
ବିଚାରି ରବିଚନ୍ଦ୍ର ସେଠାରେ ହେଲ ଉଭା ।
ରହଇ ଉପରେ ଯେହ୍ନେ ନୀଳରତ୍ନ ସାର
ତେଜରେ ଆଲୋକ ଯେ ଜଗତ ବିସ୍ତାର ।
ନାସାରେ ସିନ୍ଧୁଫଳ ସଙ୍ଗରେ ନୋଥ ଜାଣ
ଯାମ୍ବୁନଦ ସୁବର୍ଣ୍ଣ ସଙ୍ଗରେ ନୋଥ ପୁଣ ।
ଅଷ୍ଟରତ୍ନ ଗୁଣା ଯେ ନାସାରେ ଫୁଟେ ସାଜି
ଚନ୍ଦ୍ରଚକୋର ମୁଖକୁ ଦିଶିଲା କୋଟୀ ନିଧି ।
ବେନିପୁଡ଼ା ନାସାର ମଧରେ ଦଣ୍ଡିଗୁଣା
ଯେମନ୍ତ ସ୍ୱାମୀର ମସ୍ତକ ଦିଶେ ଜିଣା ।
ଶିରପରେ ଅଳକା ଯେ ନେତ ଦେଲେ ନେଇ
କୋଟିଏକ ରବି ପ୍ରବଳକଲେ ପୁଣି ।
ତାରପରେ ମଥାମଣି ଧାରା ଯେ ଅଛି ପୁଣ
ଜଗତକୁ ଜିଣିଣ ମୋହିଲା ତତ୍‌କ୍ଷଣ ।
କଜ୍ଜ୍ୱଳ ବର୍ଣ୍ଣ କେଶକୁ ଶାମାଳି ଯୁଡା ବାନ୍ଧି
କେରି କେରି ମୁକ୍ତା ତହିଁପରେ ଖଞ୍ଜି ।
ଯୋଡାପରେ ନାନାଛନ୍ଦରେ ବେଣିମାନ
ନାନାପୁଷ୍ପ ସେବତୀ କଲେକ ଭୂଷଣ ।
ଅଷ୍ଟରତ୍ନ ଜଡ଼ିତ ମୁକ୍ତା ଜାଲି ଦେଲେ
ଝୁମ୍ପିମାନ ସେଥିର ସଙ୍ଗେ ଲମ୍ବାଇଲେ ।
ଝରା କାଠି ଜରାମତୀ ଯୁଣବେଢ଼ାଇରା
ସ୍ୱର୍ଗର ତାରାମାନେ ସେଠାରେ ବସପରା ।
ନୟନ ଅଞ୍ଜନ ଜିଣିଲା ସାଗର
ସମସ୍ତଙ୍କର ସିନ୍ଦୁର ନିନ୍ଦିଲା ଦିବାକର ।
ବେନି ଭୃଲତାରେ ଅଞ୍ଜନ କଳା ଦେଲେ
ପିଛାଡ଼ିଲେ ମେଘମାଳ ପଡ଼ିବ ଆସି ହେଲେ ।
ଅମୃତ କୁଣ୍ଡଳ ଯେ କର୍ଣ୍ଣରେ ନେଇ ଦେଲେ
ଝର ଝର ଝରାମୃତ ପଡ଼ଇ ଝରି ତଳେ ।

ତାପରେ ଫିରି ଫିରା ଦେଲେ ନେଇକରି
ଶୂନ୍ୟରେ ନକ୍ଷତ୍ର ପ୍ରାୟେ ଉଦୟ ଅଛି ଘେରି ।
ତହିଁପରେ ଚନ୍ଦ୍ରଫାଶିଆ ଶୋଭାପାଏ
ନବରକୁ ପାଚେରୀ ଯେହ୍ନୁ ଘେରି ହେ ।
ଜକଜକ ଦିଶଇ ଜ୍ୟୋତିମୟୀ ତେଜ
ଯେଉଁ ତେଜେ ଦେହ ମୋର ହୋଇଲା ଧଇର୍ଯ୍ୟ
ତହିଁପରେ ମଲକଢ଼ୀ କର୍ଣ୍ଣରେ ଫୁଲସାଜେ ।
ତ୍ରୈଲୋକ୍ୟ ମୋହିଲା ପ୍ରାଏ ରୂପ ଭାବରାଜେ ।
ସ୍ଥାବର ଜଙ୍ଗମ ସରି କନ୍ଦର ସେ ଧରଣୀ
ଦେଖିକରି ସ୍ତମ୍ଭୀଭୂତ ହୋଇଲେ ଯେ ପୁଣି ।
ବିନ୍ଧ୍ୟଗିରି ଫୁଟି ହୋଇଲେ ବାହାର
ବସନ୍ତ ପବନ ଯେ ବହିଲା ଧୀର ଧୀର
ମଳୟ ଚନ୍ଦନ ଅଗରୁ କସ୍ତୁରୀ
ଦାସୀଗଣ ବୋଳି ହୋଇଣ ତମାଳି ।
ଅମଳାଣ ପତନୀ ଶାଢ଼ୀ ଦେବୀ ପିନ୍ଧି
ଇନ୍ଦ୍ର ଗୋବିନ୍ଦ ପତନୀ ଯେ ହାରାପରେ ବାନ୍ଧି
ଦର୍ପଣପନ୍ତୀ ଘେନିଆପଣାରୂପଦେଖି ଶୁଭ୍ରକେଶି
ବିଚାରିଲେ ଏ ରୂପକୁ ଭୋଗ କରନ୍ତି କାନ୍ତଆସି
ଏମନ୍ତ ହୃଦେ ବିଚାରି ମୋତେ ଚିନ୍ତାକରି
ତୋହର ପାଶରେ ମୁଁ ଜାଣିଲି ତଥ୍ୟକରି ।
ବୃକ୍ଷଭ ଚଢ଼ିଣ ଯେ ସେଠାବକୁ ଗଲି
କିମ୍ପାଇ ଚିନ୍ତାକଲ ବୋଲିଣ ବୋଇଲି ।
ନମସ୍କାର କରିଣ ବଚନ ମୋତେ କହି
ଏହିରୂପ ଗୋଟି ଆଜ ଭୋଗର ତୁହି ।
ଅନ୍ୟ ଛାର ଲୋକ ଦେଖିବ ଏଭୂଷଣ
ହରିଲାଇ ପାତକ ତାକୁ ଲାଗିଲାକ ପୁଣ ।
ସେରୂପ ଦେଖିଣ ଯେ ମୋହିତ ମୁହିଁଦେଲି
ତାହାର ସଙ୍ଗରେ ରମଣ ଭାବ କଲି ।
ତେବେ ତୃପତି ହୋଇଲା ଯେ ମନ
ମୋର ସଙ୍ଗରେ ଉପେକ୍ଷା କଲେ ପୁଣ ।
ସତେବାର ପରିଯନ୍ତେ ଚରଣେ ମୋ ନମିଲା
ଅସୁର ମଲେ ମୋପୁରେ ଆସିବ ବୋଇଲା ।
ମୁଁ ବୋଇଲି ଏବେ ସେ ଥିଲେ ଭଲ ହୋନ୍ତା
ତ୍ରୈଲୋକ୍ୟର ଶତେ ଯେ ସେଥିରେ କ୍ଷୟଯାନ୍ତା
ସେ ନାରୀ ବୋଇଲେ ଶୁଣ ପ୍ରାଣନାଥ
ଛଡାର ଫଳ ପ୍ରାଏ ହୋଇଲା ମୋ ଗାତ୍ର ।

ପୁଷ୍ପ ବାସନା ଯାକ ଭୋଗକଲେ ସ୍ୱାମୀ
ମଳିଣ ବେଶହେଲି ଦେଶ ରୂପଗାମୀ ।
ସେଠାରୁ ବୃଷଭ ବାହାନେ ଚଢ଼ି ମୁହିଁ
ବୋଇଲି ଅସୁରକୁ ମାରି ବେଗ ତୁହି ।
ସକଳ ଦେବତାଙ୍କର ଭୟ ହେଉ ତୋତେ
ବିଚାରିବେ ଗୁରସ୍ତ ଭାରିଜା ବଳବନ୍ତେ ।
ଦୁଇଜଣ କ୍ଷତ୍ରୀପଣ କଲେ ଦୈତ୍ୟ ସାର
ଆଗକରି ତ୍ରିପୁରାକୁ ବଧକଲେ ହର
ପଛେ ମୈଷାସୁରକୁ ମାରେ ତା ଘରଣୀ
ତେଣୁ ସେ ଠାକୁରଙ୍କୁ ଅଟନ୍ତି ଶିବ ପୁଣି ।
ଜୟଦୁର୍ଗା ବୋଇଲେ ଉଲଗ୍ନ ମୁଁ ଯେ ହେବି
ତେବେ ସେ ଅସୁରକୁ କ୍ଷୟ ଯେ କରିବି ।
ମୁଁ ବୋଇଲି ସେଥିରେ ବିରୋଧ ନାହିଁ କିଛି
ସେ କଥାକୁ କେବଳ ମୁଁ ଦେଖିବି ସଖି ।
ଏତେ କହି କପିଳାସ ଅଇଲି ମୁଁ ଯେ ଜାଣ
ଏଥୁ ଅନନ୍ତରେ ଭଗବତୀ ଶୁଣ ।
ମୋହନ ବେଶଧାରୀ ଯେ ବିଜୟେ ଠାକୁରାଣୀ
ମୈଷାସୁର ଦୂତ ଯେ ବୁଲୁଥିଲେ ପୁଣି ।
ବିନ୍ଧ୍ୟ ଶରୀରେ ଭେଟ ଯେ ପାଇଲେ ଜୟଦୁର୍ଗା
ବୋଇଲେ ଏଠାରେ କିମ୍ପା ବସିଅଛ ଶୋଭା ।
ଘରଦ୍ୱାର ନାହିଁକି ପତି ତୋର
ସ୍ୱାମୀର ନିମନ୍ତେ କି ବୁଲୁ ବନ ଘୋର ।
କେଉଁଠାରେ ନିବାସ କରିଅଛ ପୁଣି
ଜୟଦୁର୍ଗା ବୋଇଲେ ଶୁଣରେ ଅନୁଚର ।
ପିତା ମାତା ମୋହର ଅଟେ ଯେ ଗିରିବର
କାନ୍ତ ମୋର ଅଟଇ ଯେ ଭୋଳାମହେଶ୍ୱର ।
ପାର୍ବତୀ ସକାଶେ ମୋତେ ତେଜିଲା ଈଶ୍ୱର
ବୋଇଲା କାର୍ଯ୍ୟନାହିଁ ତୋହର ମୋହର ।
ଯାଅ ଗୋ ଦେବୀ ତୋତେ ଛାଡ଼ିଲଇଁ ।
ଦୂରାନ୍ତର ଭାଷା ଯେ ଶୁଣିଣ ତାଠାଇଁ ।
ବନସ୍ତରେ ବୁଲୁଅଛି ଗୁରସ୍ତ ଉତ୍ତୁରୀ
ଦୂତମାନେ ବୋଇଲେ ଆମ୍ଭର ବୋଲକରି
ତିନିପୁର ରାଜା ଯେ ଅଟଇ ମଂସାସୁର
\+ + +
ତାହାର ଘରଣୀ ହେଲେ ପାଇବୁ ବଡ଼ ସୁଖ
ତ୍ରୈଲୋକ୍ୟର ଠାକୁରାଣୀ ହୋଇବୁ ଯିବ ଦୁଃଖ

ଶୁଣିଣ ଯୋଗମାୟା ହସିଣ ତାକୁ କହି
ଯେବେ ସେ ତ୍ରୈଲୋକ୍ୟର ଠାକୁର ଅଟଇ ।
ତେବେ ମୁଁ ତାକୁ କରିବି ନିଶ୍ଚେ ବର
ମୋତେ ଯେବେ ବଳରେ ବଳିବ ମୈଷାସୁର ।
ଦୂତମାନେ ବୋଇଲେ କରିବୁ କି ରଣ
ପୁରୁଷଙ୍କ ସାଙ୍ଗରେ କାହିଁ ସ୍ତିରୀଙ୍କର ପ୍ରାଣ ।
ଜୟଦୁର୍ଗା ବୋଇଲେ ଶୁଣରେ ଅନୁଚର
ଶିବସଙ୍ଗେ ପାର୍ବତୀ କଲେ ଯେ ସମର ।
ଦକ୍ଷ ପ୍ରଜାପତି ଘରେ ଦନ୍ତା ହେଲା
ନିୟମ କରି ତାର ପିତାକୁ କହିଲା ।
ବୋଇଲା ଯାହାକୁ ମୁଁ ଚାହିଁବି ଦିଗପାଳେ
ମୋତେ ଚାହିଁଲେ ମୁଁ ବରିବି ମଣ୍ଡିରେ ।
ସକଳ ଦେବତା ଅଇଲେ ସେହିପୁର
ଚାହିଁକରି ମୋହରେ ପଡ଼ିଲେ ସକଳ ।
ଜଣେ ନ ରହିଣ ସର୍ବେ ପଳାଇଲେ
ଦେବସୁର ଅସୁର ରାଜା ବିଷ୍ଣୁ ଯେ ଅଇଲେ ।
ଚାହିଁଣ ସେମାନେ ମୋହିତ ହେଲେ ପୁଣ
ପଥ ନ ଦିଶିଲା ଗଲେ ପଳାଇଣ ।
ସମସ୍ତଙ୍କ ପଛରେ ଅଇଲେ ଶଙ୍କର
ଶଙ୍କରକୁ ଦେଖି ଦେବୀ କଲେ ଭୟଙ୍କର ।
ଡରସ୍ତ ଶଙ୍କର ଚାହିଁଲେ ତାକୁ ରହି
ତ୍ରିଲୋଚନର ହୃଦୟ ତାର ମୋହି ।
ଦେଖିଣ ଭଗବତୀ ମନରେ ତୋଷ ହେଲା
ଈଶ୍ୱରଙ୍କ ଗଳାରେ ମାଳାଲମ୍ବାଇଲା ।
ତେବେ ସେ ପାର୍ବତୀ ରଣରେ ଉତ୍ତନ
ହରଙ୍କୁ ବିଭାହୋଇ ପାଇଲେ କାରଣ ।
ବାସୁଦେବ ଅଟନ୍ତି ଯେ ସଂସାର କରତା
ସିନ୍ଧୁରୁ ଜାତ ହେଲା ଯେ ବରୁଣ ଦୁହିତା ।
ତେଜରେ ଆଲୋକ ହୋଇଲା ତିନିପୁର
ଦେଖିକରି ଦେବତାଏ ପଳାଇଲେ ଘର ।
ବେଦବର ଯେ ଦୟାକଲେ ପୁଣ
ବରୁଣର ପୁରକୁ ଦେଖିଗଲେ ଯାଣ ।
କାମ ବାଣ ରଣ ଯେ ସମ୍ଭାଳି ନ ପାରିଲେ
ହାରିଣ ପଳାଇ ସେ ଯେଝାସ୍ଥାନେ ଗଲେ ।

ବିଷ୍ଣୁଦେବ ଆସି ଦେଖିଲେକ ପୁଣ
ଜଗମୋହନ ବାଣ ବିନ୍ଧିଲେ ନାରାୟଣ ।
ତେବେ ସେ ହାରିଲା ଯେ ବରୁଣ ଦୁହିତା
ହରିଙ୍କି କହିଲା ସେ ବରୁଣ ଦୁହିତା ।
ବର୍ଣ୍ଣମାଳା ଅର୍ଘ୍ୟ ନେଇ ଦେଲା
ଶ୍ରୀହରିଙ୍କି ହରଷେ ସେହି ବିଭା ହେଲା ।
ଗାୟତ୍ରୀ ସାବିତ୍ରୀ ପ୍ରଜାପତିର ଦୁହିତ
କାଳେଣ ବର ତାକୁ ନୋହିଲେ ପ୍ରାପତ ।
ସକଳ ଦେବ ଆସି ଦେଖି ଫେରି ଗଲା
କାମଶର ବାଣ ଯାଉ ଅସର୍ବରେ ହେଲା ।
ଚାରି ମୁଖ ଆଠ ନୟନ ବ୍ରହ୍ମାଙ୍କର
ଦୀର୍ଘରୁ ଚାହିଁବାରୁ ହୋଇଲେ ସ୍ଥିର ସ୍ଥିର ।
ବରଣମାଳା ଦେଇ ବିଭା ଯେ ତାକୁ ହେଲେ
ରୋହିଣୀଙ୍କ ଦେବତା ସମସ୍ତେ ଭୟ କଲେ ।
ଚିତ୍ତ ତାର ପ୍ରକୃତିକୁ କଲେ ଯେ ଶୀତଳ
ସତେଇ କି ଭଗ୍ନି ଘେନି ବରିଲେ ଦେଇ ମାଳ
ରୋହିଣୀଙ୍କ ସଙ୍ଗରେ ସବୁ ଭଗ୍ନି ପୁଣ
ଚନ୍ଦ୍ରଦେବତାଙ୍କୁ ସେବା କଲ ଜାଣ ।
ଜଳନ୍ଧର ଭାରିଜା ଅଟନ୍ତି ବୃନ୍ଦାବତୀ
ନୟମ କରିଣ ସେ ହୋଇଥିଲା ସତୀ ।
କାଳେଣ ବାସୁଦେବ ତାଙ୍କୁ ମାୟା କଲେ
ବୃନ୍ଦାବତୀଙ୍କ ସଙ୍ଗେ ରତି ଆରମ୍ଭିଲେ ।
ରଣରେ ବାସୁଦେବ ହାରିଲେ ତାହାଙ୍କୁ
ଶିରରେ ବସାଇଲେ ସେ ନାରୀବରକୁ ।
ତୁମ୍ଭର ରାଜା ଯେବେ ମୋ ସଙ୍ଗେ କରି ରଣ
ସେବେ ସେ ମୋତେ ଦେବ ମୁଁ କଲି ସତ୍ୟପୁଣ
ଶୁଣିକରି ଦୂତମାନେ ବେଗେ ଚଳିଗଲେ
ଚକ୍ରକେଳି ପୁରରେ ଯାଇଣ ମିଳିଲେ ।
ଦେଖିଲେ ମୈଷାସୁର ବସିଛି ସିଂହାସନେ
ବାହାର ଜଗତୀ ଉପରେ ରାବନେ ।
ଚାର ଜଣାଇଲେ ଶୁଣିମା ହେଉ ଦେବ
ବନସ୍ତେ ବୁଲିବାକୁ ଯାଇଥିଲୁ ସର୍ବେ ।
ବିନ୍ଧ୍ୟଗିରି ନିକଟରେ ଦେଖିଲୁ ଏକ ନାରୀ
ତ୍ରିପୁର ମୋହିନୀ ସେ ଅଟଇ ସୁନ୍ଦରୀ ।
ବେଶ ହୋଇଣ ନାରୀ ବସିଅଛି ତହିଁ
ସେ ନାରୀକୁ ସେଠାବରେ ପଚାରିଲୁ ଯାଇ ।
ତୁମ୍ଭର ଗୁଣ ଗ୍ରାମ ସକଳ ଦହିଲୁ
ସେ ରାଜା ବିଭା ହୁଅ ବୋଲିଣ ବୋଇଲୁ ।
ଶୁଣିକରି ସୁନ୍ଦରୀ ବୋଇଲେ ବଚନ
ବୋଇଲେ ରଣରେ ମୋତେଯେ ବଳିବ ରାଜନ
ତେବେ ତାହାଙ୍କର ମୁଁ ହୋଇବି ଘରଣୀ
ନିର୍ବଳ ଦେଖି ମୋତେ ଯୋଗ୍ୟ ନୁହେଁ ପୁଣି
ଶୁଣିକରି ମୈଷାସୁର ବେଗେ ଚଳିଗଲା
ଛୟାଣଇ କ୍ଷୌଣୀ ବଳ ସଙ୍ଗେ ନେଲା ।
ବିନ୍ଧ୍ୟଗିରି ନିକଟରେ ହୋଇଲା ପ୍ରବେଶ
ଦେବୀଙ୍କି ନେତ୍ରରେ ଦେଖିଲା ବିଶେଷ ।
ଯାନପରୁ ଉତୁରି କୁମ୍ଭିକାର ସୁତ
ସୁନ୍ଦରୀ ପାଶରେ ହେଲେ ଉପସ୍ଥିତ
ବୋଇଲା ଗୋ ସୁନ୍ଦରୀ ଏଠାରେ କିମ୍ପା ବସୁ
ପୁରୁଷଙ୍କ ସଙ୍ଗରେ କିମ୍ପାଇ ନିମିଶୁ ।
ସ୍ତିରୀଙ୍କି ପୁରୁଷ ଅଟନ୍ତି ସିନା ଶୋଭା
ପୁରୁଷ ସଙ୍ଗରେ ଥିଲେ ସ୍ତିରୀଙ୍କୁ ଫୁଲ ଗଭା ।
ଜଗତ ମୋହୁଛି ତୋର ବେଶ ଅଳଙ୍କାର
ଦେଖିଲେ ଧଇର୍ଯ୍ୟ ଯେ ନ ରହଇ ମୋହର ।
ତିନିପୁରେ ରାଜନ ଅଟଇ ମୁଁ ଯେ ପୁଣ
ମୋତେ ବିଭା ହୋଇଲେ ଲଭିବୁ କାରଣ ।
ଶୁଣିକରି ଯୋଗମାୟା କହନ୍ତି ବଚନ
ଶୁଣହେ ମଉଡମଣି ତ୍ରୈଲୋକ୍ୟ ରାଜନ ।
ଏଗାର ବରଷ ହୋଇଲା ମୋତେ ଆସି
ବରପଣେ ଯୋଗ୍ୟ ମୋତେ ନୋହିଲେ କେହିଟି
ପ୍ରଥମେ ସଦାଶିବ ମୋତେ ଆସି କହି
ମୋହର ଠାକୁରାଣୀ ହୁଅଗୋ ଏବେ ତୁହି ।
ମୁଁ ବୋଇଲି ମୋରସଙ୍ଗେ ସମର ତୁଯେକର
ସମରେ ଜିଣିଲେ ମୁଁ ହୋଇବି ଘରଣୀ ତୋର
ଶୁଣିକରି ଈଶ୍ୱର ମୋ ସଙ୍ଗେ ରଣ କଲା
ସମରେ ହାରିଣ ନିଜସ୍ଥାନେ ଚଳିଗଲା ।
ବେଳକେ ଚତୁର୍ମୁଖ ବ୍ରହ୍ମା ଆସିଥିଲା
ସେ ରଣକରି ମୋ ଆଗେ ନ ରହିଲା ।
କାଳେ ସ୍ୱର୍ଗରୁ ରାଜା ଅଇଲେ ନେବ ବୋଲି
ରଣେ ନପାରି ଏବେ ଏଥୁଗଲା ଫେରି ।
ସେ ଯିବାରୁ ବାସୁଦେବ ଏଠାକୁ ଅଇଲା
ଅନେକ ଲାବଣ୍ୟ ଭାଷା ମୋତେ ସେ କହିଲା ।

ମୁଁ ବୋଇଲି ମୋର ନିୟମ ଅଛି ପୁଣ
ପିତାର ଆଗରେ ମୁଁ କରିଛି ସତ୍ୟ ଜାଣ ।
ଯେ ମୋତେ ଜିଣିବ ମୁଁ ତାକୁ ହେବି ବିଭା
ନିର୍ବଳ ଲୋକରେ ନାହିଁ ମୋର ଶ୍ରଦ୍ଧା ।
ଶୁଣିଣ ଚକ୍ରଧାରୀ ଶାରଙ୍ଗ ଧନୁଧରି
ମୋର ସଙ୍ଗେ ରଣ କଲେକ ରୋଷଧରି ।
ବେଳେଣ ବାସୁଦେବ ହାରି ପଳାଇଲେ
ନିର୍ବଳ ଲୋକକୁ ବିଭା ନୋହିବି ଭଲେ ।
ମୋତେ ନିର୍ବଳ ହେଲେ କେଉଁ କଥା ତହିଁ
ରତି ରଣରେ ସେହି ଯେ ମନକୁ ନ ରୁଚଇ ।
ବଳବନ୍ତ ପଣକୁ କେହି ନୁହେଁ ସରି
ଆଗହୁଁ ମନ ଯେବେ ପ୍ରସନ୍ନ ହୋଇ ପାରି ।
ପ୍ରଥମରେ ନିର୍ବଳ ନେତ୍ରରେ ଦେଖୁଥିବ
ପଛନ୍ତେ ଉଚ୍ଚ କଲେ କାହୁଁ ସେ ବଳିବ ।
ଏଥିର ସକାଶେ ଆଗେ ମୋହର ହୁଏ ରଣ
ତୁହି ଯେବେ ମୋତେ ହେ ଜିଣିପାର ରଣ ।
ତେବେ ମୋହର ସତ୍ୟ ହୋଇବି ତୋତେବିଭା
ନିର୍ବଳ ହୋଇଲେ ମୋତେ ନ ପାଇ ଶୋଭା
ମୌଷାସୁର ବୋଇଲା ଶୁଣ ଗୋ ଶୁଭ୍ରକେଶୀ
ସେମାନଙ୍କ କଥା ଯେ କହିଲୁ ପ୍ରଶଂସି ।
ସଦାଶିବ ଯୋଗରେ ହୋଇଛନ୍ତି ଭୋଳା
ତାହାର ଦେହରେ ଅଛଇ କି ବଳ ପରା ।
ବେଦବର ତିନିପୁର କରଇ ରଚନ
ଚିନ୍ତାରେ ଦେହ ତାର ହେଲା କ୍ଷୀନ ।
ବାସୁଦେବ ଶୟନରେ ବଳବପୁ ଗଲା
ଆହାର ଭୋଜନ ଯହୁଁ ତାହାର ନୋହିଲା ।
ସ୍ୱର୍ଗରେ ସୁର ରାଜା ଅଟନ୍ତି ଚିନ୍ତାର୍ଥି
ଅନୁକ୍ଷଣେ ରିପୁବଳ ତାହାର ହୁଏ ଧ୍ୱଂସି ।
ମୋର ସଙ୍ଗରେ ସମର ଯେବେ କରିବୁ ଆଜ
ମନୋରଥ ପୂର୍ଣ୍ଣ ହେବ ସଜ ହୁଅ ବେଗ ।
ଶୁଣିଣ ଯୋଗମାୟା ତ୍ରିଶୂଳ ଧରି ସଜ
ବୋଇଲେ ରାଜନରେ ଧର ତୁ ଆୟୁଧ ।
ଶୁଣିକରି ମୈଷାସୁର ଲୁହାର ଧନୁଧରି
ସେ ଧନୁରେ ଗୁଣଦେଇ ଟଙ୍କାର ନାଦକରି ।
ଦେଖିଣ ଜୟଦୁର୍ଗା ଅଜୟ ଧନୁଧରି
ସିଂହର ବଳବୀର୍ଯ୍ୟ ଯାଇଣ ସେହୁ କରି ।

ଅକ୍ଷୟ ଦ୍ରୋଣଙ୍କୁ ସୁମରି ଆମଞ୍ଚିଲେ
ଗୁଣ ଟଙ୍କାର କରି ଶବଦ ଗୁରୁକଲେ ।
ହସ୍ତକେ ତ୍ରିଶୂଳ ହସ୍ତକେ ଖପର
ଗଦା ମୁଦ୍‌ଗର ଧଇଲେ ବେନି କର ।
ଆର କରମାନଙ୍କରେ ଛୁରୀ ଖଣ୍ଡା ଧରି
ତ୍ରିଶୂଳ କାଳ କଟୂରୀ ଧଇଲେ ଦୃଢ଼ କରି ।
ଦଶଭୂଜ ଆୟୁଧ ଧରିଣ ଦେବୀ ଉଭା
ସିଂହରଉପରେ ଉଭା ପାଇଲେ ଦେବୀ ଶୋଭା
ଦେଖିଣ ମୈଷାସୁର ମନରେ ବିଚାରିଲା
ଏ ଦେବୀ ସମର କରିଥିବ ବଡ଼ ଭଲା ।
ଏତେ ବିଚାରି ଦୈତ୍ୟ ଆଦ୍ରାବଳି ଶର
ଗୁଣରେ ବସାଇ ସେ ପେଶିଲା ମହାବୀର ।
ବୋଇଲା ଏ ସ୍ତିରୀ ବଳକର ନାଶ
ସେମନ୍ତେ ଏ ସ୍ତିରୀଟି କରଇ ମୋତେ ଆଶ ।
ଏତେବୋଲି ଶରକୁ ଦେଲା ବେଗେ ଛାଡ଼ି
ଚଳିଲାକ ଶର ଯେ ଗର୍ଜନ ନାଦକରି ।
ଶର ଆସନ୍ତେ ଯେ ଦେଖିଲେ ଶାକମ୍ଭରୀ
ଭଇରବି ଶରକୁ ପେଶିଲେ ବେଗକରି
ଭଇରବି ଯାଇଣ ସେ ଶର ନାଶକଲା
ଦେଖିକରି ଅସୁର ନୀଳ ବାଣକୁପେଶିଲା ।
ନୀଳବାଣ ଆସନ୍ତେ ଦେଖିଲେ ସୁନ୍ଦରୀ
ଭୂଜବାଣ ପେଶିଣ ତାହାକୁ ନାଶପରି ।
ଦେଖିଣ ଅସୁର ଶତେକ ବାଣ ନାଶି ।
ଏକାଶରେ ଦେବୀ ସବୁ ଦେଲେ ନାଶି ।
ଦେଖିକରି ଅନୁଚର ସମେସ୍ତ ବାଣ ପେଶି
ଦୁଇଶରେ ଦେବୀ ତାହାକୁ ଦେଲେ ଧ୍ୱଂସି ।
ରକ୍ଷକ ବାଣ ଯେ ପେଶିଲା ମୈଷାସୁର
ଜୟଦୁର୍ଗା ନାଶକଲେ ତିନିବାଣେ ତାର ।
କୋଟିଏ ବାଣ ଯେ ବାନ୍ଧିଲା ଦେବରାଜ
ଚାରିଜଣ ନାଶ କଲେ ସୁନ୍ଦରୀ ଧଇର୍ଯ୍ୟ ।
ମର୍ଭୂତେକ ଶର ଯେ ଅସୁର ପେଶିଦେଲା
ପାଞ୍ଚ ଶରରେ ଦେବୀ ତାହାକୁ ଜାତ କଲା ।
ଖର୍ବେକ ଶର ଯେ ପେଶେ ଦୈତ୍ୟ ରାଣ
ଛଡ଼ ଶରରେ ଦେବୀ କଲେ ନିବାରଣ
ପଦ୍ମେକ ଶର ଯେ ଅସୁର କଲାକ ବୃଷ୍ଟି
କତୁରୀ ଶର ଧରି ଦେବୀ ପକାଏ ନାଶି ।

ମେଷାସୁର ଦେଖିଣ ମନରେ କ୍ରୋଧ ହେଲା
କୁହୁଡ଼ି ତାପ ଏ କରିଣ ଶର ବରଷିଲା ।
ଦେଖିଣ ଜୟଦୁର୍ଗା ଅବୁଜ ଶର କରି
ସବୁଶରମାନଙ୍କୁ ଛେଦଇ ଶାକମ୍ଭରୀ ।
ମାୟାରେ ଅସୁର ଯେ ଜଳ ବୃଷ୍ଟିକଲା
ପବନ ଶରରେ ତାହା ଦେବୀ ଉଡ଼ାଇଲା ।
ଦେଖି ମୈଷାସୁର ଯାମିନୀ ଘୋଟାଇଲା
ଜୟଦୁର୍ଗା ଦୃଷ୍ଟିରେ ଜାମିନୀ ତୁଟିଗଲା ।
ନିର୍ଦ୍ଧୁମ ଅନଳରେ ବରଷେ ଅସୁର
ଜଳଧାଶରରେ ନିବାରେ ନାରୀବର ।
ଦେଖିଣ ଅସୁର ଯେ ବଜ୍ର ଶର ମାରି
ବାଦଲ ଶରେ ତାହା ସୁନ୍ଦରୀ ନିବାରି ।
ଦେଖିଣ ଅସୁର ଯେ ଅସୁରାଶର କଲା
ନାରାୟଣ ଶରେ ତାହା ଦୁର୍ଗା ନିବାରିଲା ।
ଦେଖିଣ ମୈଷାସୁର କାଳ ଯେ ଶରମାରି
ବିକାଳ ଶରେ ତାକୁ ନାରୀ ଯେ ନିବାରି ।
ପନାଗଂ ଶରକୁ ବିନ୍ଧିଲେ ଦୈତ୍ୟବୀର
ଗରୁଡ଼ ଶରେ ନାରୀ କଲେକ ନିବାର ।
ଉଲକାପାତ ଶରକୁ ବିନ୍ଧିଲା ଅସୁର
ଧିରାବତୀ ଶରରେ ନିବାରେ ନାରୀବର ।
ଦେଖିକରି ଅସୁର ହୋଇଲା ମହାରାଗୀ
ଶବଦଭେଦି ଶରକୁ ବିନ୍ଧି ପରମାଦୀ ।
ଗର୍ଜନ ନାଦରେ ତିନିପୁର ଯେ କମ୍ପିଲା
ଦଲ ଦଲ ହୋଇ ଯେ ଧରଣୀ ନାଶ ଗଲା ।
ଦେଖିଣ ଜୟଦୁର୍ଗା ଲାବଣ୍ୟଶର ପେଶି
ଗର୍ଜନାଶରକୁ ସେ ପକାଇଲେ ନାଶି ।
ଶର ଆତଯାତରେ ରାତ୍ର ଦିବସ ବଣା
ଚନ୍ଦ୍ର ସୂର୍ଯ୍ୟ ଉଦୟ ଯେ ନୋହିଲେ କରୁଣା ।
ଦେଖିକରି ମୈଷାସୁର ବ୍ରହ୍ମଶର କଲା
ବ୍ରହ୍ମଶର ଜ୍ୱାଳାକୁ ମେଦିନୀ ଡରିଲା ।
ପାଶୁପତ ଶରକୁ ପେଷିଲେ ସୁନ୍ଦରୀ
ବୋଇଲେ ଏ ଶରକୁ ଧର ହେ ଯାଇକରି ।
ଦନ୍ତରେ ଧରିଣ ତୁଯେ ସୁବୁଙ୍କୁ ସଙ୍କୁଡ଼ି କରିବୁ
ଆରବେଳେ ଶର ଯେମନ୍ତେ ନ ଆସେ ବାବୁ
ଶୁଣିକରି ପଶୁପତ ସ୍ତିରୀ ରୂପ ହେଲା
ବ୍ରହ୍ମଶରକୁ ଯାଇ ସେ ଦନ୍ତରେ ଧଇଲା ।

ବ୍ରହ୍ମଶର ବୋଇଲେ କି କାର୍ଯ୍ୟ ପୁଣ
ଏତେ କହି ଶର ହେ ହୋଇଲା ନିଉନ ।
ଦନ୍ତରେ ଧରିତୀ ଦେବୀର ପାଶେ ଚଳି
ଦେଖିକରି ସୁନ୍ଦରୀ ତାହାକୁ ଦେଲା ଗାଳି ।
ବ୍ରହ୍ମଶର ବୋଇଲେ କିମ୍ପାଇ ମୋତେ ଶୋଧୁ
ଆଗେ ଦୋଷ ମୂଳ ତୁ ବିଧାତାକୁ ନିନ୍ଦୁ ।
ଜୟଦୁର୍ଗା ବୋଇଲେ ବେଗେ ଯେ ତୁହି ଚଳ
ବେଦବରଙ୍କ ଆଗେ ଯାଇଣ ବେଗେ ମିଳ ।
ଆରବେଳେ ନଆସିବୁ କହିଲି ତୋତେ ମୁହିଁ
ଅଇଲେ ଭସ୍ମ ହେବୁ ମୃତ୍ୟୁଦେଲି କହି ।
ଶୁଣିକରି ବ୍ରହ୍ମଶର ବେଗେ ଚଳିଗଲା
ଦେବୀ ମୋତେ ଗାଳିଦେଲା ବୋଲିଣ କହିଲା ।
ବେଦବର ବୋଇଲେ ସେ କଥା ମୋର ଭଲା
ସମସ୍ତଙ୍କୁ ମୈଷାସୁର ହୋଇଅଛି ସଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦୈତ୍ୟ ଜୟଦୁର୍ଗା ଲାଗିଅଛି କଳି ।
ଶ୍ରାବଣ ବରଷା ପ୍ରାୟେ ଅସୁର ଶର ବିନ୍ଧି
ଅଶ୍ୱମାଳ ଶର ଯେ ନ ପାରେ ପୁଣ ଭେଦି ।
ଜୟଦୁର୍ଗା ଅବଶ୍ୟ ଶରରେ ନିବାରି
ଦୁଇ ଭୁଜ ଯାଆ ଆସ କରଇ ତାହାରି ।
ଏମନ୍ତେ ସାତ ଦିନ ସାତ ରାତ୍ର ଗଲା
ଦୁଇ ଜଣ ଯୁଦ୍ଧକୁ ସମସ୍ତେ ଦେଖେ ପରା ।
ସ୍ତିରୀ ପୁରୁଷଙ୍କର ଲାଗିଛି ଯୁଦ୍ଧକଳି
କେତେବେଳେ କେଉଁଶର ଅସୁର ମାରେ ବଳି
ଯେତେ ଶର ଅସୁର ମାରଇ ପ୍ରତାପରେ
ଅନୁଜ ଶରେ ଶରେ ତାହା ଦୁର୍ଗା ନିବାରିଲେ
ଜୟଦୁର୍ଗା ଡାକଦେଲେ ଶୁଣରେ ଅସୁର
ଏହି ବାଣେ ଜିଣିଲୁ ତୁ ଜଗତ ସଂସାର ।
ନର ବାନର ଯେ ଦେବତା ଅସୁର
ସମସ୍ତଙ୍କ ଜିଣିବାରୁ ବୋଲାଉ ମହାବୀର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଙ୍କୁ ନିନ୍ଦାକଲୁ
ଏବେ ତୁହି ନିନ୍ଦାକରି ରଣରେ ହାରିଲୁ ।
ମୈଷାସୁର ବୋଲେ ନିଶ୍ଚେ ହରିବି ସୁନ୍ଦରୀ
ସୁନ୍ଦରୀ ହରିଲେ ତୁ ହୋଇବୁ ମନୋହାରୀ ।
ଜିଣିଲେ ମୋର ପ୍ରାଣ ନ ରଖିବି ମୁହିଁ
ଏହିକଥା ସତ୍ୟ ମୋର ଶୁଣ ଗୋ ମହାମାୟୀ

ଜୟଦୁର୍ଗା ବୋଇଲେ ଟାଣରେ କରଯୁଦ୍ଧ
ମୈଷାସୁର ବୋଇଲେ ଶୁଣରେ ନାରୀବୃନ୍ଦ ।
ଏତେବୋଲି କଙ୍କପକ୍ଷୀ ଶରକୁ ଦେଲେପେଶି
ଦଶଦିଗରୁ କ୍ଷୀଣ ଯେ ଶର ଆସେ ଘୋଟି ।
ଦେଖିଣ ସୁନ୍ଦରୀ ଯେ ପବନା ଶର ମାରି ।
ପକ୍ଷୀମାନେ ଦୂରୁଦେଖି ପଳାଇଲେ ଡରି ।
ଦେଖିଣ ମୈଷାସୁର କ୍ରୋଧରେ ଜର ଜର
କାଂଶିକା ଶରକୁ ଯେ ପେଶିଲେ ଧାତିକାର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଘୋଟିଣ ଆସେ ଶର
ଜିଭ ଲହ ଲହ ପାଟି ବିସ୍ତାର ତାର ।
ତିନିପୁର ଚଉଦ ବ୍ରହ୍ମାଣ୍ଡ ଦେବ ଗିଳି
ଦେଖିଣ ଜୟଦୁର୍ଗା ମନରେ ବିଚାରି ।
କାଳ କତୁରୀ ଶର ସେ ଧନୁରେ ବସାଇଲା
ବିନ୍ଧନ୍ତେ କତୁରୀ ଶର ଯେ ବେଗେ ଚଳିଗଲା ।
କାଂଶିକା ଶରକୁ ସେ କତୁରୀ କଲା
ଦେଖିକରି ଅସୁର କ୍ରୋଧରେ ଚାହିଁଲା ।
ଦେବ ନାଶନ ଶରକୁ ମାଇଲା ବେଗକରି
ଦେଖିଣ ଶାକମ୍ଭରୀ ନୀଳଚକ୍ର ଛାଡ଼ି ।
ଦେବ ନାଶନ ଶରକୁ ପକାଇଲା କାଟି
ଦେଖିକରି ଅସୁର ଯେ ହଲାଏ କିରଟୀ ।
ଦେଖିଣ ଯୋଗମାୟା ମନରେ କ୍ରୋଧହେଲେ
କିରଟୀ ମୋର ଆଗେ ହଲାଇ ବୋଇଲେ ।
ରୁଧିର ଖାଇବା ଶର ବସାଏ ଧନୁରେ
ମନ୍ତ୍ରପଢ଼ି ଦେବୀ ଯେ ଛାଡ଼ିଲେ ଧାତିକାରେ ।
ଦେଖିକରି ଅସୁର ଅନେକ ଶର କଲା
ଯେତେ ଶର ପେଶିଲା ନାଶି ନ ପାରିଲା ।
ଲଲାଟେ ଶର ଯାଇ ପଡ଼ିଲାକ ଜାଣ
ଫାଟିଲା ଲଲାଟେ ରୁଧିର ବହେ ଜାଣ ।
ଝର ଝର ରୁଧିର ମସ୍ତକରୁ ଗଳି
ଦେଖିଣ ଅସୁର ହୋଇଲା ପ୍ରଜ୍ୱଳି ।
ଗର୍ଜ୍ଜନ ମେଘପ୍ରାଏ କରଇ ଘୋର ରଡ଼ି
ମେରୁ ଗିରି ପର୍ବତ କି ପଡ଼ିବ ତଳେ ଝଡ଼ି ।
ଗର୍ଜ୍ଜନ ନାଦରେ ଦେବ ସ୍ୱର୍ଗପୁର ଡରି
ପାତାଳେ ନାଗ ଦେବତା ମନରେ ପୁଣି ଭାଳି
ନର ବାନର ସମସ୍ତେ ରହିଲେ ଚକିତରେ
ଦେଖିକରି ସୁନ୍ଦରୀ ବିଚାରେ ମନରେ ।

ସିଂହକୁ ବୋଇଲା ଦିଅରେ ତୁହି ରଡ଼ି
ଅସୁରମାନଙ୍କର ଧନୁ ପଡୁ ଝଡ଼ି ।
ଶୁଣିଣ ମୟ ମଡ଼ା ଗର୍ଜ୍ଜନ ରଡ଼ି ଦେଲା
ଅସୁରଙ୍କ ଧନୁ ଝଡ଼ି ତଳରେ ପଡ଼ିଲା ।
ଦେବତାଏ ସ୍ୱର୍ଗରେ ଶୁଣିଣ ତାଟକା
ପାତାଳେ ନାଗଲୋକ ହୋଇଲେ ଅଚେତା ।
କପିଳାସ କନ୍ଦରେ ତୋର କୁମାର ପୁଣ
ଖେଳ ରସେ ବିନୋଦ ହେଉଥିଲା ଜାଣ ।
ଖେଳ ଛାଡ଼ି ଦେବୀ ହେ ପଡ଼ିଲା ଧରଣୀ
ଉଠିକରି କୋଳ ମୋତେ କଲୁ ଗୋ କିମ୍ପାନି
ବେଦବର ଚମକି ପଡ଼ିଲାକ ମହୀ
ଗାୟତ୍ରୀ ସାବିତ୍ରୀ ପଡ଼ିଲେ ମୋହଁ ଯାଇ ।
ଅନନ୍ତ କି ଶେଯରୁ ଉଠିଲେ ନାରାୟଣ
କମଳାଙ୍କୁ ବୋଇଲେ କି ଶବଦ ପୁଣ ।
ସରସ୍ୱତୀ ବୋଇଲେ ଶୁଣିବା ଦେବରାଜ
ଅସୁର ସଙ୍ଗେ ଜୟଦୁର୍ଗା କରୁଛନ୍ତି ଯୁଦ୍ଧ ।
ଶ୍ରୀହରି ବୋଇଲେ ଦେଖିବା ଯୁଦ୍ଧ ତାର
ସରସ୍ୱତୀ ବୋଇଲେ ନୁହଇ ଯିବାର ।
ଦେବତାଏ କହିବାରୁ ଦେବୀ ଯୁଦ୍ଧ କରେ
ଦେବତାଙ୍କୁ ବୋଇଲା ତୁମ୍ଭେ ରହିବ ଗୁପ୍ତରେ
ଚାହିଁଲେ ନୟନ ଫୁଟିଯିବ ପୁଣ
ଶୁଣିକରି ଦେବତାଏ ଗଲେ ନିଜସ୍ଥାନ ।
ନାରାୟଣ ବୋଇଲେ ଏଥିରେ କଥା କହ
ସରସ୍ୱତୀ ବୋଇଲେ ଅତୁଟ ଅସୁର ଦେହ ।
ରାତ୍ର ଦିବସେ ଜଳ ପବନ ଅନଳେ
ନାଶ ହୋଇବ ସ୍ତିରୀ ପୁରୁଷ ହସ୍ତରେ ।
ଏଥିର ସକାଶରେ ଜୟଦୁର୍ଗା ପୁଣ
ଉଲଗ୍ନ ହୋଇଣ ସେ ମାରି ଦେବତା ଜାଣ ।
ପୁରୁଷ ଦେଖିଲେ ନୟନ ଫୁଟିଯିବ
ସ୍ତିରୀକୁ ସ୍ତିରୀ ଦେଖିଲେ ଦୋଷ ଯେ ନଥିବ
ଶୁଣିକରି ବାସୁଦେବ ବୋଇଲେକ ହସି
ଘୋର ରଡ଼ି ଦିଅଇ କିମ୍ପା ଶଶୀମୁଖି ।
ସରସ୍ୱତୀ ବୋଇଲେ ଚେତା ହୋଇ ବସବାସେ
ଭଇରବ ରଡ଼ି ସେ ଦେଲେକ ସନ୍ତୋଷେ ।
ସରସ୍ୱତୀ ନାରାୟଣ ପରମ ତୋଷ ହେଲେ
କମଳାଙ୍କୁ ଚାହିଁଣ ଶ୍ରୀହରି ବୋଇଲେ ।

ସରସ୍ୱତୀ ସଙ୍ଗେ ଘେନି ଯାଆ ଗୋ ବହନ
ଗରୁଡ଼ ପିଠିରେ ଥାଇ ଦେଖ ଗୋ ରଣ ପୁଣ
ଶୁଣିକରି କମଳା ଯେ ପରମ ତୋଷହେଲେ
ଗରୁଡ଼ ପିଠିରେ ସରସ୍ୱତୀଙ୍କି ଘେନିଣ ବସିଲେ
ବେଦବର ଜାଣି ଗାୟତ୍ରୀ ସାବିତ୍ରୀ
ପରମ ହଂସ ଚଢ଼ିଣ ଯାଇ ସେ ଦେଖନ୍ତି ।
ଐରାବତ ଚଢ଼ିଣ ସଚି ଦେଖେ ପୁଣ
ଦେବ ନାରୀମାନେ ଆସି ଦେଖନ୍ତି ଜାଣ ।
ନାଗ ଦେବତା ପତ୍ନୀ ଦେଖନ୍ତି ଜାଣ
ସିଂହର ଉପରେ ଚଢ଼ି ଦେଖିଗଲୁ ଜାଣ ।
ସପତଣୀ ଯୁଦ୍ଧ ଯାଇଣ ଦେଖିଲି
ବିକ୍ରମ ସିଂହ ପରି ଶୂନ୍ୟରେ ରହିଲି ।
ମୈଷାସୁର ଦେବର ସମର ଦେଖୁ ତୁହି
ଦଶ ଦିନ ରଣ ଯେ କଲେକ ମଧଭୂଇଁ ।
ପାର୍ବତୀ ବୋଇଲେ ଦେବ ସେଠାରୁ କିସହେଲା
ବହୁତ ଦିନ କଥା ମନେ ମୋ ନରହିଲା ।
ସିଂହପର ଗର୍ଜନ ଅସୁରଙ୍କର ରଡ଼ି
ତିନିପୁର ଯାକ ଏକ ଠାବ ହୋଇ ପଡ଼ି ।
ସେଠାରୁ କିସ ହେଲା କହ ଆଗେ ପୁଣ
ଶୁଣିଣ ସନ୍ତୋଷ ହୋଇବ ମୋର ମନ ।
ଶଙ୍କର ବୋଇଲେ ତୁମ୍ଭେ ଶୁଣ ଗୋ ଭଗବତୀ
ସକଳ ନାରୀ ଯେ ଶୂନ୍ୟରେ ଦେଖନ୍ତି ।
ସିଂହରଡ଼ି ଶୁଣିକରି ସକଳ ଦୈତ୍ୟବଳ
ସମସ୍ତଙ୍କ ହସ୍ତର ଧନୁ ପଡ଼େ ତଳ ।
ମୈଷାସୁର ବିଚାରିଲା ଅଟନ୍ତି ମାୟାନାରୀ
ମୋତେ ମାରିବ ବୋଲି ଆସିଛି ବିଚାରି ।
ଅନେକ ଯୁଦ୍ଧ ଏହି କରିବ ରଣ ରଙ୍ଗ
ଯାର ବାହାନ ରଡ଼ିରେ ସମସ୍ତେ ବିଭଙ୍ଗ ।
ଏମନ୍ତେ ବିଚାରି ମନେ ଅସୁର ରାଜନ
ଦୈତ୍ୟଙ୍କୁ ବୋଇଲା ମାରରେ ବେଢ଼ି ପୁଣ ।
ଶୁଣିକରି ଦୈତ୍ୟବଳ ପକାଇଲେ ଘେର
ଜୟଦୁର୍ଗା ଉପରକୁ ବିନ୍ଧିଲେକ ଶର ।
ବିନ୍ଧ୍ୟଗିରିଙ୍କୁ ଚାହିଁ ଡାକିଲେ ଜୟଦୁର୍ଗା ।
ଶୁଣିଣ ଦେବୀମାନେ ଗୁପ୍ତ କଲେ ତେଜ୍ୟା ।
ନବକୋଟି ଦେବୀ ଯେ ବାହାର ହୋଇଲେ
ସମସ୍ତେ ସିଂହ ଉପରେ ବିଜୟ କରି ଗଲେ ।
ମଙ୍ଗଳା ଶାରଳା ହେ ବିରୋଜା ବାସେଳି
କିମଚଣ୍ଡୀକୁ ଘେନି ପାଞ୍ଚ ଦେବୀ ମିଳି ।
ନବ କୋଟି ଦେବୀ ପାଞ୍ଚ ସରଦାର
ଜୟଦୁର୍ଗା ଚରଣେ କଲେ ନମସ୍କାର ।
ଜୟଦୁର୍ଗା ବୋଇଲେ ମୈଷାସୁର ସୌନକୁମାର
ସେମାନଙ୍କୁ ନାଶିଲେ ସଂସାର ହେବ ସ୍ଥିର ।
ଏହାଙ୍କୁ ମାରିଣ ତୁମେ ସ୍ୱର୍ଗ ପୁର ଚଳ
ଏହା ଶୁଣି ପାଞ୍ଚ ସରଧାର ହୋଇଲେ ଅନ୍ତରାଳ
ସୈନ୍ୟଙ୍କୁ ଆଜ୍ଞା ଦେଲେ ବେଢ଼ି କରି ମାର
ଖଙ୍କାଳି ବେତାଳି ରଡ଼ି କର ।
ମୈଷାସୁର ସୈନ୍ୟ ସବୁ ବେଢ଼ିଣ ମାରିଲେ
ଡାହାଣ ହସ୍ତେଖଣ୍ଡା ବାମହସ୍ତେ ଖପରଧରିଲେ
ଇନ୍ଦ୍ରଙ୍କୁ ମାରି ସେ ପିଇଲେ ରୁଧିର
ଏମନ୍ତେ ପାଞ୍ଚସେନା ବେଢ଼ି ମାର ।
ଜୟଦୁର୍ଗା ଆଗେ ଯାଇଁ ନମସ୍କାର କରି

× × ×

ଜୟଦୁର୍ଗା ବୋଇଲେ ସ୍ୱର୍ଗକୁ ତୁମେ ଯାଅ
ସେ ପୁରରେ ଅସୁର ନବସାଗର ପୁଅ ।
ନବସାଗର ବଳରେ ଶମ୍ଭୁ ନିଶମ୍ଭୁ ସରଦାର
ସ୍ୱର୍ଗରେ ରାଜା ହୋଇ ଅଛନ୍ତି ଦୁଇବୀର ।
ସୁର ରାଜା ତାଙ୍କର ଭୟେ ପଳାଇଲେ
ସବୁଙ୍କ ଘେନି ଯାଇ ମଧୁବନରେ ଲୁଚିଲେ ।
ସକଳ ଦେବତାଏ ହୋଇଲେ ଗୁପତ
ସେ ପୁରେ ବେହରଣ କରୁଛନ୍ତି ଦୈତ୍ୟ ।
ସେ ଦୁହିଙ୍କି ନାଶ କରି ଦୈତ୍ୟବଳ ମାର
ଶୁଣିଣ ବାସେଳି ଯେ ହୋଇଲା ଚଞ୍ଚଳ ।
ପାଞ୍ଚ ଗୋଟି ସରଦାର ନବକୋଟି ଚଣ୍ଡୀ
ହୁଙ୍କାର ଶବଦ କରି ସ୍ୱର୍ଗକୁ ଗଲେ ବେଗି ।
ଘଣ୍ଟିର ଘାଘୁଡ଼ି ଶୁଭଇ ରୁଣୁ ଝୁଣୁ
ଚାଙ୍ଗଡ଼ା ବାଦ୍ୟ ଆଗେ ବଜାନ୍ତି ଚଣ୍ଡୀଗଣ ।
ଧୁ ଧୁ ଧୁ ଧୁ ଫୁଙ୍କାର ଓଁ କାରର ବାଣୀ
ସିଂହମାନେ ରଡ଼ି ଦେଲେ ଚୋର ରବ ଶୁଣି ।
ନୈସାଗର ଅସୁର ରାଜାର ସଙ୍ଗେ ଥିଲେ
ସିଂହ ରଡ଼ି ଶୁଣିକରି ଚମକି ପଡ଼ିଲେ ।
ଶମ୍ଭୁ ନିଶମ୍ଭୁକୁ କହିଲେ ଦୈତ୍ୟବଳ
ତୋର ସଙ୍ଗେ ଯୁଦ୍ଧକରି ଅଇଲେ ଦୈତ୍ୟବଳ

ମର୍ତ୍ତ୍ୟପୁରେ ଜୟଦୁର୍ଗା ମୈଷାସୁର ସଙ୍ଗେ ରଣ
ନବକୋଟି ଦେବୀ ଯେ ସ୍ୱର୍ଗକୁ ଆସେ ପୁଣ ।
ଶୁଣିଣ ଶମ୍ଭୁ ନିଶମ୍ଭୁ ବେଗେ ସଜ ହେଲେ
ଲୁହା ରଥମାନଙ୍କରେ ଯାଇଣ ବସିଲେ ।
ଧନୁ କମୟାଣ ଧଇଲେ ହସ୍ତରେ
ଦୈତ୍ୟଙ୍କୁ ବୋଇଲେ ଦୈତ୍ୟଙ୍କୁ ମାର ବଳେ
ଶୁଣିଣ ଦୈତ୍ୟବଳ ଘୋର ରାବ କଲେ
ଦେବୀ ଗୋଟିକେ ଦଶଜଣ ଲେଖାଏଁ ଘେରିଲେ
ଶମ୍ଭୁ ନିଶମ୍ଭୁଙ୍କୁ ଆବୋରି ପଥେ ଦେବୀ
କଲେକ ରଣ ଗୋଳ ତହୁଁ ଦୈତ୍ୟଙ୍କୁ ରୁନ୍ଧି ।
ଦୈତ୍ୟଙ୍କର ଶର ଯେ କରନ୍ତି ନିବାରଣ
ଦେବୀମାନଙ୍କର ଶର ଦୈତ୍ୟ କରନ୍ତି ଛେଦନ
ଏମନ୍ତେ ସୁରପୁରେ ସତର ଦିନ ଯୁଦ୍ଧ
ଦଶଜଣ ଅସୁରକୁ ଦେବୀ କଲେ ବଧ ।
ନଉସାଗର ଦୈତ୍ୟ ପଡ଼ିଲେକ ରଣେ
ଦେଖିଣ ପାଞ୍ଚ ଦେବୀ ଆଜ୍ଞା ଦେଲେ ତେଣେ ।
ବୋଇଲେ ଅସୁରଙ୍କ ଘରଣୀ କର ନାଶ
ବାଳକ ବାଳିକାଙ୍କୁ ସବୁ କର ଶେଷ ।
ଶୁଣିଣ ଦେବୀଗଣ ବେଗେ ଚଳିଗଲେ
ଦୈତ୍ୟଙ୍କର ବାଳକ ବାଳିଙ୍କୁ ନାଶ କଲେ ।
ସପ୍ତଧାରା ରୁଧିର ନଦୀ ଯେ ଗଲେ ବହି
ଶୂନ୍ୟର ସିନ୍ଧୁରେ ଯାଇଣ ମିଶଇ ।
କୋଟି କବନ୍ଧ ନାଚନ୍ତି ସେ ନଦୀରେ
ଖେଚର କୋଟି କୋଟି ଲୀଳା ହରଷରେ ।
ସପ୍ତଧାରା ନଦୀ ବହିଲା ତିନିଦିନ
ଶମ୍ଭୁ ନିଶମ୍ଭୁ ସଙ୍ଗେ ଦେବୀ ପାଞ୍ଚଜଣ
ସତର ଦିନ ଯାଏ ରଣ ଯାଗ କଲେ
କେବେ ହେଁ ଅସୁରଙ୍କୁ ଜିଣି ନ ପାରିଲେ ।
ଦେଖିଣ ମଙ୍ଗଳା ଯେ ଧଇଲେ ତ୍ରିଶୂଳ
ଶମ୍ଭୁ ଯେ ନିଶମ୍ଭୁଙ୍କୁ ମାଡ଼ି ଯେ ବସିଲେ ବକ୍ଷସ୍ଥଳ
ଦେଖିକରି ବିରଜା ତ୍ରିଶୂଳ ଧରିଲା
ବେନି ଜାନୁରେ ତ୍ରିଶୂଳ ଲଗାଇ ଉଭାହେଲା
ତାହା ଦେଖି ହିଙ୍ଗୁଳା ଧଇଲେ କତୁରୀ
ମଳଦ୍ୱାର ଠାରୁ ଚିରେ ବେନି ଫାଳ କରି ।
ମସ୍ତକ ପର୍ଯ୍ୟନ୍ତ ଯେ ବେନିଫାଳ କଲେ
ତେବେ ସେ ଜୀବନ ଶୂନ୍ୟେଗଲା ।
ଦେଖିକରି ବାସେଳି କ୍ରୋଧରେ ଜର୍ଜର
ତ୍ରିଶୂଳ ଘେନି ଦେବୀ ହୋଇଲେ ବାହାର ।
ସିଂହ ଉପରେ ପାଦେ ପାଦେ ଲୁହା ରଥରେ
ତ୍ରିଶୂଳ ପାଇଲା ନାଭି ପେଟ ସଳଖେ ।
ମାଡ଼ି ବସନ୍ତେ ସେ ଦେବୀକି ବଳିଲା
ବିରଜା ଧାଇଁଣ ବେନିଗୋଡ଼କୁ ଧରି ଚିରିଦେଲା
ଦୁଇଫାଳ କରି ଦୈତ୍ୟ ହୃଦ ଚିରି
ଏକ ଅଙ୍ଗ ଗୋଟି ତାର ଦୁଇ ଅଙ୍ଗ କରି ।
ଶମ୍ଭୁ ନିଶମ୍ଭୁ ଯେ ହୋଇଲେ ସ୍ୱର୍ଗେ ହତ
ବାଳକ ବାଳିକା ଯେ ଅସୁରୁଣୀ ଅନେକ ।
ସମସ୍ତେ ମରିବାରୁ ସ୍ୱର୍ଗପୁର ଶୂନ୍ୟ ହେଲା
ଏଥୁ ଅନନ୍ତରେ ଶୁର ଗୋ ହିଙ୍ଗୁଳା ।
ସ୍ୱର୍ଗରେ ଦୈତ୍ୟବଳ ଚିହ୍ନ ନ ରହିଲେ
ଦୁନ୍ଦୁଭିର ଶବଦ ଯେ ସକଳ ଠାବ ହେଲେ ।
ସ୍ଥାନମାନ ଯେ ଯାହାର ପବିତ୍ର କରାଇଲେ
ବାରସ୍ୱତୀ ଭୁବନରେ ସୁରରାଜା ମିଳିଲେ ।
ବୃହସ୍ପତି ଡକାଇ ନିର୍ମଳ ସ୍ଥାନ କରି
ସିଂହାସନ ଉପରେ ବସିଲେ ଦଣ୍ଡଧାରୀ ।
ଚାରି ମେଘ ଡକାଇ ବରଷାଏ ଜଳ
ମଡା ରୁଧିର ସବୁ ହୋଇଲେ ଅନ୍ତର ।
ସ୍ୱର୍ଗପୁର ଗୋଟି ହେ ନିର୍ମଳ ହୋଇଗଲା
ଗଙ୍ଗାଙ୍କ ପ୍ରସାଦରେ ଦୁଗନ୍ଧହିଁ ଗଲା ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣଦେବ ଶୂଳି ।
ସ୍ୱର୍ଗପୁର କଥା ଯେ ଶୁଣିଲି ତଥ୍ୟକରି
ମର୍ତ୍ତ୍ୟପୁରେ ଦୁର୍ଗାସଙ୍ଗେ ମୈଷାସୁର କରେରଣ
କେ କାହାକୁ ଜିଣିଲେ କହ ହେ ତ୍ରିଲୋଚନ ।
ଈଶ୍ୱର ବୋଇଲେ ଶୁଣ ଗୋ ମହାମାୟୀ
ମୈଷାସୁର ସଙ୍ଗରେ ଜୟଦୁର୍ଗା ଯୁଝଇ ।
ଘୋରରଣ ଦେଖି ଦୈତ୍ୟବୀର ଯେ ଆଜ୍ଞାଦେଲା
ମାରରେ ବେଢ଼ିକରି ବୋଲିଣ ବୋଇଲା ।
ଶୁଣିକରି ଦୈତ୍ୟବଳ ହୋଇଲେକ ଠୁଳ
ବତିଶ ଲକ୍ଷ ସାଗର ଦୈତ୍ୟ ଘୋଟିଲେକ ବଳ
ଜମ୍ବୁଦ୍ୱୀପ ମଣ୍ଡଳି ହୋଇଲାକ ଛାଇ
ଉପରେ ତିଳ ବୁଣିଲେ ନ ପଡ଼ଇ ।
ଗିରି କନ୍ଦର ଲତା ଯେ ଖାଲ ପଦା ଲତା
ସେଠାରେ ଦୈତ୍ୟବଳ ହେଲେ ମାଏମାତା ।

ରଙ୍ଗ କଳା ଧଳା ଯେ ନୀଳକଇଁ ବସନ୍ତ
ପାଞ୍ଚ ବର୍ଣ୍ଣରେ ସ୍ଫୁଟ ଦିଶଇ ଭୂମି ମତ ।
ସମସ୍ତଙ୍କ ହସ୍ତେ ଗଦା ଛେଲ ଚକ୍ର ଜାଣ
ଛୁରି କଟାରି ଶାବେଳୀ ବରଛାଦି ପୁଣ ।
କାଣ୍ଡ କୋଦଣ୍ଡ ଯେ କମାୟଣ ଧରି
କରନ୍ତି ଗର୍ଜନ ଯେ ହୁଅନ୍ତି ଘେର ମେଳି ।
ମଦିରା ରସ ପାନେ ଭୋଳ ହେଲେ ଜାଣ
ନାଚିଣ ଡେଇଁଣ ସେ ମତ୍ତହେଲେ ପୁଣ ।
କେ ବୋଲଇ ଧର କେ ବୋଲଇ ମାର ତାଙ୍କୁ
କେ ବୋଲଇ ଘେନିଯିବା ରାଜାର ଘରକୁ ।
କେ ବୋଲଇ ରାଜାର ହୋଇବ ଘରଣୀ
କେ ବୋଲଇ ରାଜା ତାକୁ ରସିଛି ଏବେ ଜାଣି
ଏମନ୍ତେ କୁହା କୁହି ହେଲେ ଦୈତ୍ୟବଳ
ବତିଶ କ୍ଷଉଣି ବଳ ବାଜଇ ତାଙ୍କର ।
ଖେମଟୀ ନୃତ୍ୟ ରଙ୍ଗ କରନ୍ତି ଅସୁର
ବାଦ୍ୟର ଶବଦରେ ସ୍ୱର୍ଗ ମଞ୍ଚପୁର ।
ଦେଖିକରି ଜୟଦୁର୍ଗା ଦେବୀଙ୍କୁ ଡାକଦେଲେ
ମାର ଲୋ ଦୈତ୍ୟବଳ ବୋଲିଣ ବୋଇଲେ
କାଳିକା ବାସେଳି ମଣିନାଗ ଭଗବତୀ
ଅରୁଣାଇ ବରୁଣାଇ ଚଣ୍ଡିକା କପାଳିଟି ।
ବାମଚଣ୍ଡୀ ରାମଚଣ୍ଡୀ ଯେ କ୍ଷେତ୍ରପାଳ
ଚଉଷଠି ଯୋଗ୍ନୀ ହୋଇଲେ ବାହାର ।
ସମସ୍ତେ ଶାସ୍ତ୍ର ଧରି ଶାର୍ଦ୍ଦୁଳ ଉପର
ଗଦା ମୁଦ୍‌ଗର ଖଣ୍ଡ ଖପର ହସ୍ତର ।
ଭଇରବୀ ବେଶ ଧରି ପଶିଲେ ରଣ ଭୂଇଁ
ସମସ୍ତଙ୍କ ହସ୍ତରେ ଅନନ୍ତ ଦ୍ରୋଣ ଛାଇ ।
ହୁଙ୍କାର ଉଙ୍କାର ଶବଦ କଲେ ଟାଣ ।
ଘଣ୍ଟି ଘାଗୁଡ଼ି ଶବଦେ କମ୍ପଇ ଦିଗ ଜାଣ ।
ଶୋଭାପଣେ ଦେବୀ ଯେ ମୋହିଲେ ଦୈତ୍ୟବଳ
ଦେଖିକରି ଅସୁତ ହୋଇଲେ ଚମତ୍କାର ।
ବୋଇଲେ କରୁ ଯେ ଅନେକ ସ୍ତିରୀ ଜାତ
କେ ବୋଲଇ ଯୋଗମାୟା ଅଟଇ ଶମ୍ଭୁତ ।
କେ ବୋଲଇ ଦୈତ୍ୟବଳର ଘେନିବା ପରାଣ
କେ ବୋଲଇ ଭଲ ହେଲା ଆମ୍ଭକୁ ଭଲ ନାଶ
କେ ବୋଲଇ ଗୋଟିଏ ଗୋଟିଏ ଘେନିଯିବା
ସୁନ୍ଦରୀ ସ୍ତିରୀମାନଙ୍କୁ ଘରଣୀ କରିବା ।

କେ ବୋଲଇ ରଣ ହେବ କି ରଣ ଭଣ
କେ ବୋଲଇ ଘୁ ଘୁ ଶବଦ କରଇ ଟାଣ ।
ଏସନ ବିଚାରି ଯେ କରନ୍ତି ଦୈତ୍ୟବଳ
ଶୁଣି ଦୁର୍ଗା ଦେବୀ ମନେ କରନ୍ତି ବିଚାର ।
ଜୟଦୁର୍ଗା ବୋଇଲେ ଚାରିଚଣ୍ଡୀକି ବେଗେଚାହିଁ
ବାଉନ କୋଟି ପିଶାଚୁଣୀ ସଙ୍ଗରେ ଘେନିଯାଇ
ମୈଷାସୁର ସେ ନ୍ୟାଯାକ ସବୁଲୋ ନାଶ କର
ଏହାକୁ ମାରିଣ ଯିବ ଲୋ ତର ପୁର ।
ଶୁଣିକରି ଚାରି ଚଣ୍ଡୀ ବେଗେ ଚଳିଗଲେ
ବାଉନ କୋଟି ପିଶାଚୁଣୀ ଘେନିଣ ସଙ୍ଗରେ ।
ସମସ୍ତେ ଭୈରବୀ ବେଶରେ ଯାନ୍ତି ଚଳି
ଖଣ୍ଡା ଖର୍ପର ସମସ୍ତେ ହସ୍ତରେ ଛନ୍ତି ଧରି ।
ଶ୍ୱାନ ଶୃଗାଳ ଯେ ବାହନ ତାହାଙ୍କର
କେଶକଲେଗାର ଅଟେ ଭୟଙ୍କର ।
ନେତ୍ର କର୍ଣ୍ଣ ନେତ୍ର ମସ୍ତକେ କଳା ଚିହ୍ନ
ଜିହ୍ୱା ଲହ ଲହ ବୁଲାଉଛନ୍ତି ପୁଣ ।
ଗୋଚର ପ୍ରାଏକ ଯେ ହସନ୍ତି ଟହ ଟହ
ଭୟଙ୍କର ମୁର୍ତ୍ତି ଯେ ସମସ୍ତଙ୍କର ଦେହ ।
ହରଷରେ ଚାରି ଚଣ୍ଡୀ ସଙ୍ଗେ ଚଳିଗଲେ
ମୈଷାସୁର ସୈନ୍ୟବଳ ସବୁ ଯେ ଘୋଟିଲେ
ଦେଖିକରି ଦୈତ୍ୟବଳ ହେଲ ସବୁ ସଜ
ଭଇରବିଙ୍କ ସଙ୍ଗରେ ଆସି କଲେ ଯୁଦ୍ଧ ।
ଧନୁ କମାୟଣ କୋଦଣ୍ଡ କରେ ଧରି
ଗୁଣରେ ବସାଇ ଶର ବିନ୍ଧନ୍ତି ବେଗ କରି ।
ଶ୍ରାବଣ ବରଷା ଜାଣି ବରଷନ୍ତି ଶର
ଦେଖିକରି ପିଶାଚୁଣୀ ହସନ୍ତି କର କର ।
ଶରମାନ ଆସନ୍ତେ ଗର୍ଭକୁ କ୍ଷେପିଦେଲେ
ଅସୁରମାନଙ୍କୁ ହାଣି ବେନିଖଣ୍ଡ କଲେ ।
ଖପରରେ ରକ୍ତ ଧରି ପିଅନ୍ତି ପୁଣି
ଗଣ୍ଡିକୁ ରେକେଟି ମାଂସ ଖାଆନ୍ତି ଝୁଣି ।
ନଉସାଗର ଅସୁରକୁ ବାଉନ କୋଟି ପିଶାଚ
ସମସ୍ତଙ୍କୁ ମାରିଣ ସେହୁ କଲେ ନାଶ ।
ଗୋଟିଏ ନ ରଖିଲେ ସମସ୍ତଙ୍କୁ ମାରନ୍ତି
ମାରି ମାରି ଦୁର୍ଗା ଆଗରେ ଚଳନ୍ତି ।
ଜୟଦୁର୍ଗା ବୋଇଲେ ତୁମ୍ଭେ ତଳପୁରେ ଯାଅ
ସେଥିରେ ଅସୁରକୁ ମାରିଣ ତୁମ୍ଭେ ଖାଅ ।

ନିଷେଧ ନକରିଣ ଆସ ଗୋ ବେଗକରି
ହିରଣ୍ୟ ଗର୍ଭ ଭିତରକୁ ନଯିବ ଯୁଦ୍ଧକରି ।
ଗଲେ ଯଶ ନାହିଁଟି ଶୁଣିଣ ଥାଅ ତୁମ୍ଭେ
ସେ ପୁରେ ପଶିଲେ ବର୍ତ୍ତି ନ ଆସିବ ଏବେ
ଯେତେକ ନିର୍ବନ୍ଧ ନିକାଞ୍ଚନ ସ୍ଥାନ
ସେ ପାଶକୁ ନ ଯିବ କରିଲେଟି ପୁଣ ।
ନାଗବଳ ସିଦ୍ଧବଳ ଦେବତାଙ୍କ ଗୁପ୍ତସ୍ଥାନ
ଏମାନଙ୍କୁ ନଯିବ କହିଲି ପୁଣ ପ୍ରମାଣ ।
ତୁଳସେନ ଅକୁଳ ସେ ଏହି ଦୁଇ ରାଜା
ଏହାଙ୍କୁ ମାର ବେଗେ ଆଜି ସେ ପରଜା ।
ଶୁଣିକରି ସେହି ଦେଶେ ଚାରିଚଣ୍ଡି ଚଳିଗଲେ
ବାଉନ କୋଟି ପିଶାଚୁଣୀ ଘେନିଣ ସଙ୍ଗରେ
ହସରେ ସର୍ବେ ସେହି ବେଶଧରି ଚଳିଗଲେ
ପାତାଳ ପୁରେ ଯାଇ ପ୍ରବେଶ ହୋଇଲେ ।
ଦେଖିକରି କୁଳସେନ ଆକୁଳ ରାଜନ
ବୋଇଲେ ଭଇରବୀ ଅଇଲେ ଏହୁ ସ୍ଥାନ ।
ଅସୁରଙ୍କୁ ବୋଇଲେ ମାର ଯେ ଏହାଙ୍କୁ
ନୋହିଲେ ଏମାନେ ଭକ୍ଷିବେ ତୁମ୍ଭଙ୍କୁ ।
ଶୁଣିକରି ଦୈତ୍ୟବଳ ହେଲେ ବେଗେ ସଜ
ଭଇରବୀ ଶରଧରି ଆସିକଲେ ଯୁଦ୍ଧ ।
ଧନୁ କମାୟଣ ଯେ କୋଦଣ୍ଡ ଧନୁଧରି
ଗୁଣେ ବସାଇ ଶରକୁ ବିନ୍ଧିଲେ ବେଗକରି ।
ଆଷାଢ଼ ମେଘ ଜିଣି ବରଷନ୍ତି ଶର
ଦେଖିକରି ପିଶାଚୁଣୀ ହସନ୍ତି କର କର ।
ଶରମାନ ଆସନ୍ତେ ଧରି ସର୍ବ ଭକ୍ଷ ଦେଲେ
ଅସୁରମାନଙ୍କୁ ଧରି ବେନି ଖଣ୍ଡ କଲେ ।
ଖପରରେ ରକ୍ତ ଧରିଣ ପିଅନ୍ତି ପୁଣି
ଗଣ୍ଡିରୁକାଟି ମାଂସ ଖାଆନ୍ତି ସେହୁ ଝୁଣି ।
ନଉ କୋଟି ଅସୁରକୁ ବାଉନ କୋଟି ପିଚାଶ
ସତର ଦିନେ ମାରି ଖାଇ ତାଙ୍କୁ କଲେ ଶେଷ
ଦେଖିଣ କୁଳସେନ ଆକୁଳସେନ ରାଜ
ଲୁହାଭର ରଥ ଚଢ଼ ଧନୁଧରି ବେଗ ।
କରେ ଧନୁ ଧରିଣ ବିନ୍ଧନ୍ତି ତୀକ୍ଷ୍ଣଶର
ଅତୁଟ ଶରୀର ସେ ଦୁଇ ବୀରଙ୍କର ।
ଦେଖିଣ ପିଶାଚୁଣୀ ଅସମ୍ଭାଳ ହେଲେ
କାଣ୍ଡ ଲଗାନ୍ତେ ସମସ୍ତେ ଘାଉଆ ହୋଇଲେ ।
ଦେଖିଣ ଚାରି ଚଣ୍ଡି ସିଂହକୁ ଚାହିଁଲେ ।
କୁଳସେନ ଆକୁଳସେନ ଆଗର ଯାଇ ହେଲେ
ଦେଖିଣ ଅସୁର ରାଜ ଶର ବୃଷ୍ଟି କଲେ
ଚାରି ଚଣ୍ଡୀ ପୁଣି ରୂପ ପ୍ରକାଶିଲେ ।
ଲୁହା ରଥରେ ପାଦେ ସିଂହ ଉପରେ ପାଦେ
ତ୍ରିଶୂଳ ମାଇଲେ ଯେ ଦୁହିଁଙ୍କର ହୃଦେ ।
ପେଟ ପିଠି ପାଖେ ହେଲା ସେ ନିଜର ।
ଉଭା ନ ହୋଇଣ ଯେ ପଡ଼ିଲା ଦୈତ୍ୟବୀର ।
ପୁଣି ଚେତା ପାଇ ସେ ଚାହିଁଲେ ତରାଟି
ଦେବୀଙ୍କି ଘେନିଣ ସେ ଉଠିଲେ ପାଲଟି ।
ବୁଲିଲେ ପାତାଳପୁରେ ଦୁଇବୀର
ପଞ୍ଚମ ସାଗର ଯେ ପଞ୍ଚ ମିଳିଲା ସାର ।
ଯେତେବେଳେ ସେ ଯେ ଉଠିଲେ ଭରା ଦେଇ
ବୁକୁପରେ ଗୋଡ଼ ଲଦିଲେ ଚଣ୍ଡୀ ନେଇ ।
ଚଣ୍ଡୀକି ନେଇଣ ଯେ କରନ୍ତି ଭ୍ରମଣ
ଧବଳ ସାଗରଭିତରେ ମାଡ଼ି ବସିଲେ ଚଣ୍ଡୀଗଣ
ଜଳରେ ବୁଡ଼ାଇ ଦୁଇ ପାଦରେ ଚାପିଦେଲେ
ଶରୀର ତାଙ୍କର ଜଳ ହୋଇଣ ଗଲା ଭଲେ ।
ଶରୀର ଦଳି ହୁଅନ୍ତେ ହୋଇଲା ଧରଣୀ
ଆଠ ଲକ୍ଷ ଯୋଜନ ଯେ ଘୋଟିଲା ମେଦିନୀ ।
ଦେଖିଣ ଚାରି ଚଣ୍ଡୀ ସନ୍ତୋଷ ହୋଇଲେ
ସୁଜାଣ ବିଶ୍ୱକର୍ମାଙ୍କୁ ମନରେ ସୁମରିଲେ ।
କୋଟିଏ ବିନ୍ଧାଣିକୁ ଘେନି ବିଶ୍ୱକର୍ମା
ଚାରୀ ଚଣ୍ଡୀଙ୍କି ଓ଼ଳଗିଲେ ବ୍ରହ୍ମା ।
ରୂପ ବ୍ରହ୍ମା ବୋଇଲେ ଶୁଣ ଗୋ ଠାକୁରାଣୀ
କେଉଁ କାର୍ଯ୍ୟ ନିମନ୍ତେ ସୁମରିଲେ ପୁଣି ।
ଚଣ୍ଡୀ ଦେବୀ ବୋଇଲେ ଶୁଣ ହେ ରୂପ ବ୍ରହ୍ମା
କାଳ ସୁର ଅକାଳ ବୋଇଲା ଗାରିମା ।
ଗୁମାନୀସୁର ହେବାରୁ ତାକୁ ନାଶ କଲୁ
ତାଙ୍କର ମେଦ ମାଂସରେ ମେଦିନୀ ସ୍ଥାପିଲୁ ।
ଏହି ମେଦିନୀରେ କୁ ଯେ କରିବୁ ମନ୍ଦିର
ବାଉନ କୋଟି ମନ୍ଦିର ହୋଇବ ନିର୍ମାଣ ।
ହୀରା ନୀଳାମୋତି ଯେ ମାଣିକ୍ୟ ଅଷ୍ଟବର୍ଣ୍ଣେ
ଭିନ୍ନ ଭିନ୍ନ ମନ୍ଦିର ହୋଇଣ ଥିବ ତେଣେ ।
ଏଥିର ଶରଧାରେ ମନ୍ଦିର ଜଳେ ସଜାଡ଼ିବୁ
ଈଶ୍ୱରଙ୍କ ଠାରେ ତୁହି ପ୍ରଶଂସା ପାଇବୁ ।

ହୀରାର ଲକ୍ଷ ମନ୍ଦିର କରିବୁ ତିଆରି
ସେଥିରେ ବିଜେ କରିବୁ ଲକ୍ଷ ଦେବୀ ସାର ।
ସବୁପୁରେ ସଦାଶିବ କରିବେ ଆସି ଲୀଳା
ସେ ଆବର ସ୍ୱାମୀ ଆମ୍ଭେ ତାଙ୍କର ଦାସୀ ପରା
ଶୁଣିକରି ରୂପ ବ୍ରହ୍ମା ସନ୍ତୋଷ ହୋଇଲେ
ବାଆନ କୋଟି ମନ୍ଦିର ଅଷ୍ଟରତ୍ନେ କଲେ ।
ଲକ୍ଷ ମଣ୍ଡପ ହୀରା ନୀଳାରେ ପୁଣି କଲା
ଜଗତ ଅଟାଳୀ ସିଂହାସନ ଯେ ରଚିଲା ।
କୂପ ବାମ୍ପୀ ପୋଖରୀ ନଦୀ ସରୋବର
ଗଙ୍ଗା ଯମୁନା ହେଲେ ସେଥିରେ ତୀର୍ଥ ସାର
ଚାରିଗୋଟି ମନ୍ଦିର ବୈଡୁର୍ଯ୍ୟରେ କଲା
ସକଳ ନିର୍ଭା କରି ଚଣ୍ଡୀକି କହିଲା ।
ବିଶ୍ୱକର୍ମା ଆସିବାରୁ ଚଣ୍ଡୀ ବିଚାରିଲେ
ନିଶ୍ଚଳେ ବେଦବରଙ୍କୁ ସୁମରଣା କଲେ ।
ଶୁଣିକରି ବେଦବ୍ରହ୍ମା ଅଇଲେକ ଖର
ପରମ ହଂସ ଉପରେ ବିଜୟ କୁଶଧର ।
ଦେଖିଣ ସକଳ ଦେବୀ ନମସ୍କାର କଲେ
ଏପୁର ପବିତ୍ରକର ବୋଲିଣ ବୋଇଲେ ।
ଶୁଣିକରି ବେଦବର ତୀର୍ଥ ଜଳ ଆଣି
ଜୀବନ୍ୟାସ ଜଳ ସିଞ୍ଚିଲେ ତହିଁ ପୁଣି ।
ସକଳପୁର ଜୀବନ୍ୟାସ ସରି ବେଦବର
କରିଣ ଚଳିଲେ ଯଶୋବନ୍ତୀ ପୁର ।
ଏଥୁଅନନ୍ତରେ ଚାରି ଚଣ୍ଡୀ ପୁଣ
ମୋହେ ସୁମରଣା କଲେ ମନରେ ଧାଇଣ ।
ବୃଷଭ ଚଢ଼ିଣ ମୁଁ ଯେ ବେଗେ ଚଳିଗଲି
ନିର୍ମଳ ଜ୍ୟୋତି ପରେ ଯାଇଣ ମିଳିଲି ।
ଦେଖିକରି ମୋତେ ସର୍ବେ ସେବିଲେ ପୟର
ମୁଁ ବୋଇଲି କିମ୍ପା ମୋତେ ସୁମରଣା କର
ସେ ବୋଇଲେ ଆମ୍ଭର ଅଟ ତୁମ୍ଭେ ନାଥ
ରତି ଲୀଳା ଆମ୍ଭ ସଙ୍ଗେ କର ହେ ତୁରିତ ।
ଏପୁରମାନଙ୍କୁ ଆମ୍ଭଙ୍କୁ ବାଣ୍ଟି ଦିଅ
କାମର ଜ୍ୱାଳା ଆମ ଅଙ୍ଗରୁ ହରି ନିଅ ।
ଶୁଣିକରି ତାଙ୍କ ବାଣୀ ସନ୍ତୋଷ ଆମ୍ଭେ ହେଲୁ
ବାଆନ କୋଟି ମନ୍ଦିର ବାଣ୍ଟିକରି ଦେଲୁ ।
ମନ୍ଦିରର ଭିତରେ ରଖାଇ ତାହାଙ୍କୁ
ବୋଇଲେ ନିର୍ମଳ ଶଉଚ ହୁଅ ଗୋ ମନକୁ ।

ଜାହ୍ନବୀ କଲେ ଯାଇ ସମସ୍ତେ ସ୍ନାନକର
ପୁରୁଷ ହତ୍ୟା ଦୋଷ ପାତକ ବେଗ ହର ।
ମର୍ଦ୍ଦନ ମାଜଣା ହୋଇ ହୁଅ ବେଶ
ଗନ୍ଧ ଚନ୍ଦନ ବୋଳିଲେ ଦେହରୁ ଯିବ ପ୍ରାସ
ଆୟ ଅଳଙ୍କାର ଫୁଲ ସେ ଚନ୍ଦନ
ଭୂଷଣ ହେଲେ ଆମ୍ଭେ କରିବୁ ଗମନ ।
ଖଟ ଦୋଳି ବାଙ୍କିଆ ଶେଯ ଯେ ସୁପାତୀ
ମନ୍ଦିରମାନ ମଣ୍ଡିଣ କର ଯାଇ ଧାତୀ ।
ଆମୋଦ ଆସ୍ୱାଦନ ସୁବାସ ଶୁଚିବନ୍ତ
ସୁନ୍ଦର ପଣେ ତୁମ୍ଭେ ହୋଇବ ସୁଜାତ ।
ଅମୃତ ପାନକଲେ ଶରୀର ସୁସ୍ଥ ହୋଇ
ଶକ୍ତି ଲଭିବ ଯେ ଆମ୍ଭର ଅଙ୍ଗ ଛୁଇଁ ।
ଶୁଣିଣ ସକଳ ଦେବୀ ସ୍ନାନ କରାଇଲେ
ମର୍ଦ୍ଦନ ମାଜଣା ହୋଇ ସୁବେଶ ହୋଇଲେ ।
ଭୂଷଣ ହେବାରୁ ସେ ରୂପ ପାଲୋଟିଲେ
ଅଗରୁ ଚନ୍ଦନରେ ଶରୀର ଯତ୍ନ କଲେ ।
ଇନ୍ଦ୍ରକୁ ସୁମରଣା ସକଳ ନାରୀ କର
ଅମୃତ ଆଣିଦେଲେ ସ୍ୱର୍ଗର ବିଦ୍ୟାଧର ।
ଅମୃତପାନେ ତାଙ୍କର ମନ ଯେ ସନ୍ତୋଷ
ନିର୍ମଳ ଶଉଚ ହେଲେ ସକଳ ନାରିଅଂଶ ।
ଭୟଙ୍କର ରପୂଦୂର ହୋଇଲା ପୁଣ
ଦୁଷ୍ଟ ବୁଦ୍ଧି ଛାଡ଼ିଣ ଭଜିଲେ ଶାନ୍ତି ଜାଣ ।
ଖଟଦୋଳି ବାଙ୍କିଆ ଉପରେ ବସିଲେ
ଅଜପା ମନ୍ତ୍ରରେ ମୋ ନାମ ସୁମରିଲେ ।
ମଦନ ଜ୍ୱାଳା ତାଙ୍କୁ କଲାକ ବଡ଼ ପୀଡ଼ା
ଆରତରେ ଡାକିଲେ ରଖ ବାରେ ଭୋଳା ।
ବିକଳ ଜାଣି ତାଙ୍କର ମୁହିଁପୁଣି
ବାଆନ କୋଟି ରୂପ ପ୍ରକାଶ କଲି ଜାଣି ।
ଗୋଟିଏ ନାରୀରେ ଗୋଟିଏ ରୂପ ଦେଲି
ରତିରସ କରିବାରୁ ଶାନ୍ତି ନାରୀହେଲି ।
ଛାୟାରୂପମାନଙ୍କୁ ରଖିଲେ ସେ ଯେ ଦୁଃଖ
ନିଶ୍ଚଳ ହୋଇ ରୂପ ରହିଲ ତାଙ୍କ ପାଶ ।
ସେଠାରୁ କପିଳାସ ଅଇଲି ମୁହିଁ ଚଳି
ମହାବୃଷଭ ଉପରେ ମୁଁ ବିଜୟ କରି ।
ସେହି ରୂପରେ ମୁହିଁରହିଲି ନିଶ୍ଚିନ୍ତେଣ
ଶୁଣିକରି ପାର୍ବତୀ ହେଲେ ତୋଷ ମନ ।

ବୋଇଲେ ପିଶାଚୁଣୀ ପାତାଳେ ଯୁଦ୍ଧକଲେ
ଅସୁର ମୁର୍ଦ୍ଧନୀ ଧରଣୀ ରଞ୍ଜିଲେ ।
ବାଆନ କୋଟି ସେଥିରେ ନିଶ୍ଚଳ
ଚାରି ଚଣ୍ଡୀ ତହିଁରେ ହେଲେ ସରଦାର ।
ଅଷ୍ଟରତ୍ନେ ପୁରେ ସେ ବିଳସିଲେ ପୁଣ
ମନଇଚ୍ଛାରେ ସ୍ୱାମୀ ଲଭିଲେ ତୋତେ ଜାଣ
ତଳପୁରେ ସେ ଯେ ନିଶ୍ଚିନ୍ତ ରହିଲେ
ସପ୍ତ ପୁରକୁ ପୁଣି ଯାଆନ୍ତିଟିକି ଭଲେ ।
ଈଶ୍ୱର ବୋଇଲେ ମନଇଚ୍ଛା କଲେ
ଭ୍ରମଣ କରନ୍ତି ସେ ସପ୍ତ ପୁରରେ ।
ମନା ନାହିଁ ତାଙ୍କୁ କୌଣସି ପୁର
ଯେଣୁ ଯେ ମୋରଅଙ୍ଗେ ଲଭିଲେ ଦେବୀ ଜାଣ
ଦେବଙ୍କୁ ଉପକାର ରାଜ୍ୟରେ କାରେଣୀ
ତାଙ୍କଠାରେ ସୁଖ ଯେ ସମସ୍ତଙ୍କର ପୁଣି ।
ପାର୍ବତୀ ବୋଇଲେ ସ୍ୱର୍ଗକୁ ଦେବୀ ଗଲେ
ଶମ୍ଭୁ ନିଶମ୍ଭୁ ବୀର ଦୁହିଁଙ୍କୁ ମାଇଲେ ।
ନଉସାଗର ଅସୁର ପକାଇଲେ ଦଳି
ନବକୋଟି ଦେବୀ ଯେ ସେଥିରେ ବିଜେକରି ।
ପାଞ୍ଚଚଣ୍ଡୀ ସେଥିରେ ଅଟନ୍ତି ସର୍ଦ୍ଦାର
ଅସୁର ରାଜାଙ୍କୁ ସେ ମାଇଲେ ସର୍ଜାର ।
ସେ ଅସୁର ମୁର୍ଦ୍ଧନୀକି କିସ କଲେ ପୁଣ
ସେ କଥା ମୋର ଆଗେ କହ ହେ ଈଶାନ ।
ଈଶ୍ୱର ବୋଇଲେ ଶୁଣ ହେ ଭଗବତୀ
ଶମ୍ଭୁ ନିଶମ୍ଭୁ ହୋଇଥିଲେ ସ୍ୱର୍ଗରେ ନୃପତି ।
ନଉସାଗର ଅସୁର ସେଥି ରୁଣ୍ଡ ହୋଇ
ଦେବତାମାନଙ୍କୁ ସ୍ୱର୍ଗରୁ କାଢ଼ି ଦେଇ ।
ଦେବତାଙ୍କ ଘରେ ଯେ ରହିଲେ ଦୈତ୍ୟବଳ
ଦୈତ୍ୟରାଜା ଗଲେ ବାରସ୍ୱତୀ ପୁର ।
ଦୈତ୍ୟବଳ ମାରିବାରୁ ଦେବ ସ୍ୱର୍ଗକୁ ଅଇଲେ
ଯେ ଯାହା ମନ୍ଦିରେ ଯାଇଣ ରହିଲେ ।
ବାରସ୍ୱତୀ ଭୂବନରେ ରହିଲେ ସୁରରାଜା
ଅସୁରବଳ ଯହୁଁ ସ୍ୱର୍ଗକୁ କଲେ ତେଜ୍ୟା ।
ଶମ୍ଭୁ ନିଶମ୍ଭୁ ଯେ ମାଇଲେ କାମଚଣ୍ଡୀ
ଦଳିଲେ କ୍ରୋଧ ହୋଇ ତାହାର ମୁର୍ଦ୍ଧନି ଖଣ୍ଡି
ମର୍ଦ୍ଧୁନି ନେଇଣ ବେଗେ ଚଳିଗଲେ
ରୁଧିର ସମୁଦ୍ରରେ ନେଇଣ ପକାଇଲେ ।

ଦୁଇ ଅସୁର ନିର୍ଦ୍ଧନି ଅଟଇ ବିସ୍ତାର
ଦଶଲକ୍ଷ ଯୁଣ ମେଦିନୀ ହେଲା ସାର ।
ରୁଧିର ସାଗର ମଧ୍ୟରେ ମେଦିନୀ
ରୁଧିର ଦ୍ୱୀପ ବୋଲି ତା ନାମ ଦେଲେ ପୁଣି ।
ବିସ୍ତାର ସେ ଦ୍ୱୀପ ଦେଖି ଚଣ୍ଡୀ ବିଚାରିଲେ
ଏ ଦ୍ୱୀପ ଆମ୍ଭର ଯେ ବୋଲିଣ ବୋଇଲେ ।
ବିଶ୍ୱକର୍ମାକୁ ମନରେ ସୁମରଣା କଲେ
ଜାଣିକରି ବିଶ୍ୱକର୍ମା ସେଠାରେ ମିଳିଲେ ।
ଦେବୀ ବୋଇଲେ ତୁମ୍ଭେ ଶୁଣ ରୂପବ୍ରହ୍ମା
ଅଷ୍ଟରତ୍ନେ ସଜାଡ଼ିଲେ ଏହୁ ସୀମା ।
ନବଲକ୍ଷ ମନ୍ଦିର ଏଥିରେ ବେଗେ କର
ଅଷ୍ଟରତ୍ନ ଜଡ଼ିତ କର ପୁର ସାର ।
ପାଞ୍ଚ ସରଦାର ସେ ହୋଇବେ ଘର

× × ×

ଶୁଣିକରି ବିଶ୍ୱକର୍ମା ଯେ ବେଗେ ଚଳିଗଲା
ନବକୋଟି ଭୂବନକୁ ସେଥିରେ ରଚିଲା ।
ମାଣିକ୍ୟର ପୁରେ ପାଞ୍ଚଗୋଟି ବିଭାକଲା
ଦେବୀଙ୍କ ଆଗରେ କହି ନିଜ ସ୍ଥାନ ଗଲା ।
ବେଦବରକୁ ସୁମରଣା କଲେ ଦେବୀ ପୁଣ
ତତକ୍ଷଣେ ବେଦବର ମିଳିଲେ ସେହୁ ସ୍ଥାନ
ଧବଳ ହଂସ ପାରେ ବିନୟକଲେ ଧାତା
ସକଳ ଦେବୀ ନମି କହନ୍ତି ବାରତା ।
ବୋଇଲେ ପୁରକୁ ପବିତ୍ର ବେଶ କର
ନବକୋଟି ଦେବୀ ଆମ୍ଭେ ରହିବୁ ଏଥିର
ଶୁଣିକରି କୁଶପାଣି ବେଗେ ଚଳିଗଲେ
ନବକୋଟି ମନ୍ଦିର ସେ ଜୀବନ୍ୟାସ କଲେ ।
ସେଥି ହୋମ କରିଣ ପବିତ୍ର କଲେ ପୁଣ
ଘରେ ଘରେ ରତ୍ନ ରାଏ ରଖିଲେ ଯତନ ।
ଦେବୀଙ୍କି ଚାହିଁଣ କୁଶପାଣି କହି
ନବକୋଟି ଭୂବନ ପବିତ୍ର କଲି ମୁହିଁ ।
ବେନି କୋଟି କୂପ ଯେ ବାମ୍ପୀ ପୁଷ୍କରିଣୀ
ନଦୀ ସରୋବର କୃଷ୍ଣ ବେଣୀ ପୁଣି ।
ଦେବୀ ଯେ ଜନନୀ ଏ ମାନ ପୁଣଆ
ସମସ୍ତଙ୍କୁ ବିଭାକରି ଅଇଲି ମୁଁ ଜାଣ ।
ଏତେ କହି ବିଦାତା ଯେ ନିଜପୁର ଗଲେ
ସକଳ ଦେବୀ ଯାଇ ଗଙ୍ଗାରେ ସ୍ନାନ କଲେ ।

ଆପଣାର ଅଙ୍ଗମାନ କଲେକ ପବିତ୍ର
ମନ୍ଦିର ମାନଙ୍କରେ ରହିଲେ ଯାଇ ଲୋକ ।
ଗୋଟିଏ ନଗ୍ରରେ କୋଟିଏ ଦେବୀ ରହି
ମଧ୍ୟରେ ପାଞ୍ଚ ଦେବ ରହିଲେକ ଯାଇ ।
ସକଳ ଦେବୀ ସେଥିରେ ବସିଲେ ନିଶ୍ଚଳେ
ଭୁବନେଶ୍ୱରୀ ମନ୍ତ୍ର ପଢ଼ିଲେ ମନରେ ।
ସୁମରଣା କରନ୍ତେ ଏଠାରୁ ମୁଁ ଗଲି
ବୃଷଭ ଉପରେ ଚଢ଼ି ଗମନ ମୁଁ ଯେ କଲି ।
ଦେଖିଣ ଦେବୀ ମୋର ଚରଣେ ଓଳଗିଲେ
ସୁଦୟା କରବୋଲି ବୋଲିଣ ବୋଇଲେ ।
ତୁମ୍ଭେ ଯେ ପ୍ରାଣ ଅଟ ଈଶ୍ୱର
ପଞ୍ଚଶର ବାଣରୁ ଉଦ୍ଧାର ଏବେ କରି ।
ମୁଁ ବୋଇଲି ବେଶ ଭୂଷଣ ଏବେ ହୁଅ
ଚୁଆ ଚନ୍ଦନ କସ୍ତୁରୀ ଲଗାଅ ।
ଶୁଣିଣ ସକଳ ଦେବୀ ଭୂଷଣ ଯାଇ ହେଲେ
ଅଷ୍ଟରତ୍ନ ଅଳଙ୍କାର ଅଙ୍ଗେ ଲଗାଇଲେ ।
ମସ୍ତକରେ ଫୁଲଗଭା ହୃଦରେ ହାରମୋତି
ଝଟକ ବିଜୁଳି ପ୍ରାଏ ଝଟକଇ ଜ୍ୟୋତି ।
ଅଷ୍ଟରତ୍ନେ କାଞ୍ଚଲା ଅମଳାଣ ଯେ ଶାଢ଼ୀ
ବାରଙ୍ଗନା ପରାଏ ଦିଶନ୍ତି ସର୍ବନାରୀ ।
ଖଟ ଦୋଳି ବାଙ୍କିରେ ସଜାଏ ଦୋଳିପୁଣ
ଏମନ୍ତେ ବେଶ ହୋଇ ଭାଳନ୍ତି ନାରୀଗଣ ।
ତାଙ୍କର ଚିନ୍ତା ଦେଖି ମୋହର ମନୁ ଗରୁ
ନବକୋଟି ରୂପ ଯେ ଭ୍ୟାଇଲୁ ।
ନବକୋଟି ଦେବୀଙ୍କ ସଙ୍ଗରେ ଲୀଳାକଲେ
ମଦନ ଜ୍ୱାଳାରୁ ସ୍ଥକିତ ହୋଇଲେ ।
କର ଯୋଡ଼ିଣ ମୋତେ ସେ ସେବାକରି ଥାନ୍ତି
କେବେହେ ମୋରପାଶ ସେ ନ ଛାଡ଼ନ୍ତି ।
ସେ ପୁରେ ନିଶ୍ଚଳ କରି ରଖିଲି ତାହାଙ୍କୁ
ବୃଷଭ ଚଢ଼ି ମୁଁ ଯେ ଅଇଲି ଏଠାକୁ ।
ପାର୍ବତୀ ବୋଇଲେ ଶୁଣ ଆହେ ପଞ୍ଚାନନ
ସପତଣୀ ଅଟନ୍ତି ମୋହର ଦୁର୍ଗା ଜାଣ ।
ମୈଷାସୁର ସଙ୍ଗରେ ଅତୁଟ ନାରି ଯୁଝି
ସେ ଅସୁର ଅତୁଟ ବରରେ ପ୍ରସିଦ୍ଧି ।
କେ କାହାକୁ ମାଇଲେ ଜାଣେ କେହୁ ପୁଣ
ଚଉଷଠି ଯୋଗ୍ନି ଯେ ଅଛନ୍ତି ସଙ୍ଗେ ଜାଣ
ମଧ୍ୟପୁରେ କେଉଁ ରୂପେ କଲେ ସେଯେ ରଣ
× × + +
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଶାକମ୍ବରୀ
ବତିଶ ଲକ୍ଷ ସାଗର ଯେ ମୃତ୍ୟୁପୁରୀ ।
ଜମ୍ବୁଦ୍ୱୀପ ମଣ୍ଡଳ ହୋଇଲେ ସର୍ବେ ସ୍ଥାଇ
ଦେଖିଣ ଦେବୀଗଣ ରଣ କଲେ ଯାଇ ।
ଶବଦରେ ମେଦିନୀ କମ୍ପିଲା ଥରହର
ହୁଁ ହୁଁ ହୁଁ ଶବଦ ଅଟେ ଯେ ମହାଘୋର ।
ଧୁ ଧୁ ଧୁ ଧୁ ଧୁ ଧୁ ଲାଗିଲା ଘୋର ଟାଣ
ଖି ଖି ଖି ଖି ଖି ଖି ଶବ୍ଦ ଅଟେ ସେହି ପୁଣ ।
ରେରେ ରେ ରେ ରେ ରେ ଡାକନ୍ତି ଦେବୀ ରାଗେ
ରହ ରହ ରହ ବୋଲି ବୋଲିଣ ସରାଗେ ।
ଯାଅ ଯାଅ ଯାଅ କରନ୍ତି ବେଗେ ଧ୍ୱନି
ଆସ ଆସ ଆସ ବୋଲି ଚଳିଲେ ମେଦିନୀ ।
ମାର ମାର ମାର ଶବ୍ଦ ଦେଲେ ଟାଣ
ଧର ଧର ଧର ବୋଲନ୍ତି ଯୋଗ୍ନି ଗଣ ।
ଘୁଂ ଘୁଂ ଘୁଂ ଘୁଂ ଘୁଂ ଘୁଂ ଘୁଂ ଘୁଂରାକରେ ରଡ଼ି
ରଣ ଝଣରଣଝଣ ରଣ ଝଣ ନୁପୁରବାଜେଣି
ଝମ ଝମ ଝମ ହସ୍ତରେ ଚୁଡ଼ି କହି
ଝଟ ଝଟ ଝଟ ଝଟ ଅଳକା ତେଜ ହୋଇ ।
ଅଇଲା ଅଇଲା ଅଇଲା ଯେହ୍ନେନାସାରସିନ୍ଧୁଫଳ
ଦେଖୁ ଦେଖୁ ଦେଖୁ ଅସୁର ହେଲେ ଭୋଳ
ଯୋଗମାୟା ଯୋଗମାୟା ଲାଗିଲା ଭୋଳ
କରପଲବରୁ ଧନୁ ପଡ଼ିଲା ଜଡ଼ି ଟିକି ।
ଖର ଖର ହୋଇ ବହେ ଶ୍ରମ ଝାଳ
ମଦନର ବାଣ ଯେ ବିନ୍ଧିଲା ଶରୀର ।
ଦୈତ୍ୟଙ୍କର ମୋହ ଦେଖି ଦେବୀ ବିଚାରିଲେ
ଏହି ସମୟରେ ଯାକୁ ମାରିବା ବୋଇଲେ ।
ମଦନରେ ଘାରି ଯେ ହେଲେ ଦୈତ୍ୟବଳ
ଚେତା ହେଲେ ଅନେକ ସେ କରିବେ ସମର ।
ଖଣ୍ଡା ଖପର ଧରି ଯେ ଦେବୀ ଗଲେ
ଦୈତ୍ୟଙ୍କର ନିକଟରେ ଯାଇଣ ମିଳିଲେ ।
କେ ମାଇଲେ ଅଠର କେ ମାଇଲେ ସାତ
କେହୁ ମାରଇ ଷୋହଳ କେହୁ ଦଶତ ।
ବତିଶ ଲକ୍ଷ ସାଗର ମାଇଲେ ଦେବୀ ଧରି
ସପ୍ତଦିନ ପର୍ଯ୍ୟନ୍ତ ଉଲଗ୍ନ ହୋଇକରି ।

ଉଲଟ ଜଘନ ଜାନୁ ଯଉବନ
ଦେଖିକରି ଦୈତ୍ୟବଳ ଲୋଭରେ ମଲେ ପୁଣ
ବିଚାରିଲେ ଯାଙ୍କ ସଙ୍ଗେ କରିବା ରତିରସ
ଉପ୍ରଧରେ ଅସୁର ନ ମାରନ୍ତି ଶସ୍ତ୍ର ।
ମାରନ୍ତେ ଦେବୀ ଯେ ସମସ୍ତ ଦୈତ୍ୟ ମଲେ
ସହସ୍ରକ ରୁଧିର ନଦୀ ଯେ ବହିଲେ ।
ସାଗର ସାଗର ହୋଇ ଜାଚିଲ କଥବି
ଏହି ସମୟରେ ଜୟଦୁର୍ଗା ମୈଷାସୁରସୁଖେମରି
ତ୍ରିଶୂଳ କରତା ତାର ହୃଦୟକୁ ମାରି
ନାଭିଠାରୁ ବୁକୁଭାଗ ତ୍ରିଶୂଳ ନିର୍କରୀ ।
ମାଡ଼ି ବସିବାରୁ ପିତକ ମୁନି ତାର
ବାହାର ହେବାରୁ ବକଳ ଅସୁର ।
ଦେଖିଣ ଅସୁର ଯେ ଟେକିଲା ଦେବୀଙ୍କି
ତାହା ଦେଖି ଦେବୀ ଯେ ବସନ ପାଲଟି ।
ଲଙ୍ଗଳା ହୋଇ ସିଂହପରିଗୋଡ଼ଟେକିଲେଧାତି
ଲୁହା ରଥରୁ ଚରଣ ଅଣାଏ ବେଗର ।
ବେନି ଚରଣ  ନେଇ  ଅସୁର ହୃଦେ ଦେଲା
ଜାନୁରେ ବୁକୁଭାଗ ଆସିଣ ପଶିଗଲା ।
କ୍ରୋଧରେ ଅସୁର ଦେବୀ ଘେନି ବେଗେ
ସପ୍ତଦ୍ୱୀପ ଅସୁରକୁ ବୁଲାଇ ପୁଣ ରାଗେ ।
ତ୍ରିଶୂଳ ଧରି ଦେବୀ ଯେ ଉପରେ ଅଛି ରହି
ବେନିହସ୍ତ ସିଂହ ଯେ କାମୁଡ଼ି ଓହଳଇ ।
ଏମନ୍ତେ ତିନିଦିନ ପର୍ଯ୍ୟନ୍ତ ବୁଲି
ଦେଖିଣ ଜୟଦୁର୍ଗା ମନରେ ବିଚାରି ।
କଶ୍ୟପର ସୁତ ଯେ ମେରୁ ଉହାଡ଼େ ଗଲେ
ସେତେବେଳେ ରଜନୀ ଦିବସ ନାହିଁ ଠୁଳେ ।
ଘର ବାହାର ଛାଡ଼ି ଯେ ଓସାସାର ତଳେ
ଭଇରବୀ ରୂପେ ମାଡ଼ି ବସିଲେ ସେଠାରେ ।
ତ୍ରିଶୂଳକୁ ଦାବିଦ୍ୟନ୍ତେ ଯାଇ ପଶିଲାପାତାଳେ
ଦୈତ୍ୟ ରଡ଼ି ଛାଡ଼େ ଯେ ଜୀବନ ଗଲା ବେଳେ
ଜାଣିକରି ଜୟଦୁର୍ଗା ଚରଣେ ଦଳିଦେଲା
କଞ୍ଚାମାଟି କୁରାଳେ ଯେସନେ ଦଳେପରା ।
ହାତ ଗୋଡ଼ ମୁଣ୍ଡ ଯେ ଚକ୍ଷୁ କେଶ
ସମସ୍ତେ ଦଳି ହୋଇଲେ ମେଦ ମାଂସ ।
ତୀକ୍ଷଣଶର ଧରି ଘେନି ଗଲେକ ଦେବୀ ଭଲେ
କେବଣ ସମୁଦ୍ରରେ ପକାଏ ବେଗରେ ।
ସାତ ଲକ୍ଷ ଯୋଜନ ଦୀର୍ଘ ପ୍ରତି ହେଲା
ଏକ ଦ୍ୱୀପ ଦୁଇ ସାଗର ମଧ୍ୟରେ ରହିଲା ।
ବିନ୍ଧ୍ୟଗିରି ମଧ୍ୟକୁ ଲାଗିଲା ତାର ମୁଣ୍ଡ
ଦେଖିଣ ଆନନ୍ଦ ଯେ ହୋଇଲା ନାରୀଷେଣ୍ଡ
ମଧୁର ସମୁଦ୍ରରେ ସ୍ନାହାନ ଯାଇ କଲେ
କ୍ରୋଧକୁ ଶାନ୍ତ କରି ଦେବୀ ତୃପତି ହୋଇଲେ
ଅମଳାଣ ବସନକୁ ସୁମରେ ଦେବୀ ମନେ
ତୁରିତରେ  ପତନି ମିଳିଲେ ସନ୍ନିଧାନେ ।
ସେ ପତନୀ ଗୋଟି ଦେବୀ ପିନ୍ଧଇ ଯେ ପୁଣ
ଧରଣୀର ଉପରେ ବସିଲେ ନିଶ୍ଚଳେଣ ।
ବସିବାରୁ ଦେବୀ ଯେ ଗାୟତ୍ରୀ ସାବିତ୍ରୀ
ଦେବୀଙ୍କର ପାଶେ ଯାଇ ବସିଲେ ତଡ଼ତି ।
ଏହି ସମୟରେ ଯେ କମଳା ସରସ୍ୱତୀ
ଦେବୀଙ୍କର ପାଶେ ଯାଇ ମିଳିଲେ ଝଟତି ।
ଶରୀର ସଙ୍ଗରେ ତୁହି ଗଲୁ ଗୋ ଗଉରୀ
ତୋତେ ଦେଖି ଦେବୀ ମନରେ ଶାନ୍ତି ହେଲେ
ଶତେବାର ପର୍ଯ୍ୟନ୍ତ ଚରଣେ ଓଳଗିଲା
କମଳା ସରସ୍ୱତୀଙ୍କୁ ନମସ୍କାର କଲା ।
ଗାୟତ୍ରୀ ସାବିତ୍ରୀ ଓଳଗେ ତିନିବେଳ
ଦେବୀଙ୍କ ରସଙ୍ଗରେ ସମସ୍ତେ ବସିଲେ ହୋଇମେଳ
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଚଉଷଠି ଯୋଗି ଜମ୍ବୁ ଦ୍ୱୀପ ପୂରି ।
ସବୁ ଦେବୀମାନେ ହୋଇଅଛନ୍ତି ଉଲଗ୍ନ
ଅସୁର ମାରି ମନରେ ହୋଇଲେ ସେ ମଗ୍ନ ।
ବାଳକ ବାଳିକା ଅସୁରଙ୍କର ଯେ ଘରଣୀ
ମାରନ୍ତି ଦେବୀ ଯେ କ୍ରୋଧ ମନରେ ଘେନି ।
ଯେତକ ହାବୁଡ଼େ ଯେ ପଡ଼ିଲେ ତାଙ୍କର
ମାରନ୍ତେ ନିରେଖ ଯେ ହୋଇଲେ ସକଳ
ଯେତକ ପଳାଇଲେ ଜୀବନ ବିକଳେ
ହିରଣ୍ୟ ଗର୍ଭରେ ସେ ପଶିଲେ ସକଳେ ।
ରାଜନ ମୈଷାସୁର ହୋଇଲା ଯହୁଁ ହତ
ତାହାଙ୍କର ସଙ୍ଗରେ ଦୈତ୍ୟ ହେଲେ ହତ ।
ବାକି ଯେତେ ଥିଲେ ପଳାଇ ଲୁଚିଲେ
ଜମ୍ବୁଦ୍ୱୀପ ମଣ୍ଡଳରେ ଗୋଟିଏ ନରହିଲେ ।
ଅସୁର ନ ଦେଖି ଯେ ହୋଇଲେ ତୃପତି
ଲଙ୍କାରେ ସକଳ ଦେବୀ ଚଳିଲେ ଝଟତି ।

ବିନ୍ଧ୍ୟଗିରି ଉପରେ ଯାଇଣ ମିଳିଲେ
ନଦୀରେ ପଶିଣ ଯେ ସମସ୍ତେ ସ୍ନାନ କଲେ ।
ଅମଳାଣ ବସ୍ତ୍ରକୁ ସେ ସୁମରଣା କଲେ
ତତକ୍ଷଣେ ଅମଳାଣ ଆସିଣ ମିଳିଲେ ।
ଅମଳାଣ ଆସି ତା ତୁରିତରେ ପଡ଼ି
ଚଉଷଠି ଯୋଗ୍ନି ପିନ୍ଧିଲେ ସେହୁ ଶାଢ଼ୀ ।
ଉଲଗ୍ନ ଛାଡ଼ିଣ ସେ ମହତ୍ତ ଆବୋରି
ସାଧାରଣ ପଣକୁ ଧରିଣ ନାରୀ ।
ପଞ୍ଚଶର ହୃଦେ ପୀଡ଼ା ଯେ ତାଙ୍କରି
ଆନନ୍ଦେ ହୁଳହୁଳି ଶବଦ ଯାଇ କରି ।
ବ୍ରହ୍ମାବିଷ୍ଣୁ ସୁରରାଜା ମୋର ପାଟରାଣୀ
ଅର୍ଘ୍ୟ ବନ୍ଦାପନା ଯେ କଲେ ସର୍ବେ ଜାଣି ।
ଜୟଦୁର୍ଗାଙ୍କର ଶିରେ ଅର୍ଘ୍ୟ ନେଇ ଦେଲେ
ଏବେ ଆମ୍ଭଙ୍କୁ ରଖ ବୋଲିଣ ବୋଇଲେ ।
ପ୍ରାଣନାଥ ଆମ୍ଭଙ୍କୁ ଭେଟାଅ ବହନ
ନୋହିଲେ ନିଶ୍ଚେ ଜୀବ ଗଲାଟି ତୁ ଜାଣ ।
ମଙ୍ଗଳ ବୋଇଲେ ତୁମ୍ଭେ ନୁହ ଗୋ ଆରତ
ତିନିମାସ ଭୋଗ ମୋର ତୁଟିବ ଯେମନ୍ତ ।
ସମ୍ଭାଳି କାର୍ଯ୍ୟ କରିବା ଅସମ୍ଭାଳ ନୁହ
ଆସିଛନ୍ତି ଦେବନାରୀ ଏହାଙ୍କର ଦେଖ ସ୍ନେହ
ଏହୁମାନେ ମେଲାଣି ହୋଇ ଏଥୁ ଯାନ୍ତୁ
ଆମ୍ଭର ଉପାୟ କରିବାର ହେତୁ ।
ଶୁଣି କରି ସକଳ ଦେବୀ ସନ୍ତୋଷ ହୋଇଲେ
ଦେବନାରୀ ସର୍ବ ଦେଖି ଫେରିଗଲେ ।
ମନରେ ବିଚାରିଲେ ଏ ନାରୀ ବଡ଼ ଦୁଷ୍ଟ
ମାଇଲେ ଦୈତ୍ୟବଳ ଅକ୍ଷୟ ରାକ୍ଷସତ ।
ପୁରୁଷ ହତ୍ୟା ବୋଲି ମନରେ ନ ବିଚାରି
ମୈଷାସୁର ରଖିବାକୁ ମନରେ ଗୁରୁ କରି ।
ସଚି ଦେବୀ ବୋଇଲେ ଚାରି ଯେ ପୁରୁଷ
ଦୁଇ ନାରୀ ସକାଶେ ସଂସାର ଆତଯାତ ।
ରୋହିଣୀ ବୋଇଲେ ଏଥିର କଥା କହ
ସଚିଦେବୀ ବୋଇଲେ ଶୁଣ ଗୋ ଏବେ ପ୍ରିୟ
ପ୍ରଥମରେ ସୁରରାଜା କରନ୍ତି ଯୁଦ୍ଧ ସ୍ନେହ
ମାରିଣ ତିନିପୁର ରଖାଇବ ସେହୁ ପ୍ରିୟ ।
ନ ପାରିଲ କହଇ ସଦାଶିବଙ୍କୁ ଜାଣ
ସେତେବେଳେ ତ୍ରିଲୋଚନ ମାରିବେ ଅସୁରପୁଣ
ଅସୁର ନାରୀଙ୍କର ହାରିଲେ ମହିଭାର
ଏହିକଥା ରଖାଇଲେ ଯୁଗ ଯୁଗାନ୍ତର ।
ରୋହିଣୀ ବୋଇଲେ ଇନ୍ଦ୍ର କାହାକୁ ଧରିଯୁଝେ
ସୁର ପୁର ରାଜାର ସୈନ୍ୟବଳ କେତେ ।
ସଚିଦେବୀ ବୋଇଲେ ତ୍ରିଦଶ ଦେବା ବଳ
ଅଟନ୍ତି ସରଦାର ଯେ ଦଶଦିଗପାଳ ।
ଅଷ୍ଟ ବସୁ ନବଗ୍ରହ ଅଟନ୍ତି ରଥି ଜାଣ
ତ୍ରିଦଶ ଦେବତା ପୁଣି ହେଲେ ସେନାପତି ଜାଣ
ଗନ୍ଧର୍ବ କିନ୍ନର ବିଦ୍ୟାଧର ଯେ ଅର୍ଜୁନ
ଏ ସମସ୍ତ ଅଟନ୍ତି ପଦାତି ବଳ ତେଜ ।
ନଉ ସାଗର ପଦାତି ଖଟନ୍ତି ଅନୁରାଗ
ଯେ ଯାହା ଶସ୍ତ୍ର ଘେନି ବାହାରନ୍ତି ବେଗ ।
ଏମାନଙ୍କୁ ଘେନି ବାହାରନ୍ତି ସୁରରାଜା
ସୁରରାଜା ସଜରେ କରନ୍ତି ରଣବାଜା ।
ନ ପାରିଲେ ସଦାଶିବ କରନ୍ତି ପୁଣ ଯୁଦ୍ଧ
ଚଉଦ କୋଟି ଶଏ ବର୍ଗ ଅଟନ୍ତି ବିବୁଧ ।
ସଦାଶିବଙ୍କ ହସ୍ତରେ ଯେବେ ସେ ନମରି
ଶ୍ରୀହରି ବିଚାରି ଅନନ୍ତ ତାକୁମାରି ।
ଅନନ୍ତର ବିଶ୍ୱାସ ସାଗର ଅଟନ୍ତି ବଳ
ନାଗବଳ ଘେନିଣ ସେ ମାରନ୍ତି ଦୈତ୍ୟବଳ
ଅନନ୍ତ ନପାରିଲେ ଶ୍ରୀହରିଙ୍କି କହି
ନର ନାରାୟଣ ରୂପେ ମାରନ୍ତି ଭାବଗ୍ରାହୀ ।
ଛୟାଣଇ ସାଗର ଯେ ଅଟନ୍ତି ସୈନ୍ୟବଳ
ଶ୍ରୀହରି ପାଟଣାରେ ସବୁଙ୍କର ଘର ।
ଶ୍ରୀହରି ଯାହାଙ୍କୁ ଯେ ନ ପାରନ୍ତି ମାରି
କମଳା ମାରନ୍ତି ତାଙ୍କୁ ମନରେ ବିଚାରି ।
କମଳାଙ୍କୁ ଅସାଧ ହୁଅନ୍ତି ଯେହୁ ଦୈତ୍ୟ
ପାର୍ବତୀଙ୍କ ହସ୍ତରେ ହୁଅନ୍ତି ସର୍ବେ ହତ ।
ଯେହିଟି ପାର୍ବତି ସେହିଟି ଜୟଦୁର୍ଗା ।
ପିଶାଚୀ ଯୋଗିନିଙ୍କର ଦାସୀଗଣ ସୁଦ୍ଧା
ତାହାଠାରୁ ବଳି ଯେ ନ ଯାନ୍ତି ଦୈତ୍ୟବଳ
ଜୟଦୁର୍ଗା ମାଇଲେ ଦେବୀ କରନ୍ତି ଆହାର ।
ରକ୍ତ ମାଂସ ଖାଏ ଯୋଗ୍ନି ପିଚାଶୁଣୀ
ଭସ୍ମ ଦୈତ୍ୟଙ୍କର ଭାଙ୍ଗେ ଦୈତ୍ୟ ପୁଣି ।
ଜୟ ଦୁର୍ଗା ଯୁଦ୍ଧ ଯେ ଚଣ୍ଡୀ ଯୁଦ୍ଧ ଜାଣ
ଶ୍ରୀହରି ଯୁଦ୍ଧ କଲେ ରାମାୟଣ ଯୁଦ୍ଧର ସମାନ

ସୁରରାଜା ଅନନ୍ତ ଯେ ମହେଶ୍ୱର ପୁଣ
ମହାଭାରତ ଯୁଦ୍ଧ ସମାନରେ ଜାଣ ।
ଚାରି ଯୁଗେ ତିନି ଯୁଦ୍ଧ ଅଟଇ ପ୍ରମାଣ
ଆଉ ଯୁଦ୍ଧମାନ ସବୁ ଭାରତ ଲିଖନ ।
ଶୁଣିଣ ଚନ୍ଦ୍ର ରୋହିଣୀ ସନ୍ତୋଷ ହୋଇଲା
ଚଣ୍ଡୀ ନଥିଲେ ଏହାଙ୍କୁ କିଏ ମାରନ୍ତା କହିଲ
ଶଚିଦେବୀ ବୋଇଲେ ଏ ବିଧାନା ଲିଖନ
ସୁରରାଜା ଗର୍ବ ଯେ ଭାଙ୍ଗଇ ଈଶାନ ।
ଈଶାନର ଗର୍ବ ଯେ ଭାଙ୍ଗନ୍ତି ଅନନ୍ତ
ଅନନ୍ତଙ୍କ ଗର୍ବ ଯେ ଭାଙ୍ଗନ୍ତି ଜଗନାଥ ।
ଶ୍ରୀହରିର ଗର୍ବ ଯେ ଭାଙ୍ଗନ୍ତି କମଳା
କମଳାର ଗର୍ବ ଯେ ଭାଙ୍ଗେ ଜୟଦୁର୍ଗା ଭଲା
ସେଥିରେ ସକାଶେ ନାରୀ ବଅଙ୍ଗ
ପୁରୁଷ ଅଙ୍ଗ ସାନ ସ୍ତିରୀଙ୍କ ଠାରୁ ଭାବ ।
ଖାପରେ ଖଣ୍ଡା ଯେହ୍ନେ ପକ୍ଷୀ ରହିଥାଇ
କାଢ଼ିଲେ ଦର୍ପଣ ପ୍ରାଏ ତେଜ ତା ଦିଶଇ ।
ସମସ୍ତଙ୍କୁ ସେହି ସହସ୍ର ନାଶକରି
ସ୍ତିରୀ ଅଙ୍ଗ ପାଇଲେ ସେ ରହଇ ସମ୍ଭାଳି ।
ଚନ୍ଦ୍ର ରୋହିଣୀ ପଚାରିଲେ ଶୁଣ ସୁରରାଣୀ
ପୁରୁଷର ବୀର୍ଯ୍ୟ ସିନା ପୁରୁଷର ଜ୍ୟୋତିପୁଣି
ସବୁଦିନେ ଉଜ୍ଜ୍ୱଳ ସ୍ଥାନ ନୁହେ ତାର
ସ୍ତିରୀ ରଜ ଗୋଟି ଯେ କିମ୍ପା ହୁଏ ଅନ୍ଧାର
ଶଚିଦେବୀ ବୋଇଲେ ମତରୁ ରଜ ଜାତ
ରକ୍ତ ମାଂସ ରଜରୁ ହୁଅଇ ତୁରିତ ।
ପୁରୁଷର ବୀର୍ଯ୍ୟ ଗୋଟି ହୁଏ ଅସ୍ଥି ପୁଣ
ମୂର୍ଦ୍ଧନିକୁ ଧାରଣା ଗୋ ଅଟନ୍ତି ସେ ଜାଣ
ଚନ୍ଦ୍ରରାଣୀ ବୋଇଲେ ଏ କଥା ଅସମ୍ଭବ
ବାହାରେ ଥିବା ଲୋକ କିମ୍ପା ହେବ ବଡ ।
ଶରୀର ଧାରଣ ଯେବେ ହେଲେ ବୀର୍ଯ୍ୟ ପୁଣ
ରଜଗୋଟି କିରୂପେ ବଡ ଅଙ୍ଗ ବାଣ ।
ଶଚିଦେବୀ ବୋଇଲେ ସେ ବାହାରେ ରହି
ବୀର୍ଯ୍ୟକୁ ଆତଯାତ କରିଣ ରଖଇ ।
ସେଥି ସକାଶେ ତାକୁ ବିଧାତା ବଡ କଲା
ରଜକୁ ଦେଖି ବୀର୍ଯ୍ୟ ମନେ ଭାଳେ ପରା ।
ତପସିଦ୍ଧ କଲା ପ୍ରାଏ ତାପରେ ରହେ ମନ
ସେ ରଜକୁ ବୋଲି ସିନା ପଞ୍ଚଶର ବାଣ

କ୍ଷୀରରେ କ୍ଷୀର ଯେହ୍ନେ ମିଶିଲେ ହଜଇ
ଜ୍ୟୋତିମୟୀ ବୀର୍ଯ୍ୟକୁ ରଜ ଯେ ଲୁଚାଦେଇ
ଭିତରେ ପ୍ରକାଶ ତାହାର ବାହାରେ ନଦିଶଇ
ରଜର ବହଳରେ ଲୁଚିଣ ରହିଥାଇ ।
ଶୁଣିକରି ଚନ୍ଦ୍ରରାଣୀ ସନ୍ତୋଷ ହୋଇଲେ
ଧନ୍ୟ ତୁ ଶିବରାଣୀ ବୋଲିଣ ବୋଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଏମନ୍ତେ ଦେବନାରୀ ସମ୍ପଦ କରନ୍ତି ।
ଯେ ଯାହା ନବରେ ମିଳିଲେ ଦେବନାରୀ
ସରସ୍ୱତୀ ଭୁବନରେ ଶଚି ଯାଇ ମିଳି ।
କଳି ଶେଷ କାଳରେ ମିଳିବୁ ଆସି ତୁହି
ଭଲ ପଦ ଶୁଣିଣ କୁମୁଦ ତୋର ଦେହି ।
ଗାୟତ୍ରୀ ସାବିତ୍ରୀ ଯଶୋବନ୍ତ ପୁର ଗଲେ
ବେଦବର ଚରଣେ ଯାଇଣ ନମିଲେ ।
ସାବିତ୍ରୀ ପଚାରିଲେ ଶୁଣ ହେ ବିଧାତା ।
କେଉଁ ଗୁଣେ ଜୟଦୁର୍ଗା ନମଇ କରି ଶୋଭା
ସକଳ ସ୍ତିରୀକି ସେ ଅଟଇ ବଡ ପୁଣ
ଆମ୍ଭ ଚରଣ କିମ୍ପା କଲେ ମାନ୍ୟଧର୍ମ ।
ବିଧାତା ବୋଇଲେ ଶୁଣ ଚନ୍ଦ୍ରମୁଖୀ
ସକଳ ନ୍ୟାୟ ଧର୍ମ ଜୟଦୁର୍ଗା ଦେଖି ।
ମନରେ ବିଚାରଇ ମୋହପରେ ଶ୍ରେଷ୍ଠ
ପାର୍ବତୀ ଅଟନ୍ତି ନାରୀମାନଙ୍କର ଶ୍ରେଷ୍ଠ ।
ତାହାଙ୍କ ସଙ୍ଗରେ ତ ଏମାନେ ଲେଖା ପୁଣ
ପାର୍ବତୀ ଦେବୀଙ୍କର ମୁହିଁ ଅଟେ ସାନ ।
ଏମାନଙ୍କୁ ମାନ୍ୟ କରିବାର ମୋର ଯୋଗ୍ୟ
ନୋହିଲେ ମତ ଗର୍ବ ହୋଇବ ମୋରଯୋଗ୍ୟ
ଏମନ୍ତ ବିଚାରି ମନରେ ଗରୁ ହେଲା
ସାମର୍ଥ ପଣ ଦେଖି ତୁମ୍ଭମାନଙ୍କୁ ଭାବିଲା ।
ଯୋଗ୍ୟ ନାରୀ ସର୍ବେ ଅଯୋଗ୍ୟ ନୋହେ ପୁଣ
ସଦାଶିବଙ୍କ ଘରଣୀ ରାଜ୍ୟକୁ କାରଣ ।
ଶୁଣିକରି ଦୁଇନାରୀ ହରଷ ହୋଇଲେ
ଧନ୍ୟରେ ନାରୀବର ବୋଲିଣ ପ୍ରଶଂସିଲେ ।
ଶୁଣ ଗୋ ଭଗବତୀ ଏଥୁ ଅନନ୍ତରେ
ଲକ୍ଷ୍ମୀ ସରସ୍ୱତୀ ଗଲେ ଯେଝା ଘରେ ।
ବୈକୁଣ୍ଠ ପୁରେ ଯାଇ ଅନନ୍ତ ଶଯ୍ୟାରେ
ନାରାୟଣଙ୍କ ନମସ୍କାର କଲେ ଯେ ସେ ଖରେ

ଦେଖିକରି ବାସୁଦେବ କମଳାଙ୍କୁ ନେଲେ
କୋଳରେ ବସାଇ ସେ ମୁଖେ ଚୁମ୍ବନ ଦେଲେ
ନାରାୟଣ ପଚାରିଲେ କେଉଁକଥା ଦେଖି
ମହାଲକ୍ଷ୍ମୀ ବୋଇଲେ ସେ କଥା ଉପେକ୍ଷି ।
ଜୟଦୂର୍ଗା ପ୍ରତିଜ୍ଞା ତ ସଂସାରେ ହେଲା ସାର
ଉପ୍ରୋଧ ନକରିଣ ମାଇଲା ଅସୁର ।
ଉଲଗ୍ନ ହୋଇ ବାବୁ ମହତ ତେଜ୍ୟାକଲା
ଅସୁରକୁ ମାରି ପୁଣ ମହତ ରଖିଲା ।
ତାହାଠାରୁ ବଡ ନାରୀ ନାହାନ୍ତି ଯେ କେହି
ଏତେବଡ ପଣ କରି ନିମ୍ନମତି ହୋଇ ।
ନିମ୍ନ ହୋଇଣ ସେ ବଚନ ବୋଇଲେ
ତୁମ୍ଭେମାନେ ସର୍ବେ ମୋତେ ଦେଖି ଆଇଥିଲ
ଏବେ ମୋହଠାରେ ସୁଦୟା ତୁମ୍ଭେ କର
ଯେମନ୍ତେ ସ୍ୱାମୀ ମୋତେ ନକର ଅନ୍ତର ।
ଶୁଣିକରି ବଚନ ହରଷ ଆମ୍ଭ ମନ
ସୁକଲ୍ୟାଣ କରିଣ ଅଇଲୁ ଚଳିଣ ।
ତୁମ୍ଭ ପାଟରାଣୀ ହୋଇ ହେଲି ମୁଁ ନିଉନ
ତ୍ରିଲୋଚନ ପାଟରାଣୀ ମାରେ ଦୈତ୍ୟଗଣ ।
ଶ୍ରୀହରି ବୋଇଲେ ତୋହର ମନ ଯେବେ
ମାରିବୁ ଅସୁର ଜନ୍ମ ହୋଇ ଭାବେ ।
ସହସ୍ର ମୁଖାଠାରୁ ଯେ ଅସୁର ନୁହେଁ ସରି
ତାହାକୁ ମାରିବାକୁ ଅକ୍ଷୟ ତ୍ରୋଣ ଧରି ।
ତୋର ସଙ୍ଗେ ଜାତ ମୁଁ ହୋଇଥିବି ପୁଣ
ମୋର ନାମ ଶ୍ରୀରାମ ଅନନ୍ତ ଲକ୍ଷ୍ମଣ ।
ତୋର ନାମ ଜାନକୀ ହୋଇବଟି ପୁଣ
ଜନ୍ମ ରଷିର ଘରେ ଜାତ ହେବୁ ଜାଣ ।
ଦଶରଥ ରାଜାର ଘରେ ବୋହୂ ହେବୁ ପୁଣ
ଶିବଧନୁ ଭାଙ୍ଗି ତୋତେ ବିଭା ହେବି ଜାଣ ।
ପିତା ସତ୍ୟ କଲାକାଳେ ବନକୁ ତୋତେନେବି
ଦଣ୍ଡକା ଅରଣ୍ୟରେ ମୁହିଁ ମଢ଼ିଆ ରଚିବି ।
ରାବଣର ଭଉଣୀ ସୂର୍ପଣଖା ଆସିକରି
ତୋତେ ଦେଖି ଭାଇ ଆଗେ କହିବ ଟେକକରି
ତାହାଠାରୁ ଶୁଣିକରି ରାବଣ ଆସିବ
ମାରିଚ ପାଶରେ ଯାଇ ପ୍ରବେଶ ହୋଇବ ।
ତାହାକୁ ବୋଲିବ ଦୈତ୍ୟ ଆସ ବାବୁ ପୁଣି
ଦଣ୍ଡକାଅରଣ୍ୟେ ଛନ୍ତି ଜନକ ଦୁଲଣୀ ।

ତାକୁ ଦେଖି ଚାଲ ଆମ୍ଭେ କପଟେ ଆଣିବା
ଲଙ୍କା ଗଡ଼େ ଠାକୁରାଣୀ ତାହାକୁ କରିବା ।
ମାରିଚ ବୋଇଲା ସେ ଅଟେ କାହା ନାରୀ
କିଏ ତାର ଅଟେ ପତି କହ ହେତୁ କରି ।
ଏ ବଚନ ଶୁଣିଣ ଦଶାନନ କହେ
ଅଯୋଧ୍ୟା ଦେଶେ ଘର ଦଶରଥ ରାଏ ।
ସେ ଦଶରଥ ରାଜାର ଅଟନ୍ତି ତିନିରାଣୀ
ଜ୍ୟେଷ୍ଠ ରାଣୀଙ୍କ ସୁତ ଶ୍ରୀରାମ ବୋଲି ଜାଣି ।
ଭ୍ରଥ ମାତା ସେ ଯେ କୈକେୟା ରାଣୀ
ସୁମିତ୍ରାଙ୍କ ଠାରୁ ଲକ୍ଷ୍ମଣ ଶତୃଘନ ପୁଣି ।
ରାବଣ ବୋଇଲା ମୋତେ ସୂର୍ପଣଖା କହି
ତାହାଠାରୁ ଶୁଣି ତୋତେ କହୁଛି ବୁଝାଇ ।
ମାରିଚ ବୋଇଲା ତୁମ୍ଭେ ଶୁଣ ଆହେ ମାମୁଁ
ଅଳପ କଥାରେ ବଢ଼ିଲେ ହାନି ସବୁ ।
ଯେଉଁ ରାମ ପଦକୁ ଧଇଲ ତୁମ୍ଭେ ପୁଣି
ସେହି ରାମ ଅଟନ୍ତି ସ୍ୱୟଂ ଚକ୍ରପାଣି ।
ସେହି ରାମର ଘରଣୀ ଅଟନ୍ତି ସୀତୟା
ସୀତାୟାଙ୍କୁ ଦେଖିଲେ ମରିବୁ ବିଂଶବାହା ।
କେବେ ତୁ ସେ ଦ୍ୱନ୍ଦରେ ନପଡ ଦଶଶିରି
ବଂଶ ତୋ ନାଶଯିବ ଜାଣିଥା ହେତୁ କରି ।
ମାରିଚ ଠାରୁ ଏ ବଚନ ଶୁଣିଣ ଦଶକନ୍ଧ
ସୀତୟାଙ୍କୁ ଦେଖିବାକୁ ମନରେ ଆନନ୍ଦ ।
ପୂର୍ଣ୍ଣକୁଟୀ ମଢ଼ିଆକୁ ଯିବ ଦଶକନ୍ଧ
ମାୟା ମୃଗ ହୋଇଣ ମାରିଚ ଆସିବି ।
ତାକୁ ଦେଖି ତୋହର ଶରଧା ବଳିବ
ସେକାଳେ ବୋଲିବୁ ତୁ ଶୁଣ ପ୍ରାଣନାଥ ।
ଏ ମୃଗ ଦିଶୁଅଛି କେବଣ ସଞ୍ଚତ
ମୋତେ ବୋଲିବୁ ନାଥ ମୃଗ ଆଣି ଦିଅତ ।
ନୋହିଲେକି କ୍ଷତ୍ରୀପଣ ତୁମ୍ଭର ଜଣାଯିବ
ତୋଠାରୁ ନ୍ୟାନ୍ତର ଏ ବଚନ ଶୁଣିବ ।
ମୃଗକୁ ମାରିବାକୁ ଯିବି ମୁଁ ତକ୍ଷଣି
ମୃଗକୁ ଦେଖିଣ ମୁଁ ବାଣ ଦେବି ଛାଡି ।
ଲକ୍ଷ୍ମଣ ରଖ ବୋଲି ସେ ମୃଗ ଡାକ ଦେବ
ତୋଣେ ଛାଡ଼ି ଲକ୍ଷ୍ମଣ ମଡିଅରୁ ଯିବ ।
ଯତି ବେଶ ଧରିକରି ରାବଣ ଆସିବ
ଭିକ୍ଷା ଦିଅ ବୋଲିକରି ବଚନ ଭାଷିବ ।

ଭିକ୍ଷା ଘେନି ମହାସତୀ ବେଗେ ଚଳିଯିବ
ସେହିକାଳେ ରାବଣ ତୋତେ ହରିନେବ ।
ହରି ଘେନିଯିବ ତୋତେ ବିଶ୍ରବାର ସୁତ
ଅଶୋକ ବନରେ ତୋତେ ରଖିବ ତୁରିତ ।
ତିନି ରାବଣ ତୋ ଛଳେ କରିବି ମୁଁ ନାଶ
ସହସ୍ର ମୁଖକୁ କରିବୁ ତୁ ବିନାଶ ।
ସେତେବେଳେ ଜୟଦୂର୍ଗା ସଙ୍ଗେ ସରିହେବୁ
ରାମାୟଣ ଯୁଦ୍ଧରେ ଚଣ୍ଡୀକୁ ବଳିଦେବୁ ।
ତେବେ ତୋର ମନୋରଥ ହୋଇବ ସମ୍ପୂର୍ଣ୍ଣ
ଏତେବୋଲି ବାସୁଦେବ କହିଲେ ତାଙ୍କୁ ପୁଣ
ଶୁଣିକରି ସନ୍ତୋଷ ଯେ ହୋଇଲେ କମଳା
ଶ୍ରୀହରିଙ୍କ ସଙ୍ଗତରେ ଆରମ୍ଭିଲେ ଲୀଳା ।
ବେନି ସହସ୍ର ବରଷ ରମଣ ରତିକଲେ
ଅନନ୍ତ ଶଯ୍ୟାରେ ଯାଇ ଶ୍ରୀହରି ପହୁଡ଼ିଲେ
ସରସ୍ୱତୀ ଡମ୍ବରୁ ବୀଣା ଧରି ଗାଏ
ବରୁଣର ଯେମା ପାଦରେ ଗଡିକରେ ।
ସେହିକାଳ କଥା ଯେବେ ସେ ପ୍ରାପତ
ଚାରି ରାବଣ ମାରିବାକୁ ଶ୍ରୀହରି ହେଲେ ଜାତ
କମଳା ଜାତ ହେଲେ ମରିବେ ଅସୁର
ଜନକ ଋଷି ଘରେ ତାର ଅବତାର ।
ଦଶରଥ ଘରେ ଶ୍ରୀରାମ ଜାତ ଜାଣ
ଅସୁରଙ୍କୁ ମାରି କରିବେ ରଣଭଣ ।
ଶିବଧନୁ ଭାଙ୍ଗିରାମ ଜାନାକୀ ବିଭା ହେଲେ
ଅଯୋଧ୍ୟାରେ ଅଛନ୍ତି ଦଶରଥ ଘରେ ।
ପାର୍ବତୀ ବୋଇଲେ ଜୟଚଣ୍ଡି କିସ କଲା
ପୃଥ୍ୱୀର ସଲ ମୈଷାସୁରକୁ ମାଇଲା ।
ତାହାର ମୁର୍ଦ୍ଧନୀରେ ଧରଣୀ ସଞ୍ଚିଲା
ସକଳ ଦେବୀଙ୍କି ଘେନି ସେଠାରେ ରହିଲା ।
ସେଠାରୁ କିସ କଲେ କହ ହେ ତ୍ରିଲୋଚନ
ଈଶ୍ୱର ବୋଇଲେ ତୁମ୍ଭେ ଭଗବତୀ ଶୁଣ ।
ଜୟ ଚଣ୍ଡି ମୈଷାସୁର ମୂର୍ଦ୍ଧନୀ ଉପରେ
ଚଉଷଠି ଯୋଗ୍ନି ଘେନି ରହିଛି ସେଠାରେ ।
ରୂପବ୍ରହ୍ମା ବିଶ୍ୱକର୍ମାକୁ ବିଚାରିଲେ ମନ
କୋଟିଏ ବିନ୍ଧାଣୀ ଘେନି ପ୍ରବେଶ ତତକ୍ଷଣ ।
ଦେବୀର ଚରଣେ ସେ ନମସ୍କାର କଲା
କି କାର୍ଯ୍ୟରେ ଲୋଡ଼ିଲା ମୋତେ ସେ ବୋଇଲା
ଜୟଦୂର୍ଗା ବୋଇଲେ ଶୁଣ ହେ ରୂପବ୍ରହ୍ମା
ଏ ମେଦିନୀ ଗୋଟି ଯେ ସାତଲକ୍ଷ ସୀମା ।
ଏଥିରେ ପଞ୍ଚାସତ କୋଟି ଯେ ମନ୍ଦିର
ସମସ୍ତ ମାଣିକ୍ୟରେ ହୋଇବ ନିର୍ମାଣ ।
ରୁଧିର ଯୋଡିମାନ ଦିଶିବାର ପୁଣ
ତିନିପୁରକୁ ସୁନ୍ଦର ହୋଇବ ଘଟଣ ।
କୂପ ବାମ୍ପୀ ପୋଖରୀ ନଦୀ ସରୋବର
ମାଣିକ୍ୟ ବସନ୍ତବର୍ଣ୍ଣ ଗଙ୍ଗା ହୋଇବ ଏଥିର
ଧନ ରତ୍ନ ବସନ ପଲଙ୍କ ସୁପାତି
ଖଟ ଦୋଳି ବାଙ୍କିଆ ସବୁଘରେ ରଖି ।
ସିଂହାସନ ଜଗତି କରିବୁ ପ୍ରତି ଘରେ
ବସନ୍ତ ବର୍ଣ୍ଣ ଚାଳ ହୋଇବ ଉପରେ ।
ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ଟାଣିବୁ ପ୍ରତିଘରେ
ଲୀଳା କରିବା ସ୍ଥାନମାନ ନିର୍ମଳ କରିବାରେ
ଶୁଣିକରି ବିଶ୍ୱକର୍ମା ବେଗେ ଚଳିଗଲା
ସେ ଚଉପାଶେ ପର୍ବତ ଘେରାଇଲା ।
ଖାଲ ଖଣା ଠୁକର ସମତୁଲେ ଜାଣ
କୁଣ୍ଡମାନଙ୍କରେ ଘୃତ କଲା ପରିପୂର୍ଣ୍ଣ ।
ତହିଁର ପାଶେ ଯେ ପାଚେରୀଏ କଲା
ମାଣିକ୍ୟର ଜ୍ୟୋତି ଦିଶଇ ବଡ ଦ୍ୱରା ।
ବୈତରଣୀ ଗୋଦାବରୀ ସିନ୍ଧୁ ଯେ କାବେରୀ
ତିନିଗଙ୍ଗା ତିନିରୂପେ ବୁହାଏ ବିଚାରି ।
ମାଣିକ୍ୟ ବସନ୍ତ ସ୍ଫଟିକ ବର୍ଣ୍ଣ ପୁଣ
ଗଙ୍ଗା ପ୍ରଶ୍ନରେ ବହିଲା ନଦୀ ଜାଣ ।
କୋଟିଏ ନଦୀ ଭିଆଣ ତହୁଁ କଲା
ବେନି କୋଟି ସରୋବର ତହିଁରେ ଭ୍ୟାଇଲା ।
ପାଞ୍ଚକୋଟି ପୁଷ୍କରିଣୀ କଲେକ ରଚନ
ଦଶକୋଟି ପୋଖରୀ କଲେକ ନିର୍ମାଣ ।
କୋଟିଏ କୋଟି ବାମ୍ପୀ ସେଥିରେ ଭ୍ୟାଇଲା
ପଞ୍ଚାସ କୋଟି କୂପ ସେଥିରେ ରଚିଲା ।
ପଞ୍ଚାସ କୋଟି ଯେ ନବର ଭ୍ୟାଇଲା
ଅଟ୍ଟାଳି ଜଗତୀ ଯେ ସିଂହାସନ କଲା ।
ସକଳ ଘରେ ଖଟ ଦୋଳି ବାଙ୍କୀଆ ରଖିଲା

× + ×

ଧନ ରତ୍ନ ଆୟ ଯେ ଅଳଙ୍କାର ପୁଣ
ଠାବେ ଠାବେ ଅମୃତ ଯୋଗାଡ କରେ ଜାଣ ।

ଶେଯ ମାଣ୍ଡି ମୃଚୂଳି ପଲଙ୍କରେ ଶୋଇ
ଝରୀ ବାଟୀ ଡୁବାଇ ସେଥିରେ ରଖାଇ ।
ଗନ୍ଧ ଚନ୍ଦନ କସ୍ତୁରୀ କର୍ପୂର ଭାସ୍କର
ସୁଗନ୍ଧ ଦ୍ରବ୍ୟମାନ ରଖାଇ ନିଜର ।
ଛୁରୀ ଖଣ୍ଡା ଶାବେଳୀ ମୃଦୁଗର
ଶକତି ବରଛା କାତୀ ଗଦା ଯେ ଅଶିବର ।
ଧନୁ କମାୟଣ ନାରାଚ ନାନା ଶସ୍ତ୍ର
ନବରମାନଙ୍କରେ ସାଇତି ରଖିଲା ତ ।
ଫଳଫଳ ଲତାମାନ ଜାତ କରି
ସମସ୍ତଙ୍କ ନବରେ ରଖିଲା ଶସ୍ୟ ଭରି ।
ଉପରେ ବସନ୍ତ ବର୍ଣ୍ଣ ତୀଳ ଦିଶେ ରଙ୍ଗ
ମଧଭାଗ ଯାକ ଜ୍ୟୋତିମୟୀ ସଙ୍ଗ ।
ଭୂବନ ବନ ରଖିଣ ବେଦବ୍ରହ୍ମା
ସେଠାରୁ ବେଦ ବ୍ରହ୍ମା ବାହାରିଗଲା ସୀମା ।
ଘୃତ ପିଣ୍ଡ ମାନଙ୍କରେ ଲଗାଇ ଅନଳ
ଅନଳରେ ହିଙ୍ଗୁଳା ବିଜୟ ସତ୍ୱର ।
ସକଳ ତିଆରି କରି ଦେବୀର ଆଗେ ଛିଡ଼ା
ଚାରିପାଶେ ଚାରିଦ୍ୱାର କରିଛି ଗୋଳା ।
ଅଷ୍ଟ ଦେବତାଙ୍କୁ ରଖିଛି ତହିଁ ପୁଣ
ଦ୍ୱାରପାଳ ହୋଇଲେ ବେତାଳଗଣ ଜାଣ ।
ଗିରିମାଳ ପର୍ବତରେ ଅନଳ ଠଣାକଲା
ହିଙ୍ଗୁଳା ସୈନ୍ୟବଳ ସେଥିରେ ଜଗାଇଲା ।
କରଯୋଡ଼ି ଦେବୀ ଆଗେ ରୂପ ବ୍ରହ୍ମା
ସକଳି ତିଆରି କଲେ ଯାଉଛି ମୋର ସୀମା ।
ଶୁଣିଣ ଜଗଦୁର୍ଗା ବୋଇଲେ ଯାଅ ବେଗେ
ଶୁଣିକରି ବିଶ୍ୱକର୍ମା ଚଳିଲା ସରାଗେ ।
ନିଜସ୍ଥାନେ ଯାଇଣ ହେଲାକ ପ୍ରବେଶ
ବିଶ୍ୱକର୍ମା ଦେହରୁ ଛାଡ଼ିଲା କଳୁଷ ।
ଏଥୁ ଅନନ୍ତରେ ଗୋ ଭବାନି
ବିଶ୍ୱକର୍ମା ଯିବାର ଆପଣା ସ୍ଥାନେ ପୁଣି ।
ବେଦବ୍ରହ୍ମାକୁ ସୁମରଣା କଲେ ଜୟଦୁର୍ଗା
ଜାଣିକରି ବିଧାତା ସେ ଅଇଲେ ଅଲଗା ।
ପରମହଂସ ବିଜେ କଲେ ଆସି
ମାଣିକ୍ୟ ଦ୍ୱୀପରେ ପ୍ରବେଶ ହେଲେ ସେଟି ।
ଦେଖିକରି ଯୋଗମାୟା ଆସନୁ ଉଠିଗଲା
ବିଧାତାର ଚରଣେ ଓଳଗି ଶୋଇଲା ।

ବିଧାତା ବୋଇଲେ କି କାର୍ଯ୍ୟେ ସୁମରଣ
ସପ୍ତପୁର ଏବେ ସ୍ଥିର ହେଲା ଜାଣ ।
ଜୟଦୁର୍ଗା ବୋଇଲେ ଦୈତ୍ୟ ମୁର୍ଦ୍ଧନୀ ଧରଣ
ଏଥିରେ ନବର ମୁଁ ଯେ କରିବି ରହି ପୁଣି ।
ରୂପବ୍ରହ୍ମା ଆସିଣ ନିର୍ମାଣ କରିଗଲା
ତୁମ୍ଭେ ଏ ପୁରକୁ ପବିତ୍ରକର ତୋରା ।
ଶୁଣିକରି ବେଦବ୍ରହ୍ମା ସକଳ ପୁରେ ପଶି
ଜୀବନ୍ୟାସ ମନ୍ତ୍ରପଢ଼ି ପବିତ୍ର କଲେ ବସି ।
ପଞ୍ଚାମୃତ ସିଞ୍ଚିଣ ପୁରମାନଙ୍କରେ
ସକଳ ପୁରକୁ ଦେଖିଣ ଗଲେ ଖରେ ।
ଦେବୀଙ୍କି କହିଣ ନିଜପୁରେ ଚଳି
ଯଶୋବନ୍ତୀ ପୁରରେ ତୁରିତ ଯାଇ ମିଳି ।
ନଗ୍ରପୁର ବୁଲିଣ ଦେଖିଣ ଜୟଦୁର୍ଗା
ସକଳ ଘଟଣା କରି ରଖିଛି ବିଶ୍ୱକର୍ମା ।
ବେଦବ୍ରହ୍ମା ପ୍ରସନ୍ନରେ ହସଇ ପୁରମାନ
ଦେଖିକରି ସନ୍ତୋଷ ଜୟଚଣ୍ଡୀ ପୁଣ ।
ନିଷ୍କଳ ଅସନୀରେ ବସିଲା ଯାଇକରି
ଜୟଦୁର୍ଗା ମନ୍ତ୍ର ଯେ ସୁମରଣା କରି ।
ଆସନ କମ୍ପିଲା ହୋଇଲି ମୁଁ ଯେ ବଣା
ଚଉଦ କୋଟି ସଙ୍ଗରେ ଘେନିକିନା ।
ମାଣିକ୍ୟର ଦ୍ୱୀପରେ ପ୍ରବେଶ ହେଲି ପୁଣି
ଦେଖିଲି ସେ ପୁର ବିକାଶେ ତେଜ ଜାଣି ।
ଜୟଦୁର୍ଗା ପାଶରେ ହୋଇଲି ପ୍ରବେଶ
ଦେଖିଣ ଜୟଦୁର୍ଗା ହୋଇଲେ ହରଷ ।
ଶତେବାର ପର୍ଯ୍ୟନ୍ତ ଚରଣ ଓଳଗିଲା
କରଯୋଡ଼ି ଲଜ୍ଜା କରି ମନରେ ରହିଲା ।
ମୁଁ ବୋଇଲି କିମ୍ପାଇ ତୁ ନୋହିଲୁ ଭୂଷଣ
କେଉଁଚିନ୍ତା ତୋତେ ଲାଗି ଅଛି ପୁଣ ।
ସେ ବୋଇଲା ମୋର ପ୍ରଭୁ ଅଟଯେ ତୁମ୍ଭେ ପୁଣି
ଯେଉଁ ଆଜ୍ଞା ଦେବ ଯେ କରିବି ତତକ୍ଷଣି ।
ମୁଁ ବୋଇଲି ବେଗେ ଭୂଷଣ ବେଶ ହୁଅ
ମୋର ସଙ୍ଗେ ଲୀଳା ଯେ ହୋଇବ ଅତିପ୍ରିୟା
ଶୁଣିକରି ଜୟଦୁର୍ଗା ଦାସୀଙ୍କୁ ଅଣାଇଲା
ମୋ ପାଶୁ ଫେରିବେ ଭୂଷଣ ବେଗେ ହେଲା ।
ଚରଣେ ଅଳତା ଘେନିଲା ଯାଇକରି
ଅଳତାର ସଙ୍ଗେରେ ନୀଳ ବେଶ ଫେରି ।

ଅଙ୍ଗୁଷ୍ଠିରେ ଝୁଣ୍ଟିଆ ଲଗାଇ ଯତନ
ତହିଁ ପରେ ବାଜେଣୀ ବଳା ଧ୍ୱନି ସ୍ୱନ ।
ପାହୁଡ଼ି ସାଜିଲା ଯେ ସେଥିପରେ ନେଇ
କଟିରେ ମେଖଳା ଯେ ଘାଘୁଡ଼ି ଶୋଭାପାଇ ।
ହୀରା ମାଣିକ୍ୟର ଚୂଡ଼ି ଲଗାଇ ହସ୍ତରେ
ତେଜରେ ରବି ଚନ୍ଦ୍ର ଲୁଚିଲେ ସେଠାରେ ।
ବାହାରେ ବାହୁବନ୍ଧ ବାହୁଟି ବଡ଼ ବିଦ
ଚନ୍ଦ୍ରଙ୍କର ଉଜ୍ଜ୍ୱଳରୁ ଅଧିକ ତାଙ୍କ ତେଜ ।
ଗଳାରେ ଚାପସରି ମୁକୁତା ମାଳ ହୀରା
ପଦକ ଚନ୍ଦ୍ରହାର ଲଗାଇଲା ଗଳା ।
ହୀରା ନୀଳା ସେଥିରେ ବସିଅଛି ପୁଣ
ସେଥି ମଧ୍ୟେ ଆପଣା ଶରୀର ଦିଶେ ଜାଣ ।
କର୍ଣ୍ଣରେ କୁଣ୍ଡଳ ଯେ କାପ ମଲକଡ଼ି
ଚନ୍ଦ୍ର ଫିରିଫିରା ଝମକେ ହେମ ହରି ।
ନାଶାରେ ସିନ୍ଧୁଫଳ ରତ୍ନଗୁଣା ନାଇ
ନୋଥ ଦଣ୍ଡି ଦୁହିଁଙ୍କି ଜିଣନ୍ତା କେହି ନାହିଁ ।
ମସ୍ତକରେ ଚନ୍ଦନ ତାପରେ ଅଳକା
ଥୋପି ଥୋପି ତହିଁରେ ଲମ୍ବାଇ ମୁକୁତା ।
କେଶ ସମାଳିଣ ତାପରେ ଯୋଡ଼ା ବାନ୍ଧି
ଚାରି ପାଶେ ଝାମ୍ପୀ ଚଉରୀ ମୁଣ୍ଡି ଲାଗି ।
ଝରା କାଠି ଝିଞ୍ଜିରା ବସାଇ ହୀରା ନୀଳା
ଯୁଡ଼ା ଚାରି ପାଶେ ଦେଇଣ ଅଛି ବେଣୀ ।
ନୟନ ଲାଞ୍ଜି ଅଞ୍ଜନ ଜିଣଇ ନୟନ
କପୋଳ ସିନ୍ଦୂର ରତିକି ଜିଣେ ପୁଣ ।
ଅଳଙ୍କାର ନାଇ ଦେବୀ କାଞ୍ଚୁଲା ପିନ୍ଧିଲା
ଅଷ୍ଟରତ୍ନେ କାଞ୍ଚୁଲା ହୃଦକୁ ଦିଶେ ତ୍ୱରା ।
ଇନ୍ଦ୍ର ଗୋବିନ୍ଦ ପତନି ପିନ୍ଧିଲେ କାଛି କରି
ମେଘ ଡମ୍ବରୁ ଖଣ୍ଡୁଆ ଉପରାଣ ତରି ।
ଅର୍ଘ୍ୟସ୍ଥଳି ସଜ କରି ହୋଇଲେ ବାହାର
ଜଗତ ମୋହିତ ହେଲା ହୋଇଲ ଅସ୍ଥିର ।
ଏହିପରି ସକଳ ଶାକମ୍ବରୀ ବେଶ
ଚୌଦ କୋଟି ରୂପରୁ ଚୌଷଠି କୋଟିରୂପ ।
ସମସ୍ତଙ୍କ ପୁରରେ ବିଜୟ ଯାଇ କଲୁ
ପ୍ରବଳ ସିଂହାସନେ ଯାଇଣ ବସିଲୁ ।
ଦେଖିଣ ନାରୀମାନେ ଅର୍ଘ୍ୟ ବନ୍ଦାଇଲେ
ପଞ୍ଚ ନେତ୍ରୀ ନୟନରେ ସେ ରଖିଲେ ।

ଆଳତୀ ଧୂପ ବନ୍ଦାପନା କଲେ ଆଗରେ
ଅମଳିଣ ପୁଷ୍ପମାନ ଦେଲେ ମୋ ଗଳାରେ ।
ଚନ୍ଦନ କର୍ପୂର କସ୍ତୁରୀ ବୋଳିଦେଲେ
ଚରଣ ଓଳଗି ହୋଇ ଶରୀରେ ଲେପିଲେ ।
ପକ୍ଷ ପର୍ଯ୍ୟନ୍ତେ ମୋହିଲେକ ମୋତେ
ତେବେ ସେ ସନ୍ତୋଷ ହୋଇଲେ ରତି ରସେ ।
ସେ ରୂପମାନ ତାଙ୍କ ସଙ୍ଗରେ ରଖି ପୁଣ
ଏମନ୍ତ ସମୟେ ଅଇଲେ ଦେବଗଣ ।
ମୋହର ଛାମୁରେ ସେ ଅନେକ ସ୍ତୁତି କଲେ
ରଖନ୍ତୁ ସଦାଶିବ ବୋଲିଣ ଡାକିଲେ ।
ଅସୁରଙ୍କର ଭୟରୁ ନିବାରଣ କଲ
ଏବେ କିମ୍ପା ଆମ୍ଭଙ୍କୁ ଦର୍ଶନ ନଦେଲ ।
ଏତେ କହି ନମିଲେ ମୋହର ଚରଣ
କାକୁସ୍ତ ହୋଇଣ କହନ୍ତି ଦେବଗଣ ।
ଦେବଙ୍କର ଆରତ ଦେଖି ମୁଁ ଦୟା କଲି
ଶାକମ୍ବରୀକୁ ପୂଜାକର ବୋଲିଣ ବୋଇଲି ।
ସେ ବୋଇଲେ କେଉଁଠାରେ କରିବୁ ଆମ୍ଭେପୂଜା
ମୁଁ ବୋଇଲି ଯେ ଯାହାର ଗ୍ରାମରେ ଥାଅପ୍ରଜା
ଶୁଣିଣ ଦେବଗଣ ମେଲାଣି ହୋଇ ଗଲେ
ସିନ୍ଦୂର କଜ୍ଜ୍ୱଳ ଦେଇ ଗ୍ରାମରେ ପୂଜାକଲେ
ଚଣ୍ଡି ପୁରାଣ ମୁଁ ଦେଲି ଯେ ତାହାଙ୍କୁ
ସେ ପୁରାଣ ପଢ଼ି ଜପିଲେ ଦୁର୍ଗାଙ୍କୁ ।
ତେବେ ସେ ଜୟଦୁର୍ଗା ପ୍ରସନ୍ନ ତାଙ୍କୁ ହେଲେ
ଗ୍ରାମେ ଗ୍ରାମେ ରହିଣ ବେହରଣ କଲେ ।
ପାର୍ବତୀ ବୋଇଲେ ଦେବ କଥାଏ ରହିଲା
ଦେବତା ଅଇଲେ ଯେବେବେଳେ ଦୁର୍ଗାକୋଳେ ଥିଲା
ଈଶ୍ୱର ବୋଇଲେ ତୁଗୋ ଶୁଣ ଭଗବତୀ
ଦେବତା ଆସିବାର ଜାଣିଲେକ ସତୀ ।
ମୋହର କୋଳରୁ ଦେବୀ ଉଠିଗଲେ
ଆଉ ଉହାଡ଼ରେ ଯାଇଣ ରହିଲେ ।
ତେବେ ସେ ଦେବତାଏ ଅଇଲେ ମୋରଆଗ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ଦେବ ।
ସ୍ୱର୍ଗରେ କେଉଁ ଦେବୀ ରହିଲେ ଗ୍ରାମରେ
ଈଶ୍ୱର ବୋଇଲେ ତୁ ଗୋ ଶୁଣହେତୁରେ ।
ଯେଉଁ ନବକୋଟି ସ୍ୱର୍ଗ କଲେ ପୁଣ
ଶମ୍ଭୁ ନିଶମ୍ଭୁ ସଙ୍ଗରେ ଯେହ୍ନେ କଲେ ରଣ ।

ସେମାନେ ବେହରଣ ସ୍ୱର୍ଗପୁରେ କଲେ
ଗ୍ରାମେ ଗ୍ରାମେ ରହିଣ ସନ୍ତୋଷ ହେଲେ ।
ଦେବା ଦେବୀ ପୂଜାରେ ହୋଇଲେ ସନ୍ତୋଷ
ନବକୋଟି ରୂପ ଯେ ରହିଲେ ତାଙ୍କ ପାଶ ।
ପାର୍ବତୀ ବୋଇଲେ ଶୁଣିଲି ସ୍ୱର୍ଗପୁର ରୀତି
ପାତାଳପୁର ଭଇରବୀ ପୁଣ କଲେ ଗତି ।
ଈଶ୍ୱର ବୋଇଲେ ସେଯେ ରହିଲେ ରସାତଳେ
ମୋର ସଙ୍ଗେ ବିହାରି ସେ କରନ୍ତି ନିଶ୍ଚଳେ ।
ପାଞ୍ଚପୁରେ ତାଙ୍କର ଅଟଇ ବେହରଣ
ଗ୍ରାମେ ଗ୍ରାମେ ସେ ଯେ ରହିଲେ ଯାଇପୁଣ ।
ନାଗଗଣ ଋଷିଗଣ ଦୈତ୍ୟଗଣ ଜାଣ
ସମସ୍ତେ ସେବାକଲେ ତାଙ୍କର ଚରଣ ।
ପାର୍ବତୀ ବୋଇଲେ କଥାଏ ଅବେଣ୍ଡତ
ଦୈତ୍ୟ ତାକୁ ବରିଲେ ସେ ଦରିଲେ କେମନ୍ତ
ଈଶ୍ୱର ବୋଇଲେ ସେ ଭୟରେ ସେବାକରି
ବାଳକ ବାଳିଙ୍କି ସ୍ତ୍ରୀରୀଙ୍କି ସେ ମାରି ।
ବିଚାରିଲେ ଏ ଦେବୀର ଭବୁସି ହୋଇଥିଲେ
ଦାସ ନ କରିବ ଦୈତ୍ୟ ହତ୍ୟାକରିବ ଦଳେ
ପାର୍ବତୀ ବୋଇଲେ ତପି ଯେ କିମ୍ପା ଡରି
ଈଶ୍ୱର ବୋଇଲେ ସେ ଯେ ଅଟନ୍ତି ସଂସାରି ।
ତାଙ୍କର ଶୁଭାଶୁଭ ଅଟଇ ଯେଉଁଦିନ
ଶାକମ୍ଭରୀ ପୂଜା ସେ କରନ୍ତି ସେଦିନ ।
ପାର୍ବତୀ ବୋଇଲେ ପ୍ରତେ ଏବେ ମୁହିଁ ଗଲି
ବଳାଇ କହିବାରୁ ଶୁଣି ମୁଁ ବୋଧହେଲି ।
ମଧପୁରେ ରହିଲେ ଜୟଦୁର୍ଗା ପୁଣ
କେମନ୍ତେ ବିହାର କଲାକ ସେହୁ ଜାଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ମାଣିକ୍ୟର ପୁରେ ଯେ ଜୟାଦୁର୍ଗା ସ୍ଥିତି ।
ମୋର ସଙ୍ଗେ ରତି ରମଣ ସେହୁ ଲେ
ରହସ୍ୟରେ ମୋର ସଙ୍ଗେ ଦିନ ସେ ହରିଲେ ।
ଏକ ଦିନେ ଯୋଗମାୟା ଛାମୁରେ ମୋର କହି
ଯେଉଁ ଆଜ୍ଞା ଦେବ ଦେଇଣ ଥିଲୁ ତୁହି ।
ତୁମ୍ଭର ବଚନ ଦେବ ହେଉଛି ଅନାସ୍ଥ
କାଳେଣ ସକଳେ ହେଉଛ ମଏମାତ ।
ତୁମ୍ଭଙ୍କୁ ନ ମାନିବେ ନ କରିବେ ପୂଜା
ମୋହର କଥା ତ ହୋଇବ ପୁଣ ଦ୍ୱିଜା ।

ଶୁଣିଣ ସେ ବଚନ ମନରେ ତୋଷ ହେଲା
ସତ କହିଲୁ ବୋଲି ମୁଁ ତାହାକୁ କହିଲା ।
ବୋଇଲି ଚଳ ଏବେ ସପ୍ତଦ୍ୱୀପ ପୁଣ
ସକଳ ଗ୍ରାମରେ କର ତୁ ଭ୍ରମଣ ।
ମୋର ପୁତ୍ର ସ୍ତିରୀ ଯେ ପୁରୁଷ
ତେବେଯେ ତୋତେ ପୂଜା ସେବା କରିବେ ବିଶେଷ
ଯୋଗମାୟା ବୋଇଲେ ଶୁଣ ହେ ପ୍ରାଣନାଥ
କେଉଁ ରୂପେ ତାହାକୁ ମୁଁ କରିବି ଯେ ହତ
ମୁଁ ବୋଇଲି ଦଶରୂପ କର ତୁ ପ୍ରକାଶ
ସେଥିରେ ସମସ୍ତେ ହୋଇବେ ପୁଣ ହତ ।
ଶୁଣିଣ ଶାକମ୍ଭରୀ ହରଷ ହୋଇଲେ
ସକଳ ଗ୍ରାମରେ ଭ୍ରମଣ ଯାଇ କଲେ ।
ବାଳକ ବାଳିକେ ଦେହେ ପୁରୁଷ ଶରୀରେ
ପ୍ରକାଶ ହୋଇଲେ ଦେବୀ ଫଳର ସାଦୃଶ୍ୟରେ
ଅନେକ ସେଥିରୁ କ୍ଷୟ ଯିବା ଦେଖି
ଆରତ ହୋଇଲେ ସକଳ ଦେବ ସାଧି ।
ଆକୁଳ ହେବାରୁ ପ୍ରସନ୍ନ ଦେବୀ ହେଲେ
ଠାବେ ଠାବେ ବିଜେକରି ତାହାଙ୍କୁ କହିଲେ
ଶୁଣିଣ ସକଳ ଦେବ ସ୍ଥାପିଲେକ ପୁଣ
ତେବେ ସେ ବସନ୍ତ ରୂପ ଶାନ୍ତିହେଲେ ଜାଣ
ନିର୍ବତ ହେଲେ ପୁରୀ କରିବ ଉପଦ୍ରବ
ବୋଦା ପୋଡୁଅ ଛାଗଳ ଦେଲେକ ବହୁତ
ଭୟରେ ଦେବୀଙ୍କୁ ସମସ୍ତେ କଲେ ପୂଜାବିଧି
ସର୍ବ ଗ୍ରାମରେ ଦେବୀ ବିହରେ ଅବଧି ।
ଏମନ୍ତେ ସର୍ବଦିଗେ ରହେ ସ୍ଥଳକରି
ଗ୍ରାମ ଦେବତୀ ନାରୀ ବୋଲାଏ ମାୟା ନାରୀ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ
ସପ୍ତପୁରରେ ରହିଲେ ଦେବଗଣ ।
ତାଙ୍କର ତିନିରୂପ ନିଜରେ ଠୁଳ କଲେ
ସେଥିରେ କେଉଁ ଦେବୀ ନିଶ୍ଚଳେ ରହିଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ଗଉରୀ
ତାଙ୍କର ତିନିରୂପ ସମସ୍ତେ ଛନ୍ତି ପୁରି ।
ସଙ୍ଗରେ ତାଙ୍କର ଅଛଇ ମୁହିଁ ପୁଣ
ପାର୍ବତୀ ବୋଇଲେ ହେ ଏକଥା ଅଜାଣ ।
ଈଶ୍ୱର ବୋଇଲେ ତାଙ୍କର ଛାୟାରୂପ
ସପ୍ତପୁରରେ ରହିଲେ ଯାଇ ତ ।

ଏକରୁ ଅନେକ ରୂପ ସେ ଭିଆଣ କଲେ
ଦେବୀ ଯୋଗୀ ପିଶାଚୁଣୀ ସଙ୍ଗରେ ବିହରିଲେ
ପାର୍ବତୀ ବୋଇଲେ ଯେ ଜୟଦୁର୍ଗା ସାର
ସକଳ ଦେବୀ ସିନା ଅନୁଜ ତାହାର ।
ସେ ନାରୀ କିମ୍ପା ଯେ ଅନୁଜ ରୂପ ଭାବେ
ସେଥିରେ କଥା ମୋତେ କହ ଦେବେ ।
ଈଶ୍ୱର ବୋଇଲେ ତୁ ଶୁଣ ଭଗବତୀ
ସେଥିରେ କଥା ମୋତେ କହ ହେ ଝଟତି ।
ଏକ ଅଙ୍ଗ ଗୋଟି ମୁଁ ଦିଭାଗ କରିଅଛି
ତୋର ସଙ୍ଗେ ଭାଗ ତା ସଙ୍ଗେ ଅଧା ଅଛି ।
ଦୁଇନାରୀ ତୁମ୍ଭେ ଗୋ ଅଟ ପାଟବଂଶୀ
ଅନୁଜ ରୂପ ମୋର ଦେବୀ ସଙ୍ଗରେ ଦିନା ।
ଶୁଣିଣ ପାର୍ବତୀ ସନ୍ତୋଷ ମନ ହେଲା

× × ×

ବୋଇଲେ ପ୍ରାଣନାଥ ଶୁଣିଲି ଏଥର
ନିର୍ମାୟାରେ ମାୟା ଯହୁଁ ଅଛି ଯେ ତୋହର ।
ଈଶ୍ୱର ବୋଇଲେ ମୋହର ମାୟା ନାହିଁ
ତୋହର ଅଂଶରୁ ସିନା ଜାତ ଯେ ମହାମାୟୀ
ତୋହର ଅଂଶରୁ ଯେବେ ନଲଭନ୍ତି ତାଙ୍କୁ
ତାହାଙ୍କର ଆଶା ସିନା ଲାଗନ୍ତା ତୁମ୍ଭଙ୍କୁ ।
ଶୁଣିଣ ପାର୍ବତୀ ଯେ ସନ୍ତୋଷ ହୋଇଲେ
ଷଷ୍ଠ ଅବତାର କଥା କହ ହେ ବୋଇଲେ ।
ଯମଦଗ୍ନି ପୁତ୍ର ପର୍ଶୁରାମ ପୁଣ
ରେଣୁକା ନାମେ ଜନନୀ ଅଟେ ତାର ପୁଣ ।
ସହସ୍ରାର୍ଜ୍ଜୁନ ଯେ ପିତାଙ୍କୁ ନାଶିଲା
ମାତା ଯେ ସ୍ୱାମୀ ସଙ୍ଗରେ ଚଳିଗଲା ।
ମାତା ପିତା ଯିବାରୁ ଭାଳଇ ପର୍ଶୁରାମ
ପିତୃ ଋଣ ମୁହିଁ କେମନ୍ତେ ଶୁଝିବି ଜାଣ ।
ନାରାୟଣଙ୍କୁ ସୁମରନ୍ତେ ବାସୁଦେବ ସାହ
ଆପଣାର ଶରୀର ପର୍ଶୁରେ ଦେବେ ହେ ପ୍ରିୟ
ଗୋଲୋକ ବିଷ୍ଣୁ ଯେ ଅନନ୍ତ ବାସୁଦେବ
ଦୁହିଙ୍କର ଅଂଶରେ ପର୍ଶୁ ହେଲା ଦମ୍ଭ ।
ଦୁଇ ସାଗର ସିଂହର ପ୍ରାକର୍ମ ସେହି ବହି
ସେ ଯେତେ ଗୁମାନ ଈଶ୍ୱର କଲା ଯେ ରହି ।
ଈଶ୍ୱର ବୋଇଲେ ଗୋ ଶୁଣ ଭଗବତୀ
ଗାରିମା ସୁର ଯେ ଅଟଇ ପ୍ରଭୁ ମତି ।

ଧନୁ ଗଦା କୁଠାର ଧଇଲାକ କରେ
ବିକ୍ରମ ମୂର୍ତ୍ତି ଯେ ବହିଲାକ ଶିରେ ।
ସହସ୍ରାର୍ଜ୍ଜୁନ ଯେ ଅଟଇ ବଳବନ୍ତ
ଦୁଇଗୋଟି ପ୍ରାକର୍ମ ବହେ ସେତ ।
ବତିଶ କ୍ଷଉଣୀ ଅଟଇ ବଳତାର
ଶତେକ କୁମର ଯେ ବଳକେ ବଳିୟାର ।
ଗୋଟିଏ ସହସ୍ର ନାତି ଅଟନ୍ତି ବଳବନ୍ତ
ପଣନାତି ତାହାର ଲକ୍ଷକେ ସମ୍ଭୁତ ।
ବାଦ୍ୟକାର ତାହାର ସାତ କ୍ଷଉଣୀ
ସେନାପତି ଅଠଇ କ୍ଷଉଣୀ ପୁଣ ।
ଚାରିଶତ ଯୋଜନ ଅଟଇ ତାର ରାଜ୍ୟ
ପୁର ପାଟଣା ଗ୍ରାମ ଯେ ନର ସବୁ ଭଜ ।
ସହସ୍ରାର୍ଜ୍ଜୁନ ଯେ ଏଡ଼େକ ବଳବନ୍ତ
ନଦୀକୁ ଆଗୋଳିଲେ ଲେଉଟି ବହେ ସେ ତ ।
ସାମ ପାଟଣା ପୁରରେ ଯେତିକି ସୈନ୍ୟବଳ
ରାତ୍ର ଦିବସରେ ବୀର ବେଶ ଯେ ତାହାର ।
ଡାକିଦେଲେ ଠୁଳ ଯେ ହୁଅନ୍ତି ସେହିକ୍ଷଣି
ଫୁଙ୍କି ଦେଲେ ବୁଲି ଆସିବେ ମେଦିନୀ ।
ଏମନ୍ତ ସଜରେ ଯେ ରଖିଛି ସୈନ୍ୟବଳ
ମେଳ ହେଲା ବେଳେ ଯେସନେ ସାଗର ।
ଗୋଳ ହେଲାବେଳେ ଉଛୁଳି ଚଳେ ଯେହ୍ନେ
ତେସନକ ପରାଏ ଦିଶନ୍ତି ତେଜବନ୍ତେ ।
ଶସ୍ତ୍ରମାନ ବିନ୍ଧିଲେ ଦିଶଇ ଅନ୍ଧାର
ଡାକ ହାତରେ ମେଦିନୀ କମ୍ପଇ ଥର ହର ।
ଧନରେ କୁବେର ଯେ ଧନରେ ବହୁଳ
ଦେଖିଲେ ଦେବତାଏ ଅଛନ୍ତି ସ୍ୱର୍ଗପୁର ।
ପାତାଳେ ବାସୁକୀ ସେ ଡରଇ ତାହାକୁ
ପ୍ରତିଦିନ ମେଘ ବରଷେ ରାଜ୍ୟକୁ ।
ବାରମାସ ଡରିଣ ଚନ୍ଦ୍ର ଶସ୍ୟ ଦିଏ
ପ୍ରତିଦିନ ନିର୍ମାଣ କରଇ ସେହି ରାଏ ।
ସହସ୍ରେ ନାରୀ ଯେ ରୋହିଣୀ ପାଏ ଶୋଭା
ପ୍ରତିଦିନ ରତିରଙ୍ଗ କରଇ ସେହୁ ରାଜା ।
ଅପସରୀ କିନ୍ନରୀ ପକ୍ଷରେ ଥରେ ଆସି
ବରଷକେ ଥରେ ସେ ନାରୀ ବିଭା ହୁଏଟି ।
ସହସ୍ରେ ନାରୀଙ୍କୁ ବିଭା ହୁଏ ଜାଣ
ଯୁବାରୂପ ପ୍ରକାଶେ ନାରୀମାନେ ପୁଣ ।

ସେ ରାଜା ଦିଶନ୍ତି ଯେ ମଦନ ସାଦୃଶ୍ୟ
ବିରଞ୍ଚି ନାରାୟଣ ଅଂଶରୁ ସେ ଜାତ
ପାଞ୍ଚଘଡ଼ି ପର୍ଯ୍ୟନ୍ତ ପ୍ରତିଦିନ ଦାନ
ଦୁଃଖୀ ଦରିଦ୍ର ଦେଖି ତୋଷ କରେ ମନ
ଦ୍ୱିଜବର ଦାନ ଦରିଦ୍ର ଯେ ଦେଇ
ପୋଢୁଅ ଛାଗଳ ଦେଇ ଦେବୀଙ୍କୁ ବୋଧାଇ
ବୀର ବେଶ ହୋଇଣ ପାରିଧି କରେ ନିତ୍ୟ
ସେ ରାଜାଙ୍କୁ ଡରିଲେ ଅସୁର ସମସ୍ତ ।
ଚାରି ରାବଣକୁ ସେ କଲାକ ବଳି ପୁଣ
ଲକ୍ଷ ରାଜାଙ୍କୁ ଧରି ଆଣିଲେ ବହନ ।
ନିବିଡ଼ ଅନ୍ଧାର ପୁରରେ ବନ୍ଦି କଲା
ନିଆଳି ପକାଇ ନିର୍ବନ୍ଧେ ରଖିଲା ।
ଆରତରେ ରାଜାମାନେ ସୁମରେ କୁଶପାଣି
ଜାଣିଣ ବେଦବର ସେ ସ୍ଥାନକୁ ଗଲେ ପୁଣି
ଅର୍ଜ୍ଜୁନଙ୍କୁ କହିଣ ରାଜାଙ୍କୁ ଛାଡ଼ କଲେ
ବର୍ଷକ ଥରେ ଦେଖା ହେବ ବୋଇଲେ ।
ଧନ ରତ୍ନ ଦେଇଣ ଏହାଙ୍କୁ ବୋଧିବ
ତେବେ ତୁମ୍ଭେମାନେ ନିଶ୍ଚିନ୍ତେ ରହିବ ।
ଶୁଣିଣ ସକଳ ରାଜା ସନମତ କଲେ
ଯେ ଯାହାର ସ୍ଥାନକୁ ଚଳି ପୁଣ ଗଲେ ।
ରାଜାଗଣ ଯିବାରୁ ବେଦବର କହି
ଚାରି ରାବଣକୁ ଯେ ଛାଡ଼ି ଦିଅ ତୁହି ।
ଅର୍ଜ୍ଜୁନ ବୋଇଲେ ନକହ ମୋତେ ତାହା
ସେ ଦୈତ୍ୟ ଅଟନ୍ତି ବିଷ୍ଣୁରେ ଦୋରେହା ।
ତପ କଲା ଲୋକଙ୍କୁ ସେ ଯେ ମାରିଣ ଖାଇ
କିଛି ଦିନ ବନ୍ଦିରେ ଥାଆନ୍ତୁ ଯେ ରହି ।
ବିଧାତା ବୋଇଲେ ଆଉ ନକହ ସେ କଥା
ଆର ବେଳ ହେଲେ କରିବ ରାଜା ପୁତ ।
ଅଜା ନାତି ଦୁହିଁଙ୍କୁ ବନ୍ଦିରୁ ଅଣାଇଲା
ଶୁଣିଣ ସହସ୍ରାର୍ଜ୍ଜୁନ ମନ ତୋଷ ହେଲା ।
ବୋଇଲେ ବେଦବର ସେମାନଙ୍କୁ ଆଣ
ଅର୍ଜ୍ଜୁନ ବୋଇଲେ ଆଉ ନକର ଭିଆଣ ।
ତୁମ୍ଭେ ତ ଜଣକୁ ଆଗେ ଦେଲ ବର
ଏହାଙ୍କୁ ଘେନିକରି ତୁମ୍ଭେ ଏବେ ଚଳ ।
ଶୁଣିଣ ବେଦବର ତାହାଙ୍କୁ ଘେନି ଚଳି
ବେଦବର ବୋଇଲେ ଶୁଣରେ ଦୈତ୍ୟବଳି ।
ଅଧର୍ମ ନକରିଣ ଧର୍ମରେ ତୁମ୍ଭେ ରହ
ଦୁଇ ବେଳଜିଣିଲା ତୋତେ କାର୍ତ୍ତିକେଶ୍ୱରପୁଅ
ଆର ବେଳେ ତା ପାଶେ ନଯିବୁରେ ତୁହି
ଅମର ହୋଇଲେ ତୋତେ ମାରିବଟି ସେହି
ଏତେ କହି ଲଙ୍କାଗଡ଼େ ଛାଡ଼ି ଅଜା ନାତି
ଯଶୋବନ୍ତୀ ପୁରକୁ ବିଧାତା ଚଳିଯାନ୍ତି ।
ନିଜପୁରେ ପ୍ରବେଶ ହୋଇଲେ ବେଦବର
ଗାୟତ୍ରୀ ସାବିତ୍ରୀ ଆସି ଅର୍ଘ୍ୟ ଦେଲେ ଶିର
ପହଣ୍ଡ ମଣାଇ ଭିତରକୁ ନେଲେ ବେଗ
ସନ୍ଧ୍ୟା ତର୍ପଣ ଯେ କରନ୍ତି ବାସୁଦେବ ।
ଚାରିଦ୍ୱାରେ ଚାରିବେଦ ଗାୟନ କଲେ ଦେବ
ବେଦ ଅଧୟନ କରି ଭୋଜନ କଲେ ପୁଣ ।
ଆଚମନ ସାରିଣ ଭୁଞ୍ଜିଲେ ଗୁଆ ପାନ

× × ×

ସୁପାତୀ ପଲଙ୍କରେ ଶୟନ ଦେବ କଲେ
ଏମନ୍ତ ଚରିତ ଶୁଣ ଗୋ ଦେବୀ ଭଲେ ।
ପାର୍ବତୀ ବୋଇଲେ ଶୁଣ ବିଶ୍ୱନାଥ
ସେ ଦୁଇ ରାବଣ କେମନ୍ତେ ହେଲେ ସେଥ ।
ଈଶ୍ୱର ବୋଇଲେ ଯେ ଶୁଣ ଭଗବତୀ
ସେ ଦୁଇ ରାବଣଙ୍କୁ ରଖିଛି ଅଜାମ୍ୱର ନାତି ।
ଶତେମୁଖା ରାବଣ ଯେ ଆରତ ଜନେ ହେଲା
ପବନ ଦେବତାଙ୍କୁ ସୁମରଣା କଲା ।
ମରୁତ ନିଜପୁରେ ଜାଣିଲେ ତାହା ପୁଣ
ସୁରଥ ରାଣୀ ଘରକୁ ଡାକିଲେ ବହନ ।
ବୋଇଲା ମର୍ତ୍ତ୍ୟପୁରକୁ ଯାଉଅଛି ମୁହିଁ
ଚିନ୍ତା ତୁ ନକରିବୁ ଆସିବି ବେଗ ହୋଇ ।
ଏତେ କହି ବାହନ ଉପରେ ବିଜେ କଲେ
ସହସ୍ରାର୍ଜ୍ଜୁନ ଆଗରେ ଯାଇଣ ମିଳିଲେ ।
ଦେଖିଣ ଅର୍ଜ୍ଜୁନ ଓଳଗି ଆସି ହୋଇ
ପାୟଡ଼ ପାରିଣ ଶୋଇଲେକ ସେହି ।
ଉଠି କର ଯୋଡ଼ିଣ ଆଗରେ ଉଭା ହେଲା
ଅଗରୁ ଚନ୍ଦନ ପ୍ରାଏ ବାସ କରେ ତ୍ୱରା ।
ଅର୍ଜ୍ଜୁନ ବୋଇଲେ ଶୁଣ ଦେବ ପୁଣ
କି କାର୍ଯ୍ୟ ମୋର ପୁରେ ବିଜୟେ ଆପଣ ।
ପବନ ବୋଇଲେ ଶୁଣ ହେ ରାଜନ
ଜୟନ୍ତ ମୁନିପୁତ୍ର ଅଟେ ସହସ୍ରାର୍ଜ୍ଜୁନ ।

ନଜାଣିଲେ ସେ ତାର ସଙ୍ଗରେ ବିବାଦୀ
ରଣରେ ନପାରି ହୋଇଲା ଏବେ ବନ୍ଦି ।
ଆକୁଳରେ ସେ ମୋତେ ସୁମରଣା କଲା
ସେ କଥା ମୋ କର୍ଣ୍ଣେ ଶବଦ ଶୁଭିଲା ।
ତେଣୁକରି ତୋରପୁରେ ଅଇଲି ଦାନମାଗି
ଶତେମୁଖା ରାବଣକୁ ଦେଲେ ଦେବୀ ।
ନଦେଲେ ଶ୍ୟାପ ଦେବୀ ଦେଲେ ମୁଁ ସନ୍ତୋଷ
କ୍ରୋଧ ନକର ମୋତେ କାର୍ତ୍ତିକେଶ୍ୱରପୁତ୍ର ।
ସହସ୍ରାର୍ଜ୍ଜୁନ ବୋଇଲା ତୁମ୍ଭେ ଏବେ ଶୁଣ
ଅସୁରକୁ ବରଦେଇ କହନ୍ତି ବଡ଼ପଣ ।
ଦେବତାଙ୍କୁ ଦଣ୍ଡଦେଲେ ଋଷିଙ୍କୁ ଖାନ୍ତିପୋଡ଼ି
ସେ ଦୋଷରେ କାରେଣୀ ତୁମ୍ଭେମାନେପଡ଼ି ।
ଏକାଜଣେ ବଞ୍ଚାଇଣ ଅନେକ ଜୀବ ମାରି
ନୋହିଲେ ଦେବତାଙ୍କୁ ଅସୁର ମାରେ ଦଳି ।
ଦୈତ୍ୟର ରାଗ ଅଛି ମୁଖରେ ନାହିଁ ଲାଜ
ବାସୁଦେବଙ୍କୁ ତେଜ୍ୟାକରି ଭଜ ଅସୁର ରାଜ
ଦଶଗ୍ରୀବ ବନ୍ଦିରେ ସକଳ ଦେବ ରହି
ତାରଠାରେ ପ୍ରଜ୍ୱଳିଣ ନୋହିଲେ ଯେ କେହି
ନାଗରାଜା ମୋତେ ଦେଖି କରଇ ଗର୍ଜ୍ଜନ
ତୁହି ଆଜ ମୋର ପୁର ଦେଖିଲ ଯାଇପୁଣ ।
ମରୁତ ଦେବତା କରଣକରି ଜଣେ ମୁଁ ରୋପିବି
ମରିବିତ ମହିମା ବିଖ୍ୟାତ କରି ଯିବି ।
ଏତେ ବୋଲି ସହସ୍ରାର୍ଜ୍ଜୁନ କୋପ ବଡ଼
ଧନୁ କମାୟଣ ଧରି ବସିଲା ରଥର ।
ଅର୍ଜ୍ଜୁନର ତେଜ ଦେଖି ରବି ପଳାଇଲେ
ମେରୁ ଉହାଡ଼ରେ ଯାଇ ଗୁପତେ ରହିଲେ ।
ଶୂନ୍ୟରେ ଚନ୍ଦ୍ରଗଲେ ତାରାଗଣ କେଣେ
ନିବିଡ଼ ରଜନୀ ଆସି ହୋଇଲା ରଣେ ।
ମରୁତ ବିଚାରିଲା ଏ ରାଜାର ବଡ଼ ଟାଣ
ମୋହର ଆଗରେ ଚଢ଼ିଲା ରଥ ଜାଣ ।
କରିବି ରଣ ମୁଁ ଯେ କେମନ୍ତେ ମୋତେ ଜିଣେ
ସକଳ ଜୀବଙ୍କ ପ୍ରାଣ ଅଟଇ ମୁଁ ତେଣେ ।
ଏତେ କହି ଅତୁଟ ବିମାନେ ବିଜେକଲା
ଧନୁ କମାୟଣ କରରେ ଧରିଲା ।
ବୋଇଲା ତୋର ମୋର କରିବା ସମର
ଦେଖିବା କେତେବେଳେ କହୁରେ ନୃପବର ।

ଶୁଣିଣ ସହସ୍ରାର୍ଜ୍ଜୁନ କ୍ରୋଧରେ ଜର ଜର
ପୁଷ୍ପକ ବିମାନ ରଥରୁ ଓହ୍ଲାଇ ସତ୍ୱର ।
ଅତୁଟ ବିମାନ ଉପରେ ଯାଇ ଚଢ଼ି
ପବନକୁ ଧରିଣ ବାନ୍ଧଇ ଯତ୍ନକରି ।
ଚରଣ ହସ୍ତ ଶରୀର ବନ୍ଧନ କଲା ପୁଣି ।
ପୁଣି ଏ ସରି ଆଣିଲା ରଥ ଉପରେ ଜାଣି ।
ଚନ୍ଦ୍ର କାରଣ ପୁରରେ ରଖିଲା
ଚଉଦ୍ୱାର ନିର୍ବିକାର ତତକ୍ଷଣେ ହୋଇଲା
ନ ବୁହେ ପବନ ପୁଣ ସପ୍ତପୁରେ ସ୍ଥିର
ଦେଖିଣ ଦେବତାଏ କରନ୍ତି ବିଚାର ।
ବେଦବର ଆଗରେ ଯାଇଣ ଜଣାଇଲେ
ତ୍ରିପୁର ଅସମ୍ଭାଳ ହୋଇଲା ଦେବ ବୋଲେ ।
ଶୁଣିକରି ବେଦବର ବହନ ଚଳିଗଲେ
ହୁଏକାର ରାଜ୍ୟରେ ଯାଇଣ ମିଳିଲେ ।
ରାଜାର ସିଂହଦ୍ୱାରେ ମିଳିଲେ ବେଦବର
ବ୍ରହ୍ମାଙ୍କୁ ଦେଖିଣ ନମ୍ର ହୋଇଲା ଆଲୋକ ।
ରାଜାର ଆଗେ ଯାଇ ଦୂତ ଜଣାଇଲେ
ତୋହର ସିଂହଦ୍ୱାରେ ବେଦବର ବିଜେକଲେ
ଜଗତୀର ଉପରେ ବସିଥିଲା ରାଜା
ବେଗେ ଉଠି ଆସିଲା ଧନରେ ଧଇର୍ଯ୍ୟ ।
ସିଂହଦ୍ୱାରେ ଆସି ହେଲେ ପରବେଶ
ନମସ୍କାର କଲେ ସେ ହୋଇଲେ ତୋଷଚିତ୍ତ
ବେଦବର ବୋଇଲେ ରାଜା ହେଲକି ଅଜ୍ଞାନ
ଅସୁର ସଙ୍ଗରେ ବନ୍ଦି ଦେବତାଙ୍କର ପୁଣ ।
ଅର୍ଜ୍ଜୁନ ବୋଇଲେ ଦେବ କର୍ତ୍ତା ତୁମେ ଶୁଣ
ମୋତେ ଚଦିଲା ଆସି ମରୁତ ପବନ ।
ବୋଇଲେ ଅସୁରକୁ ବେଗେ ଦିଅ ଛାଡ଼ି
ନୋହିଲେ ମୁଁ ଶାପଦେବି ଯିବୁ ତୁହି ପୋଡ଼ି
ରାବଣ ଦୈତ୍ୟ ଘରରେ ଯେଉଁ ବଳି ପୁଣ
ମଳାକାର ହୋଇ ଖଟାଏ ଗନ୍ଧ ଜାଣ ।
ସେ ପୁଣ ମୋତେ ଆସି ଗରବେ କହିଣ
ବୋଇଲେ ଶତେମୁଖା ଅଟଇ ମୋର ପ୍ରାଣ ।
ଶୁଣିକରି ବିଚାର ମନରେ ମୁହିଁ କଲି
ମୃତ୍ୟୁ ପରେ ଜନ୍ମି ମରିବି ବିଚାରିଲି ।
ପବନକୁ ଯାଇଣ ବାନ୍ଧିଲି ଯତ୍ନକରି
ବୋଇଲେ ମରୁତରେ ପଳାଅ ମୋତେ ମାରି

ଏମନ୍ତ ବିଚାରି ମୁଁ ରଖିଛି ବନ୍ଦିରେ
କିସ କହୁଛ ଦେବୀ କହ ଯେ ମୋହରେ ।
ବେଦବର କହନ୍ତି ବନ୍ଧନ ବେଗେ ଫେଡ଼
ସପ୍ତ ଦେବତାଙ୍କୁ ବାରେକ ଉଦ୍ଧାର ।
ଶୁଣିଣ ସହସ୍ରାର୍ଜ୍ଜୁନ ବେଗେ ଚଳିଗଲା
ମରୁତ ଦେବତାର ବନ୍ଧନ ଫେଡ଼ିଦେଲା ।
କରେ କର ଧରିଣ ଆଣଇ ବେଗ କରି
ବିଧାତାର ଆଗରେ ମିଳଇ ଦଣ୍ଡଧାରୀ ।
ମରୁତକୁ ଦେଖିଣ ଯେ ଦଇବ ଉଷତ
ବୋଇଲେ ରାଜାଠାରେ କିମ୍ପାଇ ଟାଣ କୃତ୍ୟ
ମରୁତ ବୋଇଲା ଅନ୍ୟାୟ ରାଜା କଲା
ଦାନ ମାଗିବାରୁ ମୋତେ ଧିକ୍କାର ବୋଇଲା ।
ବେଦବର ବୋଇଲେ ଶୁଣ ସହସ୍ରାର୍ଜ୍ଜୁନ
ଶତେମୁଖା ରାବଣ ଦିଅ ଯେ ରହୁ ମାନ୍ୟ ।
ଶୁଣିଣ ସହସ୍ରାର୍ଜ୍ଜୁନ ଦୈତ୍ୟକୁ ଆଣି ଦେଲା
ପବନ ଦେବତାକୁ ଦଇବ ସମର୍ପିଲା ।
ବେଦବର ବୋଇଲେ ଶୁଣରେ ଶତଗ୍ରୀବ
ଆଉବେଳେ ଉପଦ୍ରବ ନକରି ହୁଅ ଦମ୍ଭ ।
ଆଉ ବେଳେ କାର ସଙ୍ଗେ କରିବୁଯେବେ କଳି
ନିଶ୍ଚୟେ ଦଶଦିଗକୁ ଦେବ ସୀମା ବଳି ।
ଏମନ୍ତ ବଚନ ଯେ ଶତେ ମୁଖା ଶୁଣି
ବେନିଜନ ଚରଣେ ଓଳଗ ହେଲେ ପୁଣି ।
ଅଡୁଟ ବିମାନରେ ଯାଇଣ ବିଜେ କଲେ।
ଅଲଙ୍କା ଗଡ଼କୁ ସେ ବେଗେ ପଳାଇଲା ।
ନିଜ ଆଶ୍ରମେ ଯାଇ ପ୍ରବେଶ ହେଲା ଶତଗ୍ରୀବ
ବିଚାରିଲା ପବନ ରଖିଲା ମୋର ଜୀବ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ପବନରେ ବେଦବର ଚଳିଲେ କହି କରି ।
ଅଗ୍ରତେ ଗମନ କରିଯାନ୍ତେ ପୁଣ
ପବନ ପଚାରଇ ଦେବବ୍ରହ୍ମା ଶୁଣ ମୋ ବଚନ
ସହସାର୍ଜ୍ଜୁନକୁ ମାରିବ କେହୁ ପୁଣି
ସେ କଥା ମୋର ଆଗେ କହିବ ପରମାଣି ।
ବିଧାତା ବୋଇଲେ ଶୁଣ ମରୁତରେ ଏବେ
ସହସ୍ରାର୍ଜ୍ଜୁନକୁ ମାରିବେ ବାସୁଦେବେ ।
ଷଷ୍ଠ ଅବତାର ହୋଇବେ ଋଷି ଘରେ
ଯମଦଗ୍ନି କୁମର ହୋଇବ ସେ ବେଳେ ।

ରେଣୁକା ଗର୍ଭରେ ହୋଇବେ ସମ୍ଭବ
କାର୍ତ୍ତିକଶ୍ୱର ଦନୁଜ ତେବେ ନାଶ ଯିବ ।
ଶୁଣିକରି ମରୁତ ନିଜ ସ୍ଥାନେ ଗଲା
ନିଜ ମନ୍ଦିରରେ ଯାଇଣ ପ୍ରବେଶ ହୋଇଲା ।
ଯଶୋବନ୍ତୀ ପୁରରେ ମିଳିଲେ ବେଦବ୍ରହ୍ମା
ସସ୍ରାର୍ଜ୍ଜୁନର ଦେଖିଲେ ଗାରିମା ।
ପାର୍ବତୀ ବୋଇଲେ ଶୁଣ ପ୍ରାଣନାଥ
ସହସ୍ରା ମୁଖକୁ ବନ୍ଦିଲେ ରଖିଛି ଅର୍ଜ୍ଜୁନତ
ସେ ଦୈତ୍ୟକୁ ସେହି ଯେ ଉଦ୍ଧାର କରିନେଲା
ସେ କଥାକୁ ମୋହ ଆଗେ କହ ଦେବପରା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସହସ୍ରାମୁଖା ରାବଣ ବନ୍ଦିରେ ପଡ଼ିଅଛି ।
ତିନି ମାସ ପନ୍ଦର ଦିନ ବହିଗଲା
ଦନୁଜର ମନରେ ବିକଳ ବଡ଼ ହେଲା ।
ବିଚାରିଲା ଏ କଷ୍ଟ କେ କରିବ ପାରି
ଆଜ ଦିନେ କାର ସଙ୍ଗେ ନୋହିବ ଭାଗୁଆଳି
ଏମନ୍ତ ବିଚାରି ସେହି ମୋତେ ସ୍ତୁତି କଲା
ଶତେବାର ପର୍ଯ୍ୟନ୍ତ ବିନୀତି ହୋଇଲା ।
ତାହାର ଆରତ ଜାଣିଲି ମୁହିଁ ପୁଣି
ବୃଷଭ ଚଢ଼ିଣ ମୁଁ ଗମନ କଲି ଜାଣି ।
ହୟଦ୍ୱୟ ରାଜ୍ୟରେ ହୋଇଲେ ପ୍ରବେଶ
ସହସ୍ରାର୍ଜ୍ଜୁନ ବୀର ସିଂହଦ୍ୱାର ପାଶ ।
ଅନ୍ତଃପୁରରେ ପ୍ରବେଶ ହୋଇଲି ଯାଇ ପୁଣ
ତାହାର ରାଣୀହଂସ ଦେଖିଣ ମୋତେ ଜାଣ ।
ସହସ୍ରେ ନାରୀ ତାର ଅଇଲେ ବେଗ ହୋଇ
ମୋହର ଚରଣରେ ପାଏ ପଡ଼ି ଶୋଇ ।
ଉଠିଣ କର ଯୋଡ଼ି ଅର୍ଘ୍ୟ ବନ୍ଦାଇଲେ
ମଙ୍ଗଳ ଆଳତୀ ଧୂପ ମୋତେ ଦେଲେ ।
ମୁଁ ବୋଇଲି ତୁମ୍ଭର ରାଜା ଅଛି କାହିଁ
ତୁମ୍ଭର ମାନ୍ୟ ଧର୍ମ ସନ୍ତୋଷ ମୋର ଦେହି ।
ନାରୀମାନେ କହିଲେ ଶୟନ କରିଛନ୍ତି
ତୁମ୍ଭେ ଆସିବାର ତ ନଜାଣ ନରପତି ।
ମୁଁ ବୋଇଲି ତାହାଙ୍କର ନିଦ୍ରା ଭାଙ୍ଗି ଆଣ
ଶୁଣିକରି ପାଟରାଣୀ ଚଳିଲେ ବହନ ।
ରାଜାର ଶୟନ ସ୍ଥାନରେ ଯାଇ ମିଳି
ପଲଙ୍କରୁ ସ୍ୱାମୀଙ୍କ ତୋଳିଲା ବେଗକରି ।

ବୋଇଲା ପ୍ରାଣନାଥ ଅଚିନ୍ତା କିମ୍ପା ବେଉ
କେତେ ନିଦ୍ରା ଯାଉଛୁ ଚେତା ନ ରହଇ
ରାଜନ ହୋଇଲେ କି କାର୍ଯ୍ୟ ଅଛି ତୋର
ପାଟରାଣୀ ବୋଇଲେ ନିଜେ ତ୍ରୈଲୋକ୍ୟଈଶ୍ୱର
ଶୁଣିଣ ସହସ୍ରାର୍ଜୁନ ଅସମ୍ଭାଳ ହେଲା
ଭୋଳା ଲିଙ୍ଗ କିମ୍ପାଇ ମୋ ପୁରେ ବିଜେକଲା
ବନ୍ତରେ ତୀରଣ ଯୋଗ କରେ କୋଠର
କର ଯୋଡ଼ି ରାଜନ ଆସଇ ଧୀର ଧୀର ।
ଆଗରେ ସେବତୀ ରାଣୀ ପଛରେ ଅର୍ଜୁନ
ପ୍ରବେଶ ହେଲେ ଆସି ମୋହର ଛାମୁରେଣ ।
ପାହାଡ଼ା ପଡ଼ିଣ ଓଳଗି ମୋତେ ହେଲା
ନମସ୍କାର କରିଣ ବଚନ ପୁଛିଲା ।
ବୋଇଲା ମୋର ଅଙ୍ଗେ ଯେତକ ପାପ ଥିଲା
ତୁମ୍ଭର ଦର୍ଶନେ ସମସ୍ତ କ୍ଷୟ ଗଲା ।
କେଉଁ କାର୍ଯ୍ୟ ମୋର ପୁରେ ଅଇଲେପଞ୍ଚାନନ
ମୁଁ ବୋଇଲି ବନ୍ଦି କଲୁ ସହସ୍ରାଗ୍ରୀବ ପୁଣ ।
ଆଗେ ତାକୁ ବର ଦେଇଣ ଅଛି ମୁହିଁ
ମୋହର ବରରେ ସେ ଜଗତେ ଜିଣଇ ।
ମୋରଠାରୁ ଶୁଣିଣ ସହସ୍ରାର୍ଜୁନ
ତୁମ୍ଭର ବରରେ ପ୍ରବଳ ସେହୁ ପୁଣ ।
ଦେବଙ୍କୁ ପାଦତଳେ ଖଟାଏ ଧରି କରି
ତପିମାନଙ୍କୁ ମାରି କରଇ ପୋଡ଼ା ବଳି ।
କାହାକୁ ନ ମାନଇ ବିଲଙ୍କା ଗଡ଼େଶ୍ୱର
ଦେଖିଣ ତାହାକୁ ଡରିଲେ ସୁରବର ।
ଭୟଙ୍କର ମୂର୍ତ୍ତି ସହସ୍ରେ ମୁଖ ତାର
ଚାରି ପାଖରେ ମୁଖ ହୋଇଛି ବିସ୍ତାର ।
ତଳି କାହେଣ ଦୁଇପଣ ଚକ୍ଷୁ ତା ବିଶେଷ
ଏହି ଗଣନାରେ ହସ୍ତ ହୋଇଛି ପ୍ରକାଶ ।
ମୁର୍ଦ୍ଧନି ଗୋଟି ତାର ବତିଶ ଯୂଣ ପୁଣ
ଶୋଇଲା ମନ୍ଦିର ଜାଣ ପର୍ବତ ସମାନ ।
ଛିଡ଼ା ହେଲେ ଦିଶଇ ମେରୁର ଆକାର
ଏଡ଼େ ଦୈତ୍ୟଠାରେ ଦୟା ଯେ କିମ୍ପାତୋର
ବଳଗ୍ର ମହାସେବା ହର ପାର୍ବତୀ ଚରଣେ
ନୀଳାଚଳ ନାଥ ରଖହେ ପ୍ରସନ୍ନେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଏମନ୍ତ ବଚନ ସେ ପଚାରେ ନରପତି ।

ମୁଁ ବୋଇଲି ଶୁଣରେ କାର୍ତ୍ତିକଶ୍ୱର ପୁତ୍ର
ତୋହର ହସ୍ତ ନାମରେ ବିଶାଖାର ସୁତ ।
ଦିଅ ଛାଡ଼ି ଯାଉ ଯେ ଦୈତ୍ୟକୁଳ ରାଜ
ଜିଣିଲୁ ତାଠାରେ ଅଛି କେଉଁ କାର୍ଯ୍ୟ ।
ଆଉବେଳେ ଯେବେ ଆସିବ ତୋର ପାଶେ
ନିଶ୍ଚୟ ତୁ ମାରିବୁ କହିଲି ବିଶେଷେ ।
ଶୁଣିକରି ଅର୍ଜୁନ ଶିରେ କର ଦେଲା
ମୋହର ଛାମୁରୁ ଯେ ବେଗେ ଚଳିଗଲା ।
ବିଶାଖା ଆଣିଲା ଯାଇ କରି
ମୋହର ଛାମୁରେ ସେ ଦେଲା ଆଣିକରି ।
ବୋଇଲା ତୁମ୍ଭ ଯୋଗେ ଛାଡ଼ିଲି ଏ ବେଳ
ଆଉବେଳେ ଅଇଲେ କରିବି ନାରଖାର ।
ଅର୍ଜୁନର ବଚନ କର୍ଣ୍ଣରେ ଶୁଣିଣ
ବିଶାଖାର ନନ୍ଦନକୁ କହିଲି ବଚନ ।
ବୋଇଲି ଆଉବେଳେ ନ ଆସିବୁ ତୁହି
ଅଇଲେ ବାବୁରେ ମୋର ଆୟ ନୋହି ।
ଶୁଣିଲ ସହସ୍ର ଗ୍ରୀବ ବୋଇଲା ବଚନ
ହାରିବାର ସ୍ଥାନକୁ ଆସିବ କିମ୍ପା ପୁଣ ।
ମୁଁ ବୋଇଲି ନିଜରାଜ୍ୟ ଯାଆ ତୁ ବେଗେ
ଶୁଣିଣ ବିଶାଖା କୁମର ହେଲା ଆଗେ ।
ଶତବାର ପର୍ଯ୍ୟନ୍ତ ଓଳଗି ସେ ହୋଇଲା
ଅସୁର ରଥର ଉପରେ ବସିଲା ।
ବିଲଙ୍କା ଗଡ଼କୁ ବେଗେ ଗଲା ଚଳି
ନିଜ ରାଜ୍ୟେ ମିଳିଲା ଅସୁର ମହାବଳୀ ।
ଏମନ୍ତେ ଚାରି ରାବଣ ଜିଣିଲା ଅର୍ଜୁନ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ଈଶାନ ।
ସେ ଅର୍ଜୁନ କିସ କଲା କହ ମୋତେ
କେଉଁ ଲୋକମାନଙ୍କୁ ସେ ଜିଣିଲା ଯୁକତେ ।
ମୁଁ ବୋଇଲି ଏବେ ଶୁଣ ଗୋ ଦେବୀ ତୁହି
ଅର୍ଜୁନର ବଚନ ଶୁଣ ଗୋ ଏବେ ସହି ।
ପ୍ରଥମେ ଜମ୍ବୁଦୀପ ଦିଗବିଜେ କଲା
ଦୁଷ୍ଟ ଜନ ମାରିଣ ଯେ ସ୍ଥାନକୁ ରଖିଲା ।
ରାଜାଗଣ ଜିଣିଲା ସେ ହେଲା ଦିଗଶୀଳ
ଲକ୍ଷରାଜା ଜିଣିଲା ଆପଣା ଭୁଜବଳ ।
ବେତାଳ ଦେବୀମାନଙ୍କୁ ଜିଣିଲାଟି ପୁଣ
ଯେ ବିଧି କପି ସଙ୍ଗେ କଲାକ ଯାଇରଣ ।

ରଣେ ସେ କପିକ ହାରିଲା ନୃପତି
ଜମ୍ବୁଦ୍ୱୀପେ ପାମର ଭୂପତି ।
ପାର୍ବତୀ ବୋଇଲେ ଶୁଣ ପଞ୍ଚାନନ
ଅରଣ୍ୟବାନର ସଙ୍ଗେ ଅର୍ଜୁନର କିମ୍ପାକଳିପୁଣ
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଯହିଁ ପାଇଁ କଲେ ସେ କଥା ଶୁଣିବଟି ।
ଯୌଳିଧି ବାନର ତ୍ରୋକଟ ବନେ ଥିଲା
ସେହି ବନେ ଅର୍ଜୁନ ପ୍ରବେଶ ଯାଇହେଲା ।
ଚତୁରଙ୍ଗ ବଳ ତା ସଙ୍ଗରେ ଛନ୍ତି ପରା
ଯୌନିଧି ନୃପତି ସୈନ୍ୟ ଦେଖି ଭୟ କଲା ।
ରଜନୀରେ ସେ ବନରେ ରହିଲେ ସମସ୍ତେ
ଫଳ ମୂଳ ସେ ବନରୁ ଭୁଞ୍ଜି ତୋଷଚିତ୍ତେ ।
କନ୍ଧ ଶଉରା ମେଧା ଅନେକ ତାର ସଙ୍ଗ
ସେକାଳେ ବାନରିକୁ କଲେ ପ୍ରାଣେ ବଧ ।
ଲକ୍ଷକ ବାନର ଯେ ସେ ବନରୁ ମାରି
ଭୟରେ ପଳାଇଗଲେ ସମସ୍ତେ ଛାଡ଼ିକରି ।
ତାହାଙ୍କର ନୃପତି ଯେ ଯୌନିଧି ବାନର
ତାର ଆଗେ କହିଲେ ଯାଇ ସକଳ ବାନର ।
ଶୁଣିଣ ଯୌନିଧି ବାନର ଘେନି ଚଳି
ତ୍ରୋକଟ ବନ ଭିତର ଦେଖିଲେ ରିପୁବୈରୀ
ସହସ୍ରାର୍ଜୁନ ଯେ ଚଢ଼ିଅଛି ଯାନ
ଅନେକ ବଳ ଯେ ସଙ୍ଗରେ ଛନ୍ତି ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଆଗେ କଳି ଆରମ୍ଭିଲେ ସହସ୍ରାର୍ଜୁନ ନୃପତି
ଦେଖିକରି ନଳରାଜା ବୋଇଲା ସୈନ୍ୟଙ୍କୁ
ମାରନ୍ତେ ହସ୍ତୀ ଘୋଡ଼ାଙ୍କର ଯେ ଲୋକଙ୍କୁ ।
ଶୁଣିଣ କପିବଳ ଶିଳାବୃକ୍ଷ ଧରି
ଆଗୋଳି ହସ୍ତୀ ଘୋଡ଼ା ସୈନ୍ୟ ବଧ କରି ।
ସିଂହ ରଡ଼ିଦେଇ ଗର୍ଜିଲେ କପି ପଲ
ଉପ୍ରୋଧ ନ କରି ସେ ଫିଙ୍ଗିନ୍ତି ପଥର ।
ବୃକ୍ଷମାନ ଉପାଡ଼ି ମାରନ୍ତି ନେଇକରି
ପ୍ରହରକେ କୋଟିଏ ବନ ନାଶ କରି ।
ବହିଲା ରକ୍ତନଦୀ ନାଚିଲେ କବନ୍ଧ
ଭାଗିକରି ସୈନ୍ୟ ସର୍ବେ ପଳାଇଲେ ବେଗ ।
ଗୋଡ଼ାଇଲେ ବାନରସେ ସୈନ୍ୟଙ୍କୁ ସେହୁପୁଣି
ପଥର ପଡ଼ିବାରୁ ମଲେ ସର୍ବ ସୈନି ।

ବୃକ୍ଷ ପଡ଼ନ୍ତେ ହସ୍ତୀ ଘୋଡ଼ା ମରି
ଦେଖିଣ ଅର୍ଜୁନ ଯେ ସୈନ୍ୟଙ୍କୁ ପଚାରି ।
କାହାର ଭୟରେ ଯେ ପଳାଇ ଅଇଲ
ସେନାପତିମାନେ କହନ୍ତି ଛାମୁର ।
ବାନର ବଳ ଆମ୍ଭର ସୈନ୍ୟଙ୍କୁ ମାରେପୁଣ
ଅର୍ଜୁନ ବୋଇଲେ କିମ୍ପା ଅଇଲ ଅବିଗୁଣ ।
ସେନାପତି ବୋଇଲେ ଲୋଧା ବଳବାନ୍
କୋଟିଏକ ବଳ ଯେ ମାଇଲେ ଏ ବେଳ ।
ଶୁଣିକରି ଅର୍ଜୁନ ବୋଇଲେ ରହ ଏବେ
ଆଗ କରି ଅନ୍ୟାୟ କଲ ତୁମ୍ଭେ ।
ବନର ଜନ୍ତୁ ସେ ଯେ ବନରେ ଥାନ୍ତି ପୁଣ
ଫଳ ମୂଳ ପତ୍ର ସେ କରନ୍ତି ଭୋଜନ ।
କାହାର ରିପୁ ସେ ଯେ ନୁହନ୍ତିଟି ଜାଣ
ଅକାରଣେ ତାହାଙ୍କୁ ମାଇଲଟି ଜାଣ ।
ମୁହିଁ ତାଙ୍କୁ ସେ କରଇ ସନମାନ
ନ ମାନିଲେ ରଣ ଯେ କରିବା ପଛେ ପୁଣ ।
ଶୁଣିଣ ସୈନ୍ୟବଳ ଧୀର ହୋଇ ରହି
ସହସ୍ରାର୍ଜୁନ ଯେ ରଥରେ ବସେ ଯାଇ ।
ଦେଖିଲାକ ବାନର ମାରନ୍ତି ଗୋଡ଼ାଇ
ରହ ରହ ବୋଲିଣ ଅର୍ଜୁନ ଡାକ ଦେଇ ।
ସମ୍ଭାଳ ରଣଗୋଳ ବୁଝିବାକ ମୂଳ
କାହାର ଅନ୍ୟାୟ ଯେ କାହାର ନ୍ୟାୟବଳ ।
ଅର୍ଜୁନର ବଚନ ଶୁଣିଣ କପିବଳ
ଲେଉଟିଲେ ରଣରୁ ଧରିଣ ଶାଳ ଶୀଳ ।
ଚାରିପାଶେ ବିଜେ ମଝିରେ ଅର୍ଜୁନ
ପ୍ରବେଶ ହେଲେ ଯାଇ ନଳ ସନ୍ନିଧାନ ।
ଦେଖିକରି ନଳରାଜା ପଚାରେ ବାନରଙ୍କୁ
ଅର୍ଜୁନକୁ ଦେଖି କି ଫେରିଲ ଏଠାବକୁ ।
ବାନର ବୋଇଲେ ଶୁଣ ନରପତି
ଅର୍ଜୁନ ଆସିଅଛି ତୁମ୍ଭର ସେ କତି ।
ଶୀତଳ ବଚନ ଯେ କହେ ନରଈଶ
ବୋଇଲା ବାନରରେ ନକର ବଳ ନାଶ ।
ତୁମ୍ଭ ନୃପତି ପାଶକୁ ଆମ୍ଭେ ଚାଣ ଜିବା
କାହାର ଏଥିରେ ନ୍ୟାୟ ଅନ୍ୟାୟ ବୁଝିବା ।
ନଳ ବୋଇଲା ତ ସେକଥା ମୋତେ ଭଲ
ଅର୍ଜୁନକୁ ଚାହିଁ ବୋଲେ ବିଶ୍ୱକର୍ମା ବାଳ ।

କିହୋ ଅର୍ଜୁନ ତୁରେ ହୋଇଲୁ କି ବାଇ
କାଳ ଦେବତାଙ୍କି ତୋତେ ବାମ ହୋଇ ।
ବେଦ ବିଦ୍ୟା କିଛି କି ପଢ଼ି ନାହୁଁ ତୁହି
ଜ୍ଞାନ ଗୋଚରକି ତୋହର ହୃଦେ ନାହିଁ ।
ନର ବାନର କି ଡାଳରେ ଛନ୍ତି ରହି
ତାହାରି ଶତ୍ରୁ ସେ ଯେ ନୁହନ୍ତି ସେହି ।
ଯେ ଯାହାର ଜାତି ସିନା ତାହାକୁ ଅଟେସଲ
ଡାଳ ଜୀବ ସଙ୍ଗତରେ କିମ୍ପା ତାର ଗୋଳ ।
ଅର୍ଜୁନ ବୋଇଲେ ଅନ୍ୟାୟ ମୋହର
ଅବିଗୁଣ ନଧର ଯଉନିଧି କୁମର ।
ଗୁଣକ ନାଶକଲି ପାଇଲି ଏବେ ବୋଧ
ଦଶଗୁଣ ସଇନ୍ୟ ମାଇଲେ ବିବୁଧ ।
ଆଗେ ଅନ୍ୟାୟ କଲାରୁ ଅନେକ ବଳୀନାଶ
ସ୍ନେହ ଛାଡ଼ି ଏବେ ଯଉନିଧି ଶିଷ୍ୟ ।
ନଳ ବୋଇଲା ତୋର ଦେଖିଲି ନିଉନ
ନ୍ୟାୟରେ ହାରିବାର ମାନିଲୁ ମୁଖେ ପୁଣ ।
ଯାଅ ତୋର ରାଜ୍ୟକୁ ନ ରହି ଏଥି ଆଉ
ଶୁଣିକରି ଅର୍ଜୁନ ଲୋକ ସେଠାଉ ।
ସୈନ୍ୟବଳ ଘେନିଣ ବାହାର ହୋଇଗଲା
ଆପଣାର ରାଜ୍ୟରେ ପ୍ରବେଶ ଯାଇ ହେଲା ।
ପାର୍ବତୀ ବୋଇଲା ନଳ କିସ କଲା
ଈଶ୍ୱର ବୋଇଲେ ସେହି ଯେ ଫେରିଗଲା ।
ପିତାର ଆଗରେ କହିଲା ଯାଇକରି
ବୋଇଲା ସେ ରାଜା ନ୍ୟାୟରେ ଗଲା ହାରି ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ନଳକୁ କିମ୍ପାଇ ଯେ ଡରିଲା ସହସ୍ରାର୍ଜୁନ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଶାଳ ଶୀଳ ଯହିଁ ଆଣିଲେ କପି ପତି ।
କୋଟିଏକ ସୈନ୍ୟ ମାଇଲେ ତାର ବଳ
ସହଜେ ବିଶ୍ୱକର୍ମାର ନଳ ଅଟେ ବାଳ ।
ମନରେ ବିଚାରିଲା କରିବି ଅନର୍ଥ
ଜଗତେ ନିନ୍ଦା ମୁଁ ଯେ ପାଇବି ବହୁତ ।
ସୁବୁଦ୍ଧି ବିଚାର କରି ଅର୍ଜୁନ ଫେରିଲା
ଅର୍ଜୁନ ଯିବାରୁ ନଳ ଯେ ଲେଉଟିଲା ।
ପିତାର ଆଗରେ କହିଲେ ଯାଇ ଚାର
ତୋର କୁମର ଜିଣିଲା ଅର୍ଜୁନ ନାମେବୀର ।

ଶୁଣି କରି ନଳରାଜା ପିତା ତୋଷ ହେଲା
ପୁତ୍ରକୁ ସେ ନେଇଣ କୋଳରେ ବସାଇଲା ।
ବୋଇଲା କୁମରରେ ଅନେକ ଯଶ କଲୁ
ଅର୍ଜୁନକୁ ଦେଖିଣ ଅନେକ ଯଶରଖାଇଲୁ ।
ବାନର କୁଳରେ ତୁ ହୋଇଲୁ ଜଗଜିତା
ବାଳିରାଜା ଶୁଣିଲେ କରିବ ପ୍ରଶଂସା ।
ଏତେ କହି ପିତା ପୁତ୍ରରେ ତୋଷ ମନ
ସୈନ୍ୟବଳକୁ ବୋଇଲା ଯାଅ ଯେଝାସ୍ଥାନ ।
ଶୁଣିଣ ସୈନ୍ୟବଳ ନିଜ ସ୍ଥାନେ ଗଲେ
ଯେ ଯାହା ସ୍ଥାନରେ ହରଷେ ବିହରିଲେ ।
ପାର୍ବତୀ ବୋଇଲେ ଶୁଣ ପଞ୍ଚାନନ
କାର୍ତ୍ତିକେଶ୍ୱର ନନ୍ଦନ କିସ କଲା ପୁଣ ।
କପିଙ୍କି ହରି ସେ ରହିଲା ନିବର୍ତ୍ତି
ନୋହିଲେ ତାହାର ସଙ୍ଗେ କଲା ଦୁଷ୍ଟନୀତି ।
ସେ କଥା ମୋର ଆଗେ କହ ପ୍ରାଣନାଥ ।
ଶୁଣିଣ ମୋର ମନ ହୋଇବ ହରଷ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ରାଜା ଅସୁର ଜିଣିଲା ସମସ୍ତଟି ।
ଜିଣିବାରୁ ମତ୍ତଗର୍ବ ବହିଲା ଶରୀରେ
କାଳ କୂଟ ବିଜେକଲେ ତାହାର ଶରୀରେ ।
ବିଚାରିଲା ମୁହିଁ ଅଟଇ ଯେ ବଡ଼
ସାତ ଦ୍ୱୀପ ଦେଖି ଭ୍ରମିଲା ଏକ ଥର ।
ଏମନ୍ତ ବିଚାରି ସେ ଦିଗବିଜେ କଲା
ମନ୍ତ୍ରୀଙ୍କୁ ସଙ୍ଗେ ଘେନି ରଥରେ ବସିଲା ।
ସପ୍ତ ସାଗର ବୁଲଇ ବୀର ପୁଣ
ଅନେକଠାରେ ଯୁଦ୍ଧ କଲା ସେହୁ ଜାଣ ।
କେଉଁଠାରେ ହାରେ କେଉଁଠାରେ ଜିଣେ
ସହସ୍ର ବର୍ଷ ଯେ ବୁଲିଲାକ ତେଣେ ।
ସାଗର ଦିଗବିଜେ ମାରିଲା ଯହୁଁ ପୁଣ
ରାଜା ଦ୍ୱୀପକୁ ବିଜେ ସେ ରାଜନ ।
ଅନର୍ଥ ସେଥିରେ ପୁଣ କଲା
ବୀଅଗଣ ଦୈତ୍ୟଗଣ ସେଥିରେ ଦିଶିଲା ।
ବରୁଣର ପୁରେ ପ୍ରବେଶ ହେଲା ଯାଇ
× × ×
ହାରିଣ ବରୁଣକୁ ପଳାଇ ଅଇଲା
ମରୁତ ଭୁବନରେ ଯାଇଣ ମିଳିଲା ।

ଦେଖିଣ ଗରୁଡ଼ ଦେବତା କ୍ରୋଧ ହୋଇ
ଅଣଚାଶ ପବନରେ ଦେଲାକ ଉଡ଼ାଇ ।
ପବନ ପ୍ରତାପରେ ଉଡ଼ିଲା ଅର୍ଜ୍ଜୁନ
ନିଜ ରାଜ୍ୟ ସୀମାରେ ପଡ଼ିଲା ଯାଇ ପୁଣ ।
ଉଠିଣ ନବରେ ହେଲେ ପରବେଶ
ଏମନ୍ତେ କେତେଦିନ ଗଲେକ ବିଶେଷ ।
ପାତାଳ ପୁରକୁ ପୁଣ ଦିଗବିଜେ କଲା
ଦୈତ୍ୟଙ୍କର ସଙ୍ଗରେ ଯାଇଣ ରଣ କଲା ।
କେଉଁଠାରେ ହାରେ କେଉଁଠାରେ ଜିଣେ
ବଳି ଘରେ ଯାଇ ମିଳିଲା ଅର୍ଜ୍ଜୁନେ ।
ବାମନ ଦେଖିଣ ତାକୁ ପଥ ଓଗାଳିଲା
ଗଦା ତୋଳି ବାମନ ଯେ ତାକୁ ପିଟିଲା ।
ଗଦା ମାଡ଼େ ମୋହ ଗଲା ସହସ୍ରାର୍ଜ୍ଜୁନ
ମନ୍ତ୍ରୀ ଘେନି ଆସେ ଯେ ଲେଉଟିଣ ପୁଣ ।
କିଛି ଦୂର ଆସନ୍ତେ ଚେତା ଯେ ପାଇଲା
ନିମ ଦୁଇ ମନ୍ତ୍ରୀଙ୍କି ସେ ଚାହିଁଣ ବୋଇଲା ।
କିମ୍ପାଇ ମୋତେ ଆଣିଲୁ ବାହୁଡ଼ାଇ
ମନ୍ତ୍ରୀ ବୋଇଲେ ତୁ ଯେ ଅଚେତା ହୋଇଲଇଁ
ବାମନ ନାରାୟଣ ତୋତେ ମୋହ କଲା
ତାର ସଙ୍ଗେ ରଣ ତୋର ନୁହଇ ବୋଇଲା
ଅର୍ଜ୍ଜୁନ ବୋଇଲେ ଚାଲ ନାଗରାଜା ପାଶ
ମୋର ସଙ୍ଗେ ରଣକଲେ ହୋଇବନି ତାରଯଶ
ଶୁଣିକରି ନିମ ମନ୍ତ୍ରୀ ରଥ ବେଗେ ବାହି
ନାଗରାଜା ଆଗରେ ମିଳିଲେକ ଯାଇ ।
ବୋଇଲେ ଅନନ୍ତ ନାଗ ଶୁଣ ମୋ ବଚନ
ପାତାଳ ପୁରେ ମୁଁ ଯେ ଜିଣିଲି ସର୍ବସ୍ଥାନ ।
ରଣ ନପାଇଣ ମୁଁ ଯେ ମନରେ ବିରସ
ତୋର ସଙ୍ଗେ ରଣକଲେ ହୋଇବ ମୋର ଯଶ
ନାଗରାଜା ବୋଇଲେ ମୁଁ ନକରଇ ରଣ
ରସାତଳେ ମେଦିନୀ ପଡ଼ିବ ଛାଡ଼ିଦେଲେ ପୁଣ
ଯୁଦ୍ଧ କିସ କରିବୁ ପଡ଼ିବୁ ରସାତଳେ
ଯେବେ ତୁ ଯୁଝି ଅଇଲୁ ନଜାଣି ନିସ୍ଫଳେ ।
ଆଗରେ ବେଲ ବୃକ୍ଷ ଅଛଇ ମୋର ଦେଖ
ସେ ବୃକ୍ଷକୁ ଜିଣିଲେ ମୋତେ ଜିଣିବୁ ପ୍ରତ୍ୟକ୍ଷ
ତେବେ ମୁଁ ହାରିବି ଜାଣିଥା ନରପତି
ନପାରିଲେ ତୋର ରାଜ୍ୟକୁ ପଳାଅ ଲେଉଟି

ଶୁଣିକରି ଅର୍ଜ୍ଜୁନ ଯେ ବେଗେ ଚଳିଗଲା
ବେଲ ବୃକ୍ଷ ସଙ୍ଗରେ ସେ ମଲ୍ଲଯୁଦ୍ଧ କଲା ।
ଦୁଇଶତ ବରଷ ଯୁଝିଲା ତାର ସଙ୍ଗେ
କେବେ ହେଁ ନପାରିଲା ପାଞ୍ଚଶର ସଙ୍ଗେ ।
ଫେରି କରି ଅର୍ଜ୍ଜୁନ ଯେ ନିଜପୁରେ ଗଲା
ଆପଣାର ରାଜ୍ୟରେ ପ୍ରବେଶ ଯାଇହେଲା ।
ଏମନ୍ତେ କିଛିଦିନ ବହିଗଲା ପୁଣ
ସ୍ୱର୍ଗକୁ ଦିଗବିଜେ କଲେକ ବହନ ।
ସୁରପତି ସଙ୍ଗରେ ଯାଇଣ ରଣ କଲା
ସକଳ ଦେବଙ୍କୁ ସେ ଧରିଣ ଆଣିଲା ।
ଏକା ଗୋଡ଼କେ ଛିଡ଼ା ହୋଇଲେକ ପୁଣ
ବତିଶ ବର୍ଷ ଏଥେ ବହିଗଲା ଜାଣ ।
ବିଧାତାଙ୍କୁ ସୁମରଣ କଲେ ଦେବଗଣ
ଜାଣିକରି ବିଧାତା ଅଇଲେ ତତ୍କ୍ଷଣ ।
ବୋଇଲେ ଦେବତାଙ୍କର ତୁମେ ଉଦ୍ଧର କଷ୍ଟ
ବିଚାରିଲେ ଏ ରାଜା ମଲେ ତ ହେବ ସୁଖ ।
ଏମନ୍ତ ବିଚାରି ମନରେ କୃଶପାଣି
ସହସ୍ରାର୍ଜ୍ଜୁନ ପାଶେ ମିଳେ ଯାଇ ପୁଣି ।
ବୋଇଲେ ଅର୍ଜ୍ଜୁନରେ ଏ ବୁଦ୍ଧି କିଏ ଦେଲା
ଅଳପ ଦିନେ ନାଶ ତୁହି ଯିବୁ ପରା ।
ଯାଅ ଯା ନିଜପୁରେ ନ ରହ ଏଥି କ୍ଷଣେ
ନୋହିଲେ ଭସ୍ମ ହୋଇବୁ ଏ ସ୍ଥାନେ ।
ଶୁଣିକରି ଅର୍ଜ୍ଜୁନ ପଳାଇଣ ଗଲା
ଆପଣାର ନବରେ ଯାଇଣ ମିଳିଲା ।
ଅର୍ଜ୍ଜୁନ ଯିବାରୁ ବେଦବର କହି
ଚଳ ଯେଝାସ୍ଥାନେ ନିଶ୍ଚିନ୍ତେ ରହ ଯାଇ ।
ଦେବତାଏ ବୋଇଲେ ଶୁଣିମା କୃଶପାଣି
ଏ ରାଜା ମୃତ୍ୟୁ ଖୋଜିଲେ ଆମ୍ଭଙ୍କୁ ଭଲ ପୁଣି
ବିଧାତା ବୋଇଲେ ଚାଲ ଯିବା ନିଜପୁର
ଗୋଲୋକ କୃଷ୍ଣ ହୋଇବେ ଅବତାର
ତେବେ ସେ ସହସ୍ରାର୍ଜ୍ଜୁନ ବେଗେ ମରି
କାହାରି ବଳେ ଏହାକୁ ମାରିତ ନପାରି ।
ବିଧାତାର ବଚନ ଶୁଣିଣ ବେଦଗଣ
ଚଳପୁରକୁ ସମସ୍ତେ ଚାଲ ଯିବା ପୁଣ ।
ଏମନ୍ତ ବିଚାର କରି ସ୍ୱର୍ଗରୁ ଚଳିଗଲେ
ପାତାଳ ପୁରେ ଯାଇ ପ୍ରବେଶ ହୋଇଲେ ।

ଗୋଲୋକର ସିଂହଦ୍ୱାରେ ବସିଲେ ସର୍ବଦେବ
ରାଧା କୃଷ୍ଣଦୁହିଁଙ୍କର ଠାରେ ବଡ଼ ଭାବ ।
ଭାବିବାରୁ ପ୍ରସନ୍ନ ହୋଇଲେ ନାରାୟଣ
ବିଧାତାକୁ ଡକାଇ ଦେଲକି ଆପଣ ।
ଦେଖିକରି ବେଦବର ନମସ୍କାର କଲା
ରାଧା କୃଷ୍ଣ ବୋଇଲେ କି ରାଜ୍ୟ ତୋ ତ୍ୱରା
କୁଶପାଣି ବୋଇଲେ ଶୁଣିମା ଦେବ ହେଉ
ସହସ୍ରାର୍ଜ୍ଜୁନ ଦେବଙ୍କୁ ହେଲା ରାହୁ ।
ତୁମ୍ଭେ ତାକୁ ମାରିଲେ ମରିବ ତୁମ୍ଭ ହସ୍ତେ
ଅବତାର ହୋଇବ ଦେବ ଦେବକି ନିତ୍ୟାନ୍ତ
ଗୋଲକନାଥ ବୋଇଲେ ଶୁଣହେ ବେଦବର
ତୁମ୍ଭର ରାଜା ସତ ନୋହିବ ଅନ୍ତର ।
କେମନ୍ତେ ଅବତାର ଆମ୍ଭେ ହେବୁ ପୁଣ
ବେଦବର ବୋଇଲେ ଆପଣ ତାହା ଜାଣ
ଶ୍ରୀକୃଷ୍ଣ ବୋଇଲେ କେଉଁଠାରେ ହେବୁ ଜାତ
ସେ କଥା ମୋର ଆଗେ କହ ହେ ବେଦମତ
ବେଦବର ବୋଇଲେ ଯମଦଗ୍ନି କୋଳେ
ରେଣୁକା ଜନନୀ ଯେ ହୋଇବ ତୁମ୍ଭର ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଯାଅ ଦେବଗଣ
ମୋର ଜ୍ୟୋତି ଋଷି ସଙ୍ଗେ ହୋଇବ ଜାଣ
ଶୁଣିକରି ବେଦବର ପାତାଳୁ ଅଇଲେ
ଯେ ଯାହାର ସ୍ଥାନକୁ ବେଗେ ଚଳିଗଲେ ।
ବେଦବର ସେ ପୁରକୁ ଅଇଲେକ ଯହୁଁ
ଗୋଲକର ନାଥ ବିଚାର କରେ ତହୁଁ ।
ଆପଣାର ଅଙ୍ଗୁ ଜ୍ୟୋତିକୁ କାଢ଼ିଲେ
ପ୍ରସନ୍ନ ହୋଇଣ ଯେ ତାହାଙ୍କୁ କହିଲେ ।
ବୋଇଲେ ମୃତ୍ୟୁପୁର ଯାଅ ବେଗହୋଇ
ଯମଦଗ୍ନି ଶରୀରେ ଲୀନ ହେବୁ ତୁହି ।
ପୁତ୍ରର ସ୍ୱରୂପ ଧରି ଜନ୍ମ ତୁ ହୋଇବୁ
ବାରବରଷ କାଳେ ବାସୁଦେବ ସୁମରିବୁ
ବଳବୁଦ୍ଧି ଆୟୁଧ ଧନୁଶର ସର୍ବ

× × ×

ଶୁଣିକରି ଜ୍ୟୋତିରୂପେ ବେଗେ ଚଳିଗଲା
ଯମଦଗ୍ନି ଦେହରେ ପ୍ରବେଶ ହୋଇଲା ।
ବୀର୍ଯ୍ୟ ସ୍ଥିତି ହେବାରୁ ରେଣୁକା ଗର୍ଭେଠୂଳ
ମାନବ ସ୍ୱରୂପ ସେ ହୋଇବେ ଅବତାର ।
ଦଶମାସ ଯିବାରୁ ଜନମ ଲଭେ ପୁଣି
ବଳବନ୍ତ ତେଜବନ୍ତ ଦିଶନ୍ତି ଭାବେ ଶୁଣି ।
ଦେଖିକରି ଦେବଗଣ ହରଷ ହୋଇଲେ
ଏମନ୍ତେ ବାରବର୍ଷ ବହିଗଲା ଭଲେ ।
ଦେବ କୂଟ ହେବାରୁ ସହସ୍ରାର୍ଜ୍ଜୁନ
ଯମଦଗ୍ନି ଋଷିଙ୍କୁ ମାଇଲେ ଯାଇ ପୁଣ ।
ରେଣୁକା କହିବାରୁ ଜାଣିଲେ ପାଞ୍ଚଭାଇ
ଶୋକରେ ଚଣ୍ଡରାମ ପର୍ଶୁରାମେ କହି ।
କେଡ଼େ ରାଜା ହୋଇ କଲ ଏଡ଼େ ଅବିହିତ
ଯାହା ସେ ବିଧାତା କରି ଅଛଇ ନିର୍ମିତ ।
ଏହି ସେ ଯମଦଗ୍ନି ଅଟନ୍ତି ବ୍ରହ୍ମଋଷି
ପୂର୍ବେ କାହାଠାରେ ଏହୁ ହୋଇଥିଲେ ଦୋଷୀ
ଏହାଙ୍କର କର୍ମଫଳ ଘେନିଣ ଏ ଗଲେ
ଆମ୍ଭଙ୍କୁ ମାତ୍ର ଶୋକ ସାଗରେ ବୁଡ଼ାଇଲେ
ଆସ ଆସ ପର୍ଶୁରାମ ତପ କରିଯିବା
ମହାପାପୀ ଅର୍ଜ୍ଜୁନର ସୀମାରେ ନଥିବା ।
ଚଣ୍ଡରାମ ମୁଖରୁ ଏସମ ବାଣୀ ଶୁଣି
ପର୍ଶୁରାମ କୋପରେ କହଇ ଶିରଝୁଣି
ବୋଲଇ କିମ୍ପା ମୁହିଁ ଯିବଇଁ ତପକରି
ସାଧିଲା ଯୋଗତ ନୁହଇ ମୋହରି ।
ଧନୁ ଶସ୍ତ୍ର କିମ୍ପାଇ ବହିଛି ମୁହିଁ କର
ଶସ୍ତ୍ର ଧରି ଅରଣ୍ୟ ପଶିବା ଅବେଭାର ।
ରାଜା ହୋଇଣ ସେହି ମାରିଲା ବ୍ରହ୍ମଚାରୀ
ଏତେ ପାପୀକି କେମନ୍ତେ ଧରିବ ବସୁନ୍ଧରୀ ।
ପିତା ଛଳେ ନିଶ୍ଚୟ ମାରିବି ନୃପବର
ନୋହିଲେ ମୁଁ ଧନୁଶର ନ ଧରଇ କର ।
ତାହାର ରୁଧିରେ ଯେବେ ତର୍ପଣ କରିବି
ତେବେ ସିନା ପିତାର ମୁଁ କଷ୍ଟ ପାଶୋରିବି ।
ତୁମ୍ଭେ ଚାରିଭାଇ ଯାଇ ବିପିନେ ତପକର
ମୁହିଁ ନିଶ୍ଚେ ଅଙ୍ଗୀକାର କରଇ ସମର ।
ସହସ୍ରାର୍ଜ୍ଜୁନକୁ ମାରି ଯେବେ ପାରେ
ତେବେ ସିନା ଜୀବନ ସାର୍ଥକ ମୋହରେ ।
ନୋହିଲେ ଅନଳ ଜାଳି ପଶିବଇଁ ମୁହିଁ
ଏକଥା ସତ୍ୟ ସତ୍ୟ କେବେ ହେଁ ଆନ ନାହିଁ
ଏହାଶୁଣି ଚଣ୍ଡରାମ ତିନିଶର ଘେନି
ହେମବନ୍ତେ ପ୍ରବେଶ ହୋଇଲେ ଚାରିମୁନି ।

ସରସ୍ୱତୀ ନଦୀ ତୀରେ ରହିଣ ତପ କଲେ
କନ୍ଦମୂଳ ଖାଇଣ ସେ ଦୁଃଖରେ ଦିନ ନେଲେ
ଏଥୁ ଅନନ୍ତରେ ପୁଣି ବୀର ପର୍ଶୁରାମ
ପ୍ରବେଶ ହେଲେ ସହସ୍ରାର୍ଜ୍ଜୁନ ଗ୍ରାମ ।
ଯେ ମୁଖରେ ପଡ଼ଇ ଛେଦଇ ତାର ଶିର
ରଥ ଗଜ ସଇନ୍ୟ ମାରଇ ନିରନ୍ତର ।
ହାଟ ବାଟ ଲୋକମାନେ ଭୟରେ ପଳାଇଲେ
ଥୋକାଏ ପର୍ଶୁରାମ କରରେ ପ୍ରାଣଦେଲେ ।
ନୃପତିର ଆଗରେ କହିଲା ଯାଇ ଚାର
ଏବେ ରାଜ୍ୟ ସମ୍ଭାଳ ତୁମ୍ଭର ନୃପବର ।
ଯମଦଗ୍ନି ଋଷିର ଜ୍ୟେଷ୍ଠ ତନୟେ
ପର୍ଶୁରାମ ନାମରେ ତାହାର ପୁତ୍ର ହୁଏ ।
ନଗ୍ରରେ ପଶିଣ ସେ ଅନେକ ଲୋକ ମାରି
ଦ୍ୱିତୀୟ ଯମ ପରି ଦିଶଇ ତପଚାରି ।
ଅନେକ ରଥ ଗଜ ସୈନ୍ୟ ନାଶ କଲା
ବଣିଜାର ଲୋକଙ୍କୁ ସେ ବହୁତ ମାଇଲା ।
ଦଣ୍ଡକରେ ଦେବ ବୁହାଇଲା ରକ୍ତ ନଇ
ବୋଇଲେ ଏ ପୁରରେ ନ ରଖିବା କାହାପାଇଁ
ମୋହର ପିତାଙ୍କୁ ମାରିଅଛ ଅକାରଣେ
ଆଜ ମୁହିଁ ସମସ୍ତଙ୍କୁ ସଂହାରିବି ରଣେ ।
ଏହା ଶୁଣି ନୃପବର ବୋଇଲେ କହସୀ
ଧନୁ ଶସ୍ତ୍ର କାହୁଁ ପାଇଲା ସେ ଋଷି ।
ଅଜ୍ଞାନ ମୂର୍ଖ ସେହୁ କିଛିହିଁ ନ ଜାଣଇ
ପ୍ରାଣ ଦେବାପାଇଁ ଆସିଅଛି ଧାଇଁ ।
ପିତାର ପରାଏ ଆଜ ହୋଇବଟି ସେହି
ମୋହର ମହିମା କିଛିହିଁ ନ ଜାଣଇ ।
ମୋହର ଛାମୁକୁ ତାକୁ ଜୀବନ୍ତ ଧରିଆଣ
ପୁତ୍ରକୁ ଚାହିଁଣ ଆଜ୍ଞା ଦେଲାକ ରାଜନ ।
ଶୁଣିଣ କୁମରମାନେ ଗଲେ ବଳ ଘେନି
ଯାଇଣ ଭେଟିଲେ ସେ ପର୍ଶୁରାମ ମୁନି ।
ସହସ୍ରେ ପୁର କରିଣ ବେଢ଼ିଲେ ତାହାକୁ
ବଜ୍ର ସମାନ ନାରାଚ ବିନ୍ଧନ୍ତି ଦେହକୁ ।
ନିରନ୍ତରେ ଜର୍ଜ୍ଜର ପଡ଼େ ଜଳ ବୃଷ୍ଟି ଜାଣି
ପର୍ଶୁରାମ ଉପରକୁ ବିନ୍ଧନ୍ତି ସେ ଟାଣି ।
ଭାଲି ଗଦା ମୁଷଳ ଗକତି ମୁଦ୍‌ଗର
ଛେଲ ଚକ୍ର ଶାବେଲି ଯେ ନାନାଜାତି ଶର
ଯେ ଯାହାର ଶସ୍ତ୍ରେ ମାରନ୍ତି ଧରି କରି
ପର୍ଶୁରାମ ଛେଦଇ କଠୋର କରେ ଧରି ।
ଏକା ହୋଇ ଅନେକ ସମର ବୀର କଲା
ରକ୍ତନଦୀ କ୍ଷଣକେ ବୁହାଇଲା ।
ଗୁରୁତର ସମର ବଢ଼ିଲାକ ଯହୁଁ
ଭୟେ ପର୍ଶୁରାମ ଘୁଞ୍ଚିଲାକ ତହୁଁ ।
ମାୟାଯୁଦ୍ଧ ଦେଖିଣ ମନରେ ଭୟ କଲା
ପଣ୍ଡିତ ପଣ ଘେନି ସେ ବାହାରିଲା ।
ପର୍ଶୁରାମ ପଛ ଦ୍ୟନ୍ତେ ଘୋଡ଼ାଇଲା ବେଳେ
ମାର ମାର ଶବଦ ଶୁଭଇ ମହାଗୋଳେ ।
ପଳାଇଣ ପର୍ଶୁରାମ ପଶିଲା ବନସ୍ତ
ବାହୁଡ଼ି ଅଇଲେ ସର୍ବ ଅର୍ଜ୍ଜୁନର ସୁତ ।
ପିତାର ଆଗେ ଯାଇ କହିଲେ ଯଶ ରୀତି
ଶୁଣି କରି ଅର୍ଜ୍ଜୁନ ମହାପତି ।
ପୁତ୍ରକୁ ଅନାଇଣ କହଇ ଦଣ୍ଡଧାରୀ
ଯୁଝି ଆସି କିମ୍ପା ଭାଳ ତପଚାରୀ ।
ପୁତ୍ରମାନେ କହିଲେ ସେ ଅଜ୍ଞାନ ବାପୁଡ଼ା
ଆମ୍ଭାରାଗ ଘେନି ଅଇଲେ ସିନା ମୋଢ଼ା ।
କ୍ଷତ୍ରୀ ପୁତ୍ର ସିନା ଯୁଦ୍ଧ କରିବା ଭାଜନ
ବ୍ରାହ୍ମଣ ନୋହିଥିଲେ କି ରହନ୍ତା ଜୀବନ ।
ଶୁଣିକରି ଆନନ୍ଦ ହୋଇଲା ମହୀପତି
ଏଥୁ ଅନନ୍ତରେ ଶୁଣ ଭଗବତୀ ।
ଘରେ ଘରେ ରୋଦନ କରନ୍ତି ନରନାରୀ
କେ ବୋଲଇ ମଲା ଗୁରସ୍ତ ମୋହରି ।
କେ ବୋଲଇ ମୋର ପୁତୁରାଦିଅର ଏବେମଲା
କେ ବୋଲଇ ଜୁଆଇଁ ଶଶୁର ଏବେମଲା ।
କେ ବୋଲଇ ମଲେ ମୋର ମଉଳା ଦେଢ଼ଶୁର
କେ ବୋଲଇ ଭଉଣୀ ଜୁଆଇଁ ମୋର ।
କେ ବୋଲଇ ମୋ ନଣଦେଇ ମଲା
କେହୁ ବୋଲଇ ମୋ ପୁତ୍ର ମଲା ।
କେ ବୋଲଇ ମୋ ସଙ୍ଗାତ ମଇତ୍ର ଗଲା ନାଶ
କେ ବୋଲଇ ମୋହର ଭାଗିଲା ପତି ଆଶ ।
କେ ବୋଲଇ କେଣିକି ଯିବି ମୁହିଁ ପୁଣି
ପଥ ନ ଦିଶଇ ମୁହିଁ ଯେ ହୋଇଲି ଅନ୍ଧୁଣୀ
କେ ବୋଲଇ ବୁଦ୍ଧିବାଟ ମୋର ବଣାହେଲା
ଅକାଳ କାଷ୍ଠ ଆସି ମୋଠାରେ ପଡ଼ିଲା ।

କେ ବୋଲଇ ଋଷି ଯେ କିମ୍ପାଇ ହେଲେ କ୍ରୋଧ
ଆମ୍ଭଙ୍କୁ ନାଶିବା ପାଇଁ ହିଂସା ତାର ରାଗ ।
କେ ବୋଲଇ ରାଜା ଅନ୍ୟାୟ ପୁଣି କଲା
ତପ କଲା ଲୋକଙ୍କୁ ନଜାଣି ମାଇଲା ।
ବ୍ରହ୍ମଚାରୀ ମଲା ବୋଲି କାନ୍ଦେ ତା ଘରଣୀ
ପିତାର ସକାଶେ ପୁତ୍ର ମନରେ ରିପୁ ପୁଣି ।
ତାପରେ କେଉଁ ଦେବତା ହେଲେ ତାଙ୍କୁ ସହାୟ
ରାଜା ଉପାଡ଼ି ରାଜା ମାରିବାକୁ ପ୍ରିୟ ।
କେ ବୋଲଇ ଏହୁ ରାଜା ଅଟେ ବଳବନ୍ତ
ରାଜା ସଙ୍ଗେ ଯୁଦ୍ଧ କଲେ ମରିବ ତପୋତନ୍ତ
କେ ବୋଲଇ ନାରାୟଣ ଜଗତ କରତା
ଋଷିର ହସ୍ତେ ଅବା ମରିବ ରାଜ ସୁତ ।
କେ ବୋଲଇ ଦେବତା ନ ପାରେ ଯାହାକୁ
ତପି ହୋଇ ପୁଣ କିସ କରିବ ତାହାକୁ ।
କେ ବୋଲଇ ନବୋଲ ନ୍ୟୁନ କଥାମାନ
ଦେବତାଙ୍କୁ ଜିଣିଣ ହେଲେ ହୀନିମାନ ।
ଏକା ଗୋଡ଼କେ ଛିଡ଼ା ହେଲା ବତିଶ ବରଷ
ଦେବତାଙ୍କ ହିଂସାରେ ହୋଇବେ ରାଜାନାଶ ।
କେ ବୋଲଇ ଋଷିର ତ ଏଡ଼େବଳ ହୋଇ
ଦେବ କୂଟ କରିଣ ଅଛନ୍ତି ଏହା ଭ୍ୟାଇ ।
କେ ବୋଲନ୍ତି ପିତାର ଛଳରେ ଅବା ଆସି
ବହୁତ ଲୋକ ଦେଖି ଯେ ପଚାରନ୍ତି ଋଷି ।
କେ ବୋଲନ୍ତି ଏ ଋଷି ଆସିବେ ଯେବେ ଆଉ
ନିଶ୍ଚୟ ନାଶ ଯିବ ନ ରଖିବେ କେହୁ ।
କେ ବୋଲେ ନଥିଲେ ପ୍ରାକ୍ରମ ବଳ ତାର
ଏକାରେ ସୈନ୍ୟଙ୍କୁ ମାରେ ଋଷିର କୁମର ।
କେ ବୋଲଇ ଆମ୍ଭର ଯେ ସରିଲା ସମ୍ପତ୍ତି
ରାଜାର ବିଚାରେ ସିନା ହେଲା ସେ ଆନୀତି ।
ଦେବତାଙ୍କୁ ଦୁଃଖ ଦେଲା ତପିଙ୍କୁ କଲା ନାଶ
ଏ କଥାମାନ ସଖିରେ ବଡ଼ାଇ ସାହସ ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ରାଜାର ଆଗରେ ଯାଇ କଲେକ ଗୁହାରି ।
ରାଜାର ସିଂହଦ୍ୱାରେ ପଡ଼େ ହାଲହୋଳି
ଯମଦଗ୍ନି ପୁତ୍ରକୁ ମାଇଲେ ତୋର ବାଳୀ ।
ଉତ୍ତର ଭାଗେ ସାତଶ ପାଟଣା ଯେ ପୁର
ସେ ମଧ୍ୟେ ପଶିଲା ପର୍ଶୁରାମ ତପିବର ।
ତିନି କ୍ଷଉଣୀ ବଳ ଏକା ନାଶ କଲା
ପୁରେ ପୁରେ ରକ୍ତ ନଦୀ ଯେ ବହିଗଲା ।
ରୁଧିର ନଦୀରେ ମଡ଼ା ଗଲେ ଭାସି
କୁଠାରରେ ହାଣଇ ଗଦାରେ ପିଟି ପଶି ।
ସେନାପତି ରଥ ପାଦାନ୍ତୀ ବଳ ମିଳି
ଅନେକ ଶର ବିନ୍ଧିଲେ ହୋଇଣ ପ୍ରଜ୍ୱଳି ।
କେବେହେଁ ସରକୁ ନ ମାନେ ପର୍ଶୁରାମ
ବୋଇଲା ରାଜାଙ୍କୁ ମାରି ଭାଙ୍ଗିବ ପୁର ଗ୍ରାମ ।
ବେଢ଼ି ପକାଇଣ ମାରନ୍ତେ ପଳାଇଲା
ବନସ୍ତ ଭିତରେ ଯାଇଣ ପଶିଲା ।
ରାଜନ ବୋଇଲା ହୋଇଲା କଥା ଘାଟ
ବାପ ସଙ୍ଗକୁ ଯିବାକୁ ହେଉଛି ଉଚ୍ଚାଟ ।
ଗଡ଼ରେ ଠଣାମାନ ଜଗରେ ଆବୋରି
ଯେଉଁଠାରେ ଦେଖିବ ମାରିବ ଧରିକରି ।
ତୁମ୍ଭଠାରୁ ବଳିଲେ ନାତି ମୋର ଯିବେ
ସେଦିନ ପର୍ଶୁରାମଙ୍କୁ ନିଶ୍ଚୟ ମାରିବେ ।
ରଥି ସେନାପତି ବୋଇଲେ ରାଜାକୁ
ସୈନ୍ୟବଳ ଆୟତ କର ଦେଖି ତାଙ୍କୁ ।
ଯେତକ ନାତି ତୋହର ଅଛନ୍ତି ରାଜନ
ସକଳ ଗଡ଼ମାନଙ୍କୁ ପେଶ ତୁ ବହନ ।
ସୈନ୍ୟବଳ ସଙ୍ଗରେ ଥିବ ଯେବେ ସେହି
ରଥି ସେନାପତି ପାଦାନ୍ତୀ ସଙ୍ଗେ ରହି ।
ଅଇଲେ ତାଙ୍କ ସଙ୍ଗେ କରିବେ ରଣ ଗୋଳ
ମାରିବେ ତପିଙ୍କୁ ଉପ୍ରୋଧି ଛାଡ଼ି ବଳ ।
ସୁଗନ୍ଧା ମନ୍ତ୍ରୀଙ୍କି ସେ ରାଜନ ବୋଇଲା
ମୋର ରାଜ୍ୟେ ପର୍ଶୁରାମ ଅନର୍ଥ ଆସିକଲା ।
ଅନେକବଳ ମୋର ଉତ୍ତର ଭାଗେ ମାରି
ତିନି କ୍ଷଉଣୀ ବଳକୁ ମୋର ପକାଏ ନାଶକରି
ଗନ୍ଧକାର ମନ୍ତ୍ରୀ ବୋଲେ ଶୁଣ ହେ ରାଜନ
ତାର ପିତାକୁ ମାରି ଅର୍ଜିଲ ଅଧର୍ମ ।
ତପସ୍ୟାବନ୍ତ ଲୋକ ତପରେ ଗରୁ ପୁଣ
ନାରାୟଣ ସମାନେ ଅଟନ୍ତି ସେହୁ ଜାଣ ।
ସେ ଋଷିକୁ ମାରିବାରୁ ପାତକତୋତେଘୋଟି
ବ୍ରହ୍ମହତ୍ୟା ଦୋଷ ତୋ କନ୍ଧରେ ଲୋଟିଲାଟି
ଏ ଦୋଷରେ ତୁମ୍ଭଙ୍କୁ ନାହିଁ ଏଣେ ଯଶ
ତେଣେ ଦେବତାଏ ହୋଇଲେ ଅବିଶ୍ୱାସ ।

ତ୍ରିଦଶ ଦେବତାଙ୍କୁ ଅନେକ ଶାନ୍ତ ଦେଲେ
ବତିଶ ବରଷଯାଏ ଏକ ସ୍ଥାନକେ ଛିଡ଼ାକଲେ
ଦେବତାଙ୍କୁ ଅସନ୍ତୁଷ୍ଟ ଋଷିଙ୍କି ବ୍ରହ୍ମହତ୍ୟା
ସେଦୋଷ ତୋତେ ଘୋଟିଲା ମନେହୁଅଚେତ ।
ଯମଦଗ୍ନିର ଚାରି ପୁତ୍ର ଅଟେ ଜାଣ
ବଡ଼ ପୁତ୍ର ନାମ ତାର ଚଣ୍ଡରାମ ଜାଣ ।
ଦ୍ୱିତୀୟ ପୁତ୍ର ନାମ ଅଟଇ ରଘୁରାମ
ତାହାର ସାନ ପୁତ୍ର ଅଟନ୍ତି ପର୍ଶୁରାମ ।
ସେ କୁମର ପିତା ଛଳେ ଯୁଦ୍ଧ କରେ
ପିତୃ ଋଣ ଶୁଝିଲେ ସେ ମନୁତାପ ହରେ ।
ଯେତେବେଳେ ଅଛନ୍ତି ଦେବ ତୋର ପୁଣ
ସମସ୍ତେ ନାଶ ଯିବେଟି ନ ପାରିବେ ରଣ ।
ନିଉନ ହୋଇ ତାଙ୍କୁ କହିବା ଏବେ
ତାହାଙ୍କୁ ବୋଧ କଲେ ସକଳ ନ୍ୟାୟ ହେବେ
ଅବୋଧରେ ଅନର୍ଥ କରିବେ ନିଶ୍ଚେ ଜାଣ
ଧର୍ମବଳେ ତାହାର ଜିଣିଣ ତୋତେ ପୁଣ ।
ଶୁଣିଣ ସହସାର୍ଜ୍ଜୁନ ବୋଲେ ଶୁଣ ମନ୍ତ୍ରୀ
କେଉଁଠାରେ ଋଷିମାନେ ତୋତେ ଲଘିଛନ୍ତି
ସୁଗନ୍ଧ ମନ୍ତ୍ରୀ ବୋଲେ ଶୁଣ ହେ ରାଜନ
ବେଣୁ ରାଜା ତ ଅନେକ ବଳବାନ ।
ପାପ କରନ୍ତେ ଋଷି ବ୍ରାହ୍ମଣ ନେଲା ବରି
ଯାଗ ସରିବାରୁ ଋଷିଙ୍କି ତୁଳାର ଭାଷା କରି
ସେତେବେଳେ ଋଷି ଯେ ହେଲେ କ୍ରୋଧମନ
ଶ୍ୟାପରେ ସେ ରାଜାକୁ ମୃତ୍ୟୁ ହେଲା ପୁଣ ।
ବେଣୁରାଜା ମୃତପିଣ୍ଡ ତଇଲେ ନେଇ ଭରି
ସନ୍ଥନ୍ତେ ପୃତୁରାଜା ତହିଁରୁ ଅବତରି ।
ସେହି ରାଜା ଅନେକ ଯାଗ ପୁଣ କଲା
ଅଗ୍ନି ଦେବତା ନନ୍ଦନବନକୁ ପେଶିଲା ।
ତେବେ ସେ ବ୍ରହ୍ମଶ୍ୟାପ ହୋଇଲା ମେଣ୍ଟଣ
ଚୌରାଶି ନକରୁ ଉଦ୍ଧାର ବେଣୁରାଜା ପୁଣ ।
ସଞ୍ଜୀବନୀ ପୁରରୁ ସ୍ୱର୍ଗକୁ ସେହି ଗଲା
କାଳେହେଁ ସୁରରାଜା ଅନ୍ୟାୟ ପୁଣ କଲା ।
ଗୌତମ ଋଷିଙ୍କ ଘରଣୀ ହରିଲା
ସେଦୋଷରେ ସହସ୍ରେଯୋନିତାର ଦେହେହେଲା
ପଳାଇଲା ସୁରରାଜା ନକଲା ସ୍ୱର୍ଗେ ସ୍ନେହ
ମାନ ସରୋବର ଭିତରେ ପଶିଲା ଯାଇ ବେଗ
ଦେଖିଣ ଦେବତାଏ ମନରେ ବିଚାରିଲେ
ମଥୁରା ନାମେ ପୁରକୁ ବେଗେ ଚଳିଗଲେ ।
ଯଦୁବଂଶ ରାଜା ଯେ ସେଥିର ଲାଉସେନ
ତାହାକୁ ଆଣି କଲେ ଯେ ସୁର ରାଜନ ।
ସେ ନର ସ୍ୱର୍ଗପୁରେ ରାଜା ହୋଇବାରୁ
ମନରେ ଗର୍ବକଲା ହୋଇଲା ହନ୍ତକାରୁ ।
ବିଚାରିଲା ମୋର ସମାନରେ ବଡ଼ ନାହିଁ
ମନର କଥା ଦେବତାଏ ଜାଣିଲଇଁ ତହିଁ ।
ସେ ରାଜାକୁ ଦେବ କୂଟ କଲେକ ବହନ
ମାୟାରେ ମନ ତାର ହୋଇଲା କଷଣ ।
ସେହି ରାଜା ଦେବତାଙ୍କୁ ପଚାରିଲେ ପୁଣି
ଜାନକୁ କିଏ ବହିବ କହ ତୁମ୍ଭେ ଜାଣି ।
ଦେବତାଏ ବୋଇଲେ ବୁହନ୍ତୁ ଋଷିପୁଣ
ଶୁଣିକରି ସନ୍ତୋଷ ହେଲେ ସେ ମନେଣ ।
ସପ୍ତ ଋଷିଙ୍କି ସେ ଡକାଇ ଆଣିଲେ
ଜାନୁକୁ ମୋର ବହ ବୋଲିଣ ବୋଇଲେ ।
ଶୁଣିଣ ସପ୍ତଋଷି ହୋଇଲେ ବିମନ
ବିଚାରିଲେ ଏ ରାଜାର ସରିଲା ବଡ଼ ପଣ ।
ଏମନ୍ତ ବିଚାରିଣ ଯାନ ଯାଇ ବହି
ତପସ୍ୟାବନ୍ତ ଲୋକ କି ରାଜା ଭାରା ସହି ।
ଅସୁରେ ଯିବାରୁ ରାଜନ ହେଲେ କୋପ
ସମ୍ଭାଳି କରି ଋଷି କହିଲେ ସ୍ୱରୂପ ।
ସେ କଥାକୁ ତେଜ୍ୟା ଯେ କଲେ ନୃପରାଣ
ରାଜାର ତେଜକୁ ଋଷି ଶ୍ୟାପ ଦେଲେ ପୁଣ ।
ଶ୍ୟାପ ଘେନି ଲାଉସେନ ମୃତ୍ୟୁପୁର ଗଲେ

× × ×

ନିମୋଦର ବନରେ ସେ ହୋଇଲେ ଯାଇସର୍ପ
ଯିବାବେଳେ ଋଷିଙ୍କୁ କହିଲା ସେହି ନୃପ ।
ଏଥିକି କାରଣ ତୁମ୍ଭେ କହ ଋଷିଭାବେ
ମୁକ୍ତିର ବାଟ ଦେବ ଉଦ୍ଧାର କର ଏବେ ।
ନ୍ୟୁନ ବଚନ ଶୁଣିଣ ବୋଇଲେ ସପ୍ତଋଷି
ସପ୍ତଗଣ୍ଡା ଯୁଗଯାଏ ବନସ୍ତେ ଥାଆଟି ।
ନଳରାଜାକୁ ଦେଖିଲେ ଶ୍ୟାପରୁ ପାର ହେବୁ
ମୁକ୍ତି ଲଭିଣ ପୁଣ ସ୍ୱର୍ଗକୁ ଆସିବୁ ।
ଶୁଣି କରି ଲାଉସେନ ବେଗେ ଚଳିଗଲା
ମୋ ବନେ ଅଜଗର ହୋଇଣ ରହିଲା ।

ସାତ ଗଣ୍ଡା ଯୁଗ ଗଲାକ ତହିଁ ବହି
ତେବେ ସେ ନଳକୁ ଦେଖିଲାକ ସେହି ।
ମୁକ୍ତି ଲଭିଣ ସେ ସ୍ୱର୍ଗପୁର ଗଲା
ସପ୍ତ ଯୁଗ ପର୍ଯ୍ୟନ୍ତ ସ୍ୱର୍ଗରେ ଇନ୍ଦ୍ର ହେଲା ।
ପ୍ରତିଦିନ ଋଷିଙ୍କି କରଇ ପାଦପୂଜା
ପୂର୍ବ କଥାକୁ ମନେ ରଖିଥାଇ ରାଜା ।
ଅର୍ଜୁନ ବୋଇଲେ ଶୁଣ ମନ୍ତ୍ରୀବର
ଆଉ କେଉଁଠାରେ ଶ୍ୟାପ ଦେଲେ ମୁନିବର ।
ସୁଗନ୍ଧା ମନ୍ତ୍ରୀ କହିଲେ ଶୁଣ ହେ ଅର୍ଜୁନ
ସଗର ରାଜାର ଅଟେ ଷାଠିଏ ନନ୍ଦନ ।
ଷାଠିଏ ସହସ୍ର ନନ୍ଦନ ଅଟନ୍ତି ତାର ଜାଣ
ସପତ ସାଗରକୁ ଖୋଜିଲେ ସେହି ପୁଣ ।
କପିଳ ଋଷିଙ୍କୁ ସେ ହେଲେ ରୋଷ ମନ
ଶ୍ୟାପେ ସକଳ ନନ୍ଦନ ହୋଇଲେ ବହନ ।
ତାହାଙ୍କର କୂଳରେ ଭଗିରଥ ଥିଲା
ଗଙ୍ଗାକୁ ଆଣିଣ ଯେ ତାହାଙ୍କୁ ଉଦ୍ଧାରିଲା ।
ତେବେ ସେ ମୁକ୍ତ ହୋଇ ସ୍ୱର୍ଗପୁର ଯାଇ
କପିଳ ଋଷି ସେ ଆଗହୁଁ ଥିଲେ କହି ।
ଅର୍ଜୁନ ବୋଇଲେ ମୁଁ ଶୁଣିଲି ଋଷିଗଣ
ଦେବତାଙ୍କ ଗୁଣକୁ ପ୍ରଶଂସା କରି ପୁଣ ।
ମନ୍ତ୍ରୀବର ବୋଇଲେ ଶୁଣ ହେ ନରପତି
ଜଳନ୍ଧର ନାମରେ ଅସୁର ଉତ୍ପତ୍ତି ।
ତ୍ରିଦଶ ଦେବତାଙ୍କୁ ସେ ଜିଣିଲା ଭୂଜବଳେ
ବାସୁଦେବଙ୍କୁ ଜିଣିଲା ବନ୍ଧୁର ବେଭାରେ ।
ଦେବତାଏ ସମସ୍ତେ କୁଟ ବିଚାରିଲେ
ଅସୁରଙ୍କୁ କହି ପାର୍ବତୀ ମଗାଇଲେ ।
ତେଣେ କ୍ରୋଧଭର ହେଲେ ଭୋଳାନାଥ
ସେହି ଅସୁରକୁ ମାଇଲେ ଉମାକାନ୍ତ ।
ଶଙ୍ଖାସୁର ଦେବ ଚୋରୀ ବିଧାତାଙ୍କର କଲା
ବାସୁଦେବ ଦେଖି ତାକୁ ରାଗେଣ ମାଇଲା ।
ମୈଷାସୁର ତିନିପୁରେ ହୋଇଲା ରାଜନ
ଦେବ କୂଟେ ଦେବୀ ତାଙ୍କୁ ମାଇଲେକ ପୁଣ ।
ରକ୍ତବୀର୍ଯ୍ୟ ଉତ୍ପାତ ମଣ୍ଡିଲେ ତିନିପୁର
ଦେବଙ୍କ ସଙ୍ଗରେ ରଣ କଲେ ବୀର ।
ଜଳରେ ବୁଡ଼ନ୍ତେ ସେ ଦୈତ୍ୟ ନାଶ ଗଲେ
ଦେବ କୂଟ ଅନେକ ପ୍ରକାରେ କଲେ ।

ମାଳି ସୁମାଳି ଯେ ମାଲ୍ୟବନ୍ତ ତିନି
ଦେବଙ୍କୁ ଜିଣି ତିନିପୁର ନେଲେ ପୁଣି ।
ଦେବ କୂଟରେ ବାସୁଦେବ ତାଙ୍କୁ ମାରି
ସାଧବ ଜନଙ୍କ କୂଟ ଖାତକଙ୍କୁ ଧରି ।
ଦୈତ୍ୟମାନଙ୍କ କୂଟ ରାଜାମାନଙ୍କ ଉପରେ
ଦୈତ୍ୟଙ୍କ ଉପରେ ଦେବୀ କୂଟ ବିଚାରିଲେ ।
ଦେବତାଙ୍କୁ କୁଟ କରନ୍ତି ନାରାୟଣ
ଏତେ ପ୍ରକାରେ ସାଧ ହୁଅନ୍ତି ତିନିଜଣ ।
ଅର୍ଜୁନ ବୋଇଲେ ତୁ ବଡ଼ ଅଟୁ ଦୋଷୀ
ତୋହର ଯୋଗରୁ ସିନା ମୁହିଁ ହେଲି ଧ୍ୱଂସି ।
ଋଷିଙ୍କି ମାଇଲା ବେଳେ ନ କହିଲୁ ମୋତେ
ଏତେବେଳକୁ ନିନ୍ଦା ତ ଶୁଭିବ ଜଗତେ ।
ରାଜାମାନେ ବୋଲିବେ ଅର୍ଜୁନ ଅଟେ ହୀନ
ପର୍ଶୁରାମକୁ ନପାରି ପୂଜା କଲା ପୁଣ ।
ମରିବାର ଜୀଇବାର ଅଟେ ସାର
ଦେବଙ୍କୁ ଦେଲି କଷ୍ଟ ନ କହିଲୁ ସମାଚର ।
ଏବେ ବୋଇଲୁ ପୁଣି ହେଲା ତୋର ଦୋଷ
ତୁ ମୋତେ ବିଚାରିଲୁ କରିବାକୁ ନାଶ ।
ଜାଣିଲି କପଟ ଯେ ଅଟଇ ତୋର ସବୁ
ମୋହର ବଂଶ ମାରି ରାଜା ତୁ ହୋଇବୁ ।
ଏତେ ବୋଲି କଟୁଆଳ ଡାକିଲା ନୃପବର
ବୋଇଲା ଏ ମନ୍ତ୍ରୀର କାଟ ବେଗେ ଶିର ।
ଶୁଣିଣ କଟୁଆଳ ତରବାରୀ ଧରି
ମନ୍ତ୍ରୀର ଶିରକୁ ଛେଦିଲା ବେଗ କରି ।
ଦେଖିଲେ ନର ନାରୀ ଜନ ପ୍ରଜା
ଆହାକାର ଶବଦ କଲେକ ତହିଁ ଦ୍ୱିଜା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ମନ୍ତ୍ରୀକି ତାରି ପୁଣି ଡକାଇ ରାଜା ନାତି ।
ଦଶସସ୍ର ନାତିଙ୍କି ଡକାଇ ଆଜ୍ଞା ଦେଲା
ରାଜ୍ୟର ଚାରି ପାଶରେ ରହରେ ବୋଇଲା ।
ଦେବତା ଋଷି ରଣ କଲେ ତାଙ୍କୁ ମାର
ପର୍ଶୁରାମ ମୋର ରାଜ୍ୟ କରିଛି ଛାରଖାର ।
ହସ୍ତୀ ରଥ୍ ସେନାପତି ପଦାତି ବଳ ଘେନି
ଗଡ଼ର ହାରମାନ ଜଗରେ ଯାଇ ପୁଣି ।
ଯେଉଁଠାରେ କଳହ ହୋଇବ ରଣଗୋଳ
ଗୋ ବ୍ରାହ୍ମଣ ହୋଇଲେ ତାହାଙ୍କୁ ବେଗେମାର

ଶୁଣିଣ ନାତିମାନେ ସୈନ୍ୟବଳ ଘେନି
ଚାରିଦିଗକୁ ଯେ ବାଣ୍ଟିଣ ଗଲେ ପୁଣି ।
ହାତୀ ରଥ୍ ଗଜ ପଦାତି ସାରେଣୀ
ସେନାପତି ସରଦାର ସଙ୍ଗରେ ଛନ୍ତି ପୁଣି ।
ଗଡମାନ ଠଣାମାନ ଦ୍ୱାର ସେ ଆବୋରି
ଧନୁଶର ଧରିଣ ଜଗିଲେ ଗାତ କରି ।
ଏଥୁଅନନ୍ତରେ ପର୍ଶୁରାମ ଯତି
ଗୋମତୀ ନଦୀତୀରେ ପ୍ରବେଶ ହୁଅନ୍ତି ।
ତପସ୍ୟା କରନ୍ତି ସେ ଧନୁଶର ଥୋଇ
କେତେହେଁ ଦିନ ଗଲା ଏହିମତେ ବହି ।
ଏକଦିନେ ପର୍ଶୁରାମ ତପସ୍ୟା କରନ୍ତେ
ପିତା ବଧ ପ୍ରବେଶ ହୋଇଲା ଆସି ଚିତ୍ତେ ।
ବିଚାରେ ରାଜା ହୋଇ ଯତିର ମୁଣ୍ଡ ହାଣି
ତାକୁ କେସନେକ ଧରି ଅଛଇ ଧରଣୀ ।
ମୁହିଁ ଚଣ୍ଡାଳ କାହିଁକି ବସିଛି ଅକାରଣ
ସହସ୍ରା ଅର୍ଜ୍ଜୁନର ନ ଘେନିଲି ପ୍ରାଣ ।
କେମନ୍ତେ ମୁଁ ପିତାର କଷ୍ଟ ପାସୋରିବି
କାର୍ତ୍ତବୀର୍ଯ୍ୟ ପୁତ୍ରକୁ କେମନ୍ତେ ମାରିବି ।
ନୋହିଲେ ଏ ଜୀବନ ରଖିବି କାହିଁପାଇଁ
ପିତାଦ୍ରୋହୀ ଥିଲେ ତ ମୋହର ସୁଖ ନାହିଁ ।
ପିତା ମୋତେ ଅନେକ କଷ୍ଟରେ ପାଳିଥିଲା
ମୋହର ଆଗରେ ତାକୁ ନୃପତି ମାଇଲା ।
ସେ ରାଜାର ପ୍ରାଣ ମୁଁ ଘେନିବି କେମନ୍ତେ
ଏତେବୋଲି ପର୍ଶୁରାମ ଚଳିଲେ କୋପଚିତ୍ତେ
ଧନୁ ଗଦା କୁଠାର ଧରିଣ ବୀରମଣି
ସହସ୍ରାର୍ଜ୍ଜୁନ କଟକେ ପ୍ରବେଶ ତକ୍ଷଣି ।
ଉତ୍ତର ଦିଗେ ପ୍ରଥମେ ଯୁଦ୍ଧକଲେ ଯାଇ
ଯୁଦ୍ଧେ ହାରି ପର୍ଶୁରାମ ସେଠାରୁ ଲେଉଟଇ ।
ଦ୍ୱିତୀୟରେ ପଶ୍ଚିମେ ହୋଇଲେ ପ୍ରବେଶ
ଦେଖିଣ ସୈନ୍ୟବଳ ମିଳିଲେ ତାର ପାଶ ।
ତାହା ଦେଖି ପର୍ଶୁରାମ ମନରେ ବିଚାରି
ପ୍ରଥମ ଯୁଦ୍ଧରେ ଯେ ଜିଣେ ଦଣ୍ଡଧାରୀ ।
ଡାହାଣ କରେ ଗଦା ଧରେ ବୀର ତୋଳି
ସୈନ୍ୟବଳ ଭିତରେ ପଶେ ପେଲି ପେଲି ।
ହୁଁ କାରିଣ ଗଦା କରନ୍ତେ ପ୍ରହାର
ବହୁତ ସୈନ୍ୟ ଯେ ପଡ଼ିଲେ ଭୂମିର ।

ସୈନ୍ୟଙ୍କ ଶର ପର୍ଶୁଶରୀରେ ନ କାଟି
କ୍ରୋଧରେ ପର୍ଶୁରାମ କୁଠାର ଧରି ପିଟି ।
ନମାନଙ୍କ ଶସ୍ତ୍ର ମାରଇ ପେଲିକରି
ମନ୍ଦର ମଂଥିଲା ପ୍ରାୟେ ପକାଇଲା ଦଳି ।
ପଦାତି ହସ୍ତୀବଳ ଯେତେକ ସେଠି ଥିଲେ
ପଳାଇ ଯିବାକୁ ମନରେ ଭୟ କଲେ ।
ଦେଖିଣ ପର୍ଶୁରାମ ବାବଲ୍ଲ ଶର କରି
ପଦାତି ବଳସବୁ ପକାଇଲା ମାରି ।
ହସ୍ତୀଙ୍କି ବଜ୍ରଶର ପ୍ରହାର କଲେ ପୁଣି
ପଡ଼ିଲୋକ ହସ୍ତୀ ଯେ ମାଳ ମାଳ ଜାଣି ।
ହସ୍ତୀ ପଦାତି ଯହୁଁ ପଡ଼ିଲେ ଧରଣୀରେ
ତାହା ଦେଖି ଲକ୍ଷେ ନାତି ଆସିଣ ଯୁଦ୍ଧକଲେ
ପର୍ଶୁରାମ କୁଠାରର ସମସ୍ତଙ୍କୁ ନାଶିଲେ
ଗୋଟିଏ ମାତ୍ର ତହୁଁ ବର୍ତ୍ତିଣ ନଗଲେ ।
ସାରେଣୀ ଗଜ ଅଶ୍ୱ ତିନିଙ୍କ ପରେ ଭେଦୀ
ମନ୍ଦ ମନ୍ଦା କରିଣ ପକାଇଲେ ଛେଦି ।
ସମସ୍ତଙ୍କୁ ମାରିଣ ପର୍ଶୁରାମ ଚଳି
ଗୋମତୀ ନଦୀ ତୀରେ ଯାଇଣ ସେ ମିଳି ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ଚାର ଯାଇ ଜଣାଇଲା ରାଜନର କତି ।
ଭୋ ଦେବ ତୁମ୍ଭ ପୁତ୍ର ନାତି ସୈନ୍ୟ ଆଦି କରି
ସବୁଙ୍କୁ ଯତି ଯେ ପକାଇଲା ମାରି ।
ଶୁଣିଣ ନୃପତି ହୋଇଲା ବିକଳ
ରାଣୀହଂସ ପୁରରେ ପଡ଼ିଲା ହାଲହୋଳ ।
ବଧୂମାନେ କହିଲେ ଆଉ ଭାଳିଲେ ହେବକିସ
ସ୍ୱାମୀଙ୍କ ସଙ୍ଗକୁ ଆମ୍ଭେ ଯିବୁ ଯେ ଅବଶ୍ୟ ।
ଆଉ ଭାଳିଲେ ପୁତ୍ରମାନେ ଆସିବେ କି ଫେରି
ଗଲା ମଲା ଦୁଇ କଥା ଅଟଇ ଯେ ସରି ।
ଆମ୍ଭେମାନେ ଯିବାର ହେଉଛି ଉଚ୍ଛୁର
ମେଲାଣି କଲେ ଯିବୁ ସ୍ୱାମୀଙ୍କ ସଙ୍ଗର ।
ଶାଶୁମାନେ ବୋଇଲେ ଯାଅ ଏବେ ବେଗେ
ନଗଲେ ନର୍କରେ ପଡ଼ିବ ଯେ ତୁମ୍ଭେ ।
ଶାଶୁମାନଙ୍କଠାରୁ ଶୁଣିଣ ଚଳିଲେ
ଲକ୍ଷେକ ବଧୂ ଯାଇ ଗଙ୍ଗାରେ ଝାସ ଦେଲେ
ସ୍ୱାମୀଙ୍କ ସଙ୍ଗରେ ଗଲେ ସ୍ୱର୍ଗସ୍ଥାନ
ପାର୍ବତୀ ପୁଛିଲେ କିସ କଲେ ସେ ରାଜନ ।

ଈଶ୍ୱର ବୋଇଲେ ଶୁଣ ଗୋ ମହାମାୟି
ବୋଇଲା ପୁତ୍ରରେ ତୁମ୍ଭେ ଯାଅ ବେଗହୋଇ
ଯେମନ୍ତେ ମରିବ ଋଷି ତେମନ୍ତେ ବୁଦ୍ଧିକର
ଯେହୁ ଋଷିକି ଦେଖିବ ଧରିକରି ମାର ।
ଶୁଣିଣ ପୁତ୍ରମାନେ ଶୀଘ୍ରେ ଚଳିଗଲେ
ସାତ କ୍ଷଉଣୀ ପଦାତି ସଙ୍ଗରେ ଗୋଡ଼ାଇଲେ
ମେରୁଗିରି ଚମକିଲା ନିଶାଣ ବାଦ୍ୟରେ
ଦେବତାଏ ଡରିଲେ ଥାଇଣ ସ୍ୱର୍ଗପୁରେ ।
ହସ୍ତୀଙ୍କର ଗର୍ଜନ ଘୋଡ଼ାଙ୍କର ହ୍ରେସା
ପଦାତିଙ୍କ ରାବରେ ଦୁଲୁ ଦୁଲୁ ରସା ।
ଟଳ ଟଳ ପୃଥିବୀ ହୋଇଲାକ ଜାଣ
ବସୁଧା ଥର ଥର କମ୍ପିଲା ଯେ ପୁଣ ।
ଏମନ୍ତ ଚରିତ୍ରମାନ ବିଶିଷ୍ଟ ଯେ କହି
ଦଶରଥ ଶୁଣିଣ ସନ୍ତୋଷ ମନ ହୋଇ ।
ସୂର୍ଯ୍ୟବଂଶ ରାଜନ ପୁଛିଲେ ବଶିଷ୍ଠଙ୍କୁ
ଅର୍ଜୁନ ମରିବା କଥା କହ ହେ ଆମ୍ଭଙ୍କୁ ।
ବଶିଷ୍ଠ ବୋଇଲେ ଶୁଣ ନରରାଣ
ପାର୍ବତୀ ଆଗରେ ଯାହା କହିଲେ ଈଶାନ ।
ପାର୍ବତୀ ପଚାରିଲେ କହ ପ୍ରାଣେଶ୍ୱର
ଶୃଗାଳ ସିଂହ ହେଲା କେବଣ ପ୍ରକାର ।
ସେ କଥା ବୁଝାଇଣ କହ ପଞ୍ଚାନନ
ସେହି କଥା ଶୁଣିବାକୁ ଶ୍ରଦ୍ଧା ମୋର ମନ ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ନିଗମ କାଞ୍ଚନ ବନେ ସିଂହ ବାସକରି ।
ଶ୍ୟାମଳ ବର୍ଣ୍ଣର ସିଂହ ସେ ବନରେ ରାଜା
ସକଳ ଜୀବଜନ୍ତୁ ତାଙ୍କର ପରଜା ।
ନିତିପ୍ରତି ଜୀବମାରି କରଇ ସେ ଗ୍ରାସ
ସେ ବନରୁ ଜୀବମାନେ ହୋଇଲେ ଶେଷ ।
ବୃଦ୍ଧ ଶୃଗାଳ ଯେ ବିଚାରଇ ମନ
ରାଜା ହୋଇକରି ଏ କରଇ ଅଧର୍ମ ।
ଜମ୍ବୁକ ନାମେ ଶୃଗାଳ ବିଚାରକଲା ମନ
ଏ ମୋଡ଼ାକୁ ଧର୍ମ ସହିଛି କେସନ ।
ବିଚାରିଲା ସିଂହକୁ କଥାରେ ଭୁଲାଇ
ମୋର ବୁଦ୍ଧି ବଳରେ ତାହାକୁ ମାରିବଇଁ ।
ଏମନ୍ତ ବିଚାରି ସେ ସିଂହର ପାଶେ ଗଲା
ଶାର୍ଦ୍ଦୁଳ ସିଂହକୁ ବିନୟେ ଜଣାଇଲା ।
ବୋଇଲା ଭୋ ଦେବ ତୁମ୍ଭ ପ୍ରାୟେ ସିଂହ ଜାଣ
କୂପର ଭିତରେ ଯେ ପଶିଛି ଯେ ପୁଣ ।
ମୋତେ ଦେଖି ପଚାରିଲା ଏବେ କିଏ ରାଜା
ତାକୁ ମୁଁ ମାରିବି କରିଛି ମୁଲିଜା ।
ମୁଁ ବୋଇଲି କିମ୍ପା ତୋର ତାଠାରେ କ୍ରୋଧ
ତା ଶୁଣି ବୋଇଲା ସେ ମୋ ବଂଶ କଲା ବଧ ।
ବୋଇଲା ପୂର୍ବରେ ମୋର ପିତାକୁ ନାଶକଲା
ମୋର ପିତା ତାହାକୁ ବଳରେ ଊଣା ହେଲା ।
ମୁଁ ଏବେ ତାହାକୁ ମାରିବି ଅବଶ୍ୟ
ଏତେବୋଲି କ୍ରୋଧ ହୁଏ ରାଜଅଂଶ ।
ଶୃଗାଳ ବାଣୀ ଶୁଣି ସିଂହ କ୍ରୋଧ ହେଲା
ଗର୍ଜନ ନାଦ କରି ବେଗେ ଚଳିଗଲା ।
ଆଗରେ ଶୃଗାଳ ପଛରେ ସିଂହ ଯାଇ
କୂପର ନିକଟରେ ପ୍ରବେଶିଲେ ଦୁଇ ।
ଶୃଗାଳ ବୋଇଲା ଦେଖ ଏ କୂପରେ ତୁମ୍ଭଶତ୍ରୁ
ନୟନ ବୁଲାଉଛି ଯେପରି କାଳକେତୁ ।
ଦେଖିଲା କୂପ ଭିତରେ ଛାୟାରୂପ ପୁଣ
ସାତପ୍ରାୟ ମଣିଲା କାନନ ରାଜନ ।
କ୍ରୋଧରେ ସିଂହରାଜା କୂପକୁ ଡେଇଁ ପଡ଼ି
ଶୃଗାଳ ବୋଲରେ ଯେ ସିଂହ ମଲା ବୁଡ଼ି ।
ସିଂହକୁ ମାରିଣ ଶୃଗାଳ ରାଜା ହେଲା
ସବୁ ଜୀବଙ୍କପରେ ପ୍ରତିଜ୍ଞା ସେ କଲା ।
ଏମନ୍ତେ କେତେ ଦିନ ତହୁଁ ବହିଗଲା
କରୁଣା ସିଂହ ବୋଲି ଏକ ସିଂହ ଥିଲା ।
ସେହି ବନସ୍ତକୁ ଗଲାକ ସେ ପୁଣ
କାନନ ବୁଲି ବୁଲି ନ ଦେଖେ ଜାତି ଜାଣ ।
ଜୀବଙ୍କୁ ପଚାରିଲା ଏବନକୁ କିଏ ରଖି
ସେ ବୋଇଲେ ମାନସିଂହ ଆମ୍ଭ ରାଜନଟି ।
ସିଂହ ବୋଇଲେ ସେ ଅଛଇ କେଉଁଠାରେ
ବନଜୀବେ କହିଲେ ଶୃଗାଳ ମେଣ୍ଟରେ ।
ସେଠାରୁ କରୁଣା ସିଂହ ବେଗେ ଚଳିଗଲା
ଶୃଗାଳଙ୍କ ମେଳରେ ପ୍ରବେଶ ହୋଇଲା
ପଚାରଇ ମାନସିଂହ ଅଛି କେଉଁଠାରେ
ଶୃଗାଳ ବୋଇଲା ମୁଁ ରାଜା ଏ ବନରେ ।
କରୁଣାସିଂହ ବୋଇଲା ତୋ ରୂପ ଦିଶେ ଭିନ୍ନ
ଆମ୍ଭର ଜାତି ପ୍ରାୟେ ନଦିଶୁ ତୁ ପୁଣ ।

ଶୃଗାଳ ବୋଇଲା ମୋର ରୂପ ଦିଶେ ଭିନ୍ନ
ଶୃଗାଳୁଣୀ ସଙ୍ଗେ ସିଂହ କଲାକ ରମଣ ।
ସିଂହର ବୀର୍ଯ୍ୟ ଶୃଗାଳୁଣୀର ଅଟେ ରଜ
ତେଣୁକରି ମୋରରୂପ ନଦିଶଇ ତେଜ ।
ମାତାର ଗୁଣ ଘେନି ମୁଁ ନିଉନ ରୂପହେଲି
ପିତାର ବୀର୍ଯ୍ୟରେ ମୁଁ ତେଜକୁ ବହିଲି ।
ମୋ ପିତା ନାଶ ଯିବାରୁ ବନେ ହେଲି ରାଜା
ଶୁଣିଣ କରୁଣାକର ମନରେ କରେ ଦୁଜା ।
ମନରେ ବିଚାରିଲା ଯେବେ ଏ ସିଂହପୁତ୍ର
ଶୃଗାଳ ବୀର୍ଯ୍ୟରୁ ଯେ ନୋହିବ ସମ୍ଭୁତ ।
ତେବେ ସେ ଜାଣିବା ନିଶ୍ଚୟେ ସିଂହବୀର୍ଯ୍ୟ
ନୋହିଲେ ଏହାକୁ ଯେ ମାରିବାର ସଜ ।
କରୁଣାସିଂହ ବୋଇଲା ଶୁଣରେ ପ୍ରଜାଗଣ
ଏ ରାଜାକୁ ପରୀକ୍ଷା କରିବା ଏବେ ପୁଣ ।
ତୁମ୍ଭର ବିକାର ଚେଷ୍ଟା ଦେଖା ପୁଣ
ଶୁଣି ଶୃଗାଳ ରାବକଲେ ତତକ୍ଷଣ ।
ସେ ଶୃଗାଳ ତାଙ୍କ ସଙ୍ଗେ ବିକାର ଭାବକଲା
ଦେଖିଣ କରୁଣାକର ତାଠାରେ କ୍ରୋଧହେଲା
ବିଚାରିଲା ଶୃଗାଳ ବୁଦ୍ଧିରେ ରାଜା ହୋଇ
ସିଂହର କୁଳକୁ ନିଉନ କଲା ଏହି ।
ଏମନ୍ତେ ବିଚାରି ମାଇଲା ଶୃଗାଳକୁ
ବୋଇଲା ତୁ ଛାରରେ ବଇରୀ ଆମ୍ଭଙ୍କୁ ।
ମାରିଣ ଶୃଗାଳକୁ ଭୋଜନ ସେ କଲା
ବିକ୍ରମ ସିଂହ ଆଗେ ଯାଇଣ କହିଲା ।
ଶୁଣିଣ ସିଂହ ରାଜା ମନରେ ତୋଷ ହୋଇ
ସେ ବୋଇଲା ସେ ବନରେ ରାଜା ହୁଅ ତୁହି
ଶୁଣିଣ କରୁଣା ସିଂହ ବେଗେ ଚଳିଗଲା
କାଞ୍ଚନ ବନରେ ନିଶ୍ଚିନ୍ତ ରହିଲା ।
ପାର୍ବତୀ ବୋଇଲେ ଶୁଣ ଈଶାନ ତୁମ୍ଭେ
ସହସ୍ରାର୍ଜ୍ଜୁନ କଥା କହ ମୋର ଆଗେ ।
ଈଶ୍ୱର ବୋଇଲେ ଶୁଣ ମନଦେଇ
ପୁତ୍ରମାନଙ୍କୁ ପେଷି ଅର୍ଜ୍ଜୁନପୁରେ ଯାଇ ।
ସେବାକାରୀମାନେ ଆସି ହୋଇଲେ ପ୍ରବେଶ
ମର୍ଦ୍ଦନ ମାଜଣା ସାରିଲା ନୃପଈଶ ।
ସ୍ନାହାନବିଧବ ସାରି କରଇ ଦେବାର୍ଚ୍ଚନ
ମଣୋହିରେ ପ୍ରବେଶ ହୋଇଲା ରାଜନ ।

ଆଚମନ ସାରିଣ ବସିଲାକ ଯାଇ
ରାଣୀମାନେ ଦର୍ଶନ କଲେ ଆସି ତହିଁ ।
ଓଳଗ ମେଲାଇଣ ଶୋଇଲେ ଗଡ଼ ଘାଲି
ଉଠିଣ ଶ୍ରୀକର ଦେଇ କଲେ ନିଉଛାଳି ।
ବଡ଼ପାଟରାଣୀ ଅଟଇ ପଦ୍ମାବତୀ
ବୋଇଲା ରାଜନ ହେ ମନ କି ହେଲା ଶାନ୍ତି ।
ପ୍ରଥମରେ ପ୍ରଶଂସା କରନ୍ତି ତିନିପୁରେ
ଦ୍ୱିତୀୟେ ସଂସାର କଲୁ ଯେ ବେଭାରେ ।
ତୃତୀୟେ ବ୍ରହ୍ମହତ୍ୟା କଲ ନ ବିଚାରି ।
ଚତୁର୍ଥେ ମନ୍ତ୍ରୀଙ୍କି ମାଇଲ ନ ବିଚାରି ।
ପଞ୍ଚମେ ନାତିଙ୍କି ଆଦୋଷେ ମରାଇଣ
ଏକା ଋଷି ମାଇଲେ ତୁମ୍ଭ ବଂଶକୁ ଜାଣ ।
ଅବିଚାର କଲେଟି ଏମନ୍ତ ଦଶା ହୋଇ
ବିଚାରବନ୍ତ ଲୋକ ସବୁଠାରେ ସ୍ନେହୀ
ଧର୍ମକୁ ତେଜ୍ୟାକଲେ ଦେବତା ହେଲେ ମରେ
ମୃତ୍ୟୁ ପୁରରେ କେହି ନାହାନ୍ତି ଅମରେ ।
ରାଜନ ବୋଇଲେ ଶୁଣ ମନଦେଇ
ବଳିରାଜା ମନ୍ତ୍ରୀକି ନମାନିଲେ ତହିଁ ।
ଦାନଦ୍ୟନ୍ତେ ବାସୁଦେବ ସନ୍ତୋଷ ହୋଇଲେ
ସୁତଳରେ ରଖି ତାକୁ ଦର୍ଶନ ନିତି ଦେଲେ
ଆଗେଟି ଧର୍ମ କଲେ ପଛେ ନୁହେଁ ପାର
ବ୍ରହ୍ମହତ୍ୟା କଲାବେଳେ ନକହେ ମନ୍ତ୍ରୀବର ।
ସେ କହିଲେ ମୁହିଁ କିମ୍ପା କରନ୍ତି ଅଧର୍ମ
ସେହି ମନ୍ତ୍ରୀ ଜାଣଇଁ ସବୁ ଯେ କୁକର୍ମ ।
ଏ ଦୋଷରୁ ମୁହିଁ ତାହାକୁ କଲି ନାଶ
ଏବେ ମୁଁ ପର୍ଶୁରାମକୁ କରିଦେବି ଭସ୍ମ ।
ପାଟରାଣୀ ବୋଇଲେ ପର୍ଶୁକୁ ବୋଧକର
ତେବେ ତୁମ୍ଭର ଅମର ହୋଇବ ମର୍ତ୍ତ୍ୟପୁର ।
ସମସ୍ତେ ଚାଲଯିବା ପଶିବା ଶରଣ
ତେବେ ଦୟା କରିବେ ଋଷିଙ୍କ ନନ୍ଦନ ।
ଅର୍ଜ୍ଜୁନ ବୋଇଲା ରାଣୀ ନ କହ ତାହାମୋତେ
ନିଉନହେଲେ ଦେବେ ନିନ୍ଦାକରିବେ ମୋତେ
ବୋଲିବେ ଏଡ଼େ କ୍ଷତ୍ରୀ ତ ଋଷିଙ୍କି ନପାରିଲା
ଋଷିଙ୍କର ଚରଣରେ ଶରଣ ପଶିଲା ।
ଲକ୍ଷେ ରାଜା ନିଉନ ହୋଇବେ ଏହିପୁରେ
ବୋଲିବେ ରାଜା ରଣ ନକଲେ ଋଷି ତୁଲେ ।

ରଣ କରି ମରିଥିଲେ ରହିଥାନ୍ତା ଯଶ
ରାଜାଙ୍କର କୁଳକୁ କଳଙ୍କ ବିଶେଷ ।
ପାଟରାଣୀ ବୋଇଲେ ନିଷ୍ଚୟ ନାଶ ଗଲା
କହିବାର ବୋଲ କାହାରି ନ ମାନିଲା ।
ରାଜନ ବୋଇଲେ ମୁଁ ନମରେ ତାର ହସ୍ତେ
ମାରିବି ପର୍ଶୁରାମକୁ ଦେଖିବ ସାକ୍ଷାତେ ।
ବଂଶ ନାଶଗଲାକୁ କି କରୁଛ ବିଚାର
ତାହାର ହସ୍ତେ ମୃତ୍ୟୁନାହିଁ ଯେ ମୋହର ।
ଯେତେବେଳେ ପିତାମାତା ବୋଇଲେ ତପକର
ଅମର ହୋଇବୁ ତୁରେ ଶିବଙ୍କୁ ମାଗ ବର ।
ଶୁଣିକରି ପିତାଠାରୁ ମୁହିଁ ବତିଗଲି
ଏରକା ନଦୀରେ ମୁଁ ପଶିଣ ତପ କଲି ।
ଶତେକ ବରଷ ଏକା ଗୋଡ଼କେ ହେଲି ଛିଡ଼ା
ଶୂନ୍ୟକୁ ଚାହିଁଣ ତପ କଲି ମତି ଧୀରା ।
ଉର୍ଦ୍ଧ୍ୱରେ ତପ ଯେ ମୋହର ସିଦ୍ଧି ହୋଇ
ବୃଷଭ ଚଢ଼ିଣ ଈଶ୍ୱର ବିଜେ ତହିଁ ।
ସେ ବୋଇଲେ ମୋତେ ମାଗରେ ପୁତ୍ର ବର
ଯେଉଁ କର୍ମରେ ଇଚ୍ଛା ଅଛଇ ତୋହର ।
ମୁଁ ବୋଇଲି ଅମର ହୋଇବି କାଳେ କାଳେ
ନରବାନର ଅସୁର ଦେବଙ୍କୁ ଜିଣିବି ଭୂଜବଳେ
ସେ ବୋଇଲେ ସମସ୍ତଙ୍କୁ ଜିଣିବୁ ତୁଯେ ବଳେ
କେହି ତୋତେ ନପାରିବେ ବଳେ ।
କାହାର ହସ୍ତରେ ତୋର ନୋହିବ ମରଣ
ମୃତ୍ୟୁପୁରେ ଜନ୍ମିଲେ ଦେବତା ନାଶ ଜାଣ ।
ଦଇବ ଲେଖିଥାଇ ବଇରୀ ତା କରି
ଯେଯାହାକୁ ମାରିବ ସେ ତାକୁ ଅନିମିତ୍ତେ ମାରି
ମୁଁ ବୋଇଲି ମୋର କର୍ମେ ଲେଖିଛି ଧାତାକିସ
ଈଶ୍ୱର କହନ୍ତି ତୋତେମାରିବେ ଗୋଲକ ପୁରୁଷ
ମୁଁ ବୋଇଲି ସେ ଯେ ପାତାଳପୁରେ ଥାଇ
ରାଧାଙ୍କୁ ଘେନିଣ ନିତ୍ୟେ ରାହାସ କରଇ ।
ରାତ୍ର ଦିବସ ଯେ ତାର ନାହିଁ କିଛି ପୁଣ
ରାହାସରୁ ଅନ୍ତର ନୁହନ୍ତି ନାରାୟଣ ।
ଈଶ୍ୱର ବୋଇଲେ ସେ ଅଟନ୍ତି ଅନ୍ତର୍ଯ୍ୟାମୀ
ତାହାର ଅନ୍ତରୁ ମନୁଷ୍ୟ ଦେହ ଜନ୍ମି ।
ସେହି ତୋତେ ମାରିବେ ଅନ୍ୟାୟ ଆଚରିଲେ
ଏତେକହି ଶଙ୍କର ନିଜ ସ୍ଥାନେ ଗଲେ ।

ଏ ଯତିର ହସ୍ତରେ ମୃତ୍ୟୁ ନାହିଁ ମୋର
ଏହାକୁ ସେବିଲେ ସାନ ଭାବିବେ ନୃପବର ।
ଏହା ଶୁଣି ରାଣୀହଂସ ହୋଇଲେକ ତୁନି
ଏଥୁ ଅନନ୍ତରେ ପର୍ଶୁରାମ ମୁନି ।
ଗୋମତୀ ନଦୀ ତୀରେ ତପ ସେ କରଇ
ଦିନେକ ପିତା ବଧ ମନରେ ପଡ଼ଇ ।
ତପସ୍ୟାକୁ ଛାଡ଼ିଣ ଧଇଲେ ଧନୁଶର
ଅତି କୋପେ ମିଳିଲେ ସହସ୍ରାର୍ଜ୍ଜୁନ ପୁର ।
ଅଯୋଗରେ ଅନେକ ସଇନ ନାଶ କରି
ଦେଖିଣ ଲୋକାମାନେ ପଳାଇଲେ ଡରି ।
ନଗ୍ରରେ ହାଲହୋଳି ଶୁଭିଲା ମହାଗୋଳ
ତାହାଶୁଣି ଧାଇଁଲେ ରାଜାର ଦୁଲାଳ ।
ଶତେକ ନନ୍ଦନ ବେଢ଼ି କଲେକ ସମର
ସହି ନପାରିଣ ପଳାଇଲା ପର୍ଶୁଧର ।
ଅରଣ୍ୟ ଭିତରେ ସେହୁ ଲୁଚିଲାକ ଯାଇ
ଗୋମତୀ ନଦୀତୀରେ ତପକୁ ଆଚରଇ ।
ବାହୁଡ଼ି କୁମରମାନେ କହିଲେ ନୃପତି
ସମର କରି ନପାରି ପଳାଇଲା ଯତି ।
ନୃପବର ବିମୁଖ ହୋଇଲା ତାହା ଶୁଣି
ପୁତ୍ରଙ୍କୁ ଅନାଇଁଣ କହଇ ସେ ବାଣୀ ।
ଭଲା ପଳାଇଲା ତାକୁ ନପାରିଲା ଧରି
କେବଣ ଭରସାରେ ସେ ଅଇଲା ମୋର ପୁରୀ
ଏତେ ବୋଲି ନୃପବର ହୋଇଲାକ ତୁନୀ
ଏଥୁ ଅନନ୍ତରେ ପୁଣ ପର୍ଶୁରାମ ମୁନି ।
ତପସ୍ୟା କରଇ ସେ ଗୋମତୀ ନଦୀ ତୀରେ
ପିତାର କଥା ପ୍ରବେଶ ହୁଅଇ ମନରେ ।
ପୁଣିହିଁ ସହସ୍ରାର୍ଜ୍ଜୁନ କଟକେ ପଶଇ
ଅଯୋଗରେ ଅନେକ ସଇନ ବିନାଶଇ ।
ରାଜାଦଣ୍ଡ ବରଗିଲେ ନପାରଇ ରହି
ଏମନ୍ତେ କେତେକ କାଳ ଗଲା ତହିଁ ।
ଏକୋଇଶ ବାର ସେ ବାହୁଡ଼ିଣ ଗଲା
ଅରଣ୍ୟ ଭିତରେ ଅନେକ ଶୋକ କଲା ।
ବିଚାରେ ରାଜା ହୋଇ ମାଇଲା ମହାମୁନି
ତାହାକୁ ଧରିଛି ଧନ୍ୟରେ ମେଦିନୀ ।

ମୁଁ ହୀନ ଚଣ୍ଡାଳ ତାକୁ ନ ପାରିଲି ମାରି
କେବଣ କାରଣେ ଧନୁ ଶର ଥିବ ଧରି ।
ପିତା ବଇରୀକି ମୁଁ ଦେଖୁଛି ନୟନେ
ନିର୍ଲଜ ଦେହେ ଜୀବନ ଧରିବି କେସନେ ।
ଏଥକୁ ନିଶ୍ଚୟ ଉପାୟ କରିବଇଁ ମୁହିଁ
ଆଜର ମଧ୍ୟେ ତାକୁ ଆସିବି ମୃତ୍ୟୁଦେଇ ।
ଏତେବୋଲି ଧନୁଧରି ହୋଇଲାକ ସଜ
ଅରଣ୍ୟରୁ ବାହାର ଯେସନେ ମୃଗରାଜ ।
ସହସ୍ରାର୍ଜ୍ଜୁନ କଟକେ ଯାଇଣ ପଶିଲା
ଅଯୋଗରେ ଅନେକ ସଇନି ନାଶକଲା ।
ନୃପତିର ଛାମୁରେ କହିଲ ଦୁତ ଯାଇ
ସେହି ପର୍ଶୁରାମ ଆସି ଅଛଇ ଗୋସାଇଁ ।
ଦାଣ୍ଡହାଟ ଲୋକଙ୍କୁ ସେ ମାଇଲା ଅନେକ
ଶୁଣିଣ ନୃପବର କ୍ରୋଧରେ ଅତିରେକ ।
ପୁତ୍ରକୁ ଡକାଇଣ ବୋଇଲା ନୃପମଣି
ଯମଦଗ୍ନି ପୁତ୍ରକୁ ପକା ବେଗେ ହାଣି ।
ଶୁଣିଣ କୁମରମାନେ ଗଲେ ସୈନ୍ୟ ଘେନି
ଯାଇଣ ଭେଟିଲେ ପର୍ଶୁରାମ ମୁନି ।
ମାର ମାର ଶବଦ କରନ୍ତି ମୁଖରୋଳ
ଭୟରେ ପଳାଇଲା ରେଣୁକାର ବାଳ ।
ପର୍ବତ ଉହାଡ଼ରେ ଲୁଚିଲାକ ଯାଇ
ରାଜାର ନନ୍ଦନ ପଛେ ଅଛନ୍ତି ଗୋଡ଼ାଇ ।
ଖୋଜିକରି ନ ପାଇଲେ ବାହୁଡ଼ି ଅଇଲେ
ସବୁ କଥା ନୃପତି ଛାମୁରେ ଜଣାଇଲେ ।
ଶୁଣିଣ ନୃପମଣି ହୋଇଲାକ ତୁନୀ
ଏଥୁଅନନ୍ତରେ ପର୍ଶୁରାମ ପୁଣି ।
ଆତ୍ମାବିକଳରେ ସେ ଭାଳଇ ପଞ୍ଚମନେ
କେସନେକ ଜିଣିବି ମୁଁ ସହସ୍ରାଅର୍ଜ୍ଜୁନେ ।
ନାରାୟଣ ସୁମରି ରେଣୁକା ନନ୍ଦନ
ପିତା ଶତ୍ରୁକୁ କେହ୍ନେ ବଦ୍ଧ କରିବ ଭଗବାନ
ଭୋନାଥ ହେ ଭାଗବାନ ଭକତ ବତ୍ସଳ
ଆଜିଠାରୁ ବିନାଶ ହୋଇଲେ ତପୀକୁଳ ।
ରାଜା ଆଦେଶରେ ବ୍ରହ୍ମଋଷି ନାଶକଲା
ମହୀପତି ହୋଇଣ ଧର୍ମକୁ ନମାନିଲା ।
ମୁଁ ତୋର ଶରଣ ପଶିଲି ଚକ୍ରଧାରୀ ।
ତୁମ୍ଭେ ଦେବ ଜଗତ ଠାକୁର ମୁରାରି ।

ପିତା ଶ୍ରତୁକୁ ନାଶ କରିବି କେମନ୍ତେ
ଏଥକୁ କାରଣ କହିବା ସ୍ୱାମୀ ମୋତେ ।
ଏତେବୋଲି ପର୍ଶୁରାମ ଧ୍ୟାନକରି ବସି
ଶତେବାର ପ୍ରଣାମ କରି ମହାଋଷି ।
ପ୍ରସନ୍ନ ହୋଇଲେ ଦେବ ଚକ୍ରଧାରୀ
ଗରୁଡ଼ ପୃଷ୍ଠରେ ବିଜୟ ସେ କରି ।
ପୀତବସ୍ତ୍ର ପରିଧାନ କଉସ୍ତୁଭ ମଣି
କୋଳରେ ଶୋଭାବନ ସାଗର ଦୁଲଣୀ ।
କିରୀଟ କୁଣ୍ଡଳ ଶୋଭା ଶ୍ରୀବତ୍ସ ଲାଞ୍ଛନ
ବିଦ ମୁଦି ବାହୁଟି ହୋଇଣ ମଣ୍ଡନ ।
ଚତୁର୍ଭୁଜେ ଶୋଭା ଶଙ୍ଖ ଚକ୍ର ଗଦା ଧନୁ
ଦେଖିକରି ପର୍ଶୁରାମ ଉଠିଲା ଆସନୁ ।
ମଧୁରିପୁ ଶ୍ରୀଚରଣ ତଳରେ ପଡ଼ଇ
କୃତାଞ୍ଜଳି ହୋଇକରି କରକୁ ଯୋଡ଼ଇ ।
ହସ ହସ ହୋଇଣ ବୋଲନ୍ତି ମୁରାରି
କି କାରଣେ ସୁମରଣା କଲ ତପଚାରୀ ।
ପର୍ଶୁରାମ ବୋଇଲେ ଶୁଣ ଭଗବାନ
ସହସ୍ରାର୍ଜ୍ଜୁନ ନାମରେ ଏକଇ ରାଜନ ।
ଯମଦଗ୍ନି ଋଷିଙ୍କି ସେ ପ୍ରାଣେ ନାଶ କଲା
ନୃପତି ହୋଇଣ ଧର୍ମକୁ ଛାଡ଼ିଲା ।
ଆଦେଶରେ ହତ ସେ କଲା ମହାଋଷି
ତେଣୁ ତୋତେ ସୁମରଣା କଲି ବ୍ରହ୍ମରାଶି ।
ପିତାବଇରୀକୁ ମୁଁ ଦେଖିବି କେହ୍ନେ ତୋଳେ
ତେଣୁକରି ଚିନ୍ତାକଲି ମୁଁ ବିକଳେ ।
ଯେବେ ମୋତେ ପ୍ରସନ୍ନ ହୋଇଲ ଦାମୋଦର
ପିତା ଶତ୍ରୁକୁ ମାରିବ ଦିଅ ମୋତେ ବର ।
ଏତେ ବୋଲି ପର୍ଶୁରାମ ପଡ଼ିଲେକ ପାଦେ
ମାନ ଉଦ୍ଧାରିବି ପ୍ରଭୁ ତୋହରି ପ୍ରସାଦେ ।
ପର୍ଶୁରାମ ମୁଖରୁ ଏମନ୍ତ ବାଣୀ ଶୁଣି
ଉଠ ଉଠ ବୋଲିଣ ବୋଇଲେ ଚକ୍ରପାଣି ।
ଉଠିଣ ପର୍ଶୁରାମ ଯୋଡ଼ି ବେନିକର
ମନ୍ଦହାସେ ବୋଲନ୍ତି ତାହାଙ୍କୁ ଚକ୍ରଧର ।
ତୁମ୍ଭେ ପର୍ଶୁରାମ ଅଟ ବ୍ରହ୍ମଋଷି
କ୍ଷତ୍ରିୟ ପଣରେ ଅଟୁ ଗରୁହଂସୀ ।
ରୂପେ କାମଦେବ ଧଇର୍ଯ୍ୟେଣ ମେରୁ
ସତ୍ୟ ଗୁଣ ସାଗର ଦୟାରେ କଳ୍ପତରୁ ।

ଆହାଲାଦେ ଚନ୍ଦ୍ର ତେଜେ ସୂର୍ଯ୍ୟର କିରଣ
ଅନଳ ସମାନ ଜଳ ଗଭୀରେ ବରୁଣ ।
ବେଗରେ ପବନ ରାଗରେ ନରସିଂହ
ଭୃଗୁକୁଳ ମଣ୍ଡନ ପବିତ୍ର ତୋର ଦେହ ।
ଶୁଦ୍ଧ ଶରୀର ତୋର ଯାଗ ଚରୁରୁ ଜାତ
ଉତ୍ତମ ପୁରୁଷ ତୁ ଅଟୁ ତପୋବନ୍ତ ।
ଶୁଦ୍ଧ ସ୍ୱଚ୍ଛ ନିର୍ମଳ କୋମଳ ତୋର ଦେହ
ତହିଁରେ ଦେହାଇ କରିବାକୁ ମୋର ସ୍ନେହ
ଏ ମୋହର ତେଜକୁ ସମର୍ପିଲି ତୋତେ
ଅବାର ଦେଲି ଧନୁ ନାରାଚ ସହିତେ ।
ପିତା ଶତ୍ରୁକୁ ସାଧ କର ଏହା ଘେନି
ସରିସମ ତୋତେ କେହି ନୋହିବେ ଅବନୀ ।
ସମସ୍ତ ଦିଗରେ ତୁ ହୋଇବୁ ଏକ ବୀର
ତୋ ଦେହରେ ମୋହର ଷଷ୍ଠ ଅବତାର ।
ମାର ଦୁଷ୍ଟ କ୍ଷତ୍ରୀଙ୍କୁ ନିଃସଂଶୟ କରି
ଏହାଙ୍କ ଉପଦ୍ରବ ନ ସହେ ବସୁନ୍ଧରୀ ।
ପାପକର୍ମ ଆବୋରି ଝିଙ୍ଗାସିଲେ ଧର୍ମ
ପ୍ରାଣୀମାନେ ଛାଡ଼ିଲେଣି ଯେ ଯାହାର କର୍ମ ।
ବ୍ରାହ୍ମଣମାନେ ହବି ନ ଦେଲେ ଅଗ୍ନିମୁଖେ
ଦିଗପାଳେ ଜଣାଇଲେ ଏଣୁ ମୋତେ ଦୁଃଖେ
ମର୍ତ୍ତ୍ୟଲୋକେ ହୋଇଲେ ଅତି ଅନ୍ୟାଚାର
ଲୋକମାନେ ନ ପାଳିଲେ ଯେ ଯାହା ଆଚାର
ଦେବା ଦୟା ଦୁଇକଥା କାହାରିହିଁ ନାହିଁ
ପୃଥ୍ୱୀଦେବୀ ମହାଭରା ପାଇଲା ଗୋସାଇଁ ।
ଏହିପରି ମୋତେ ଜଣାଇଲେ ଦେବଗଣ
ମୁଁ ଅବତାର ହେବି କଲଇଁ ବିଚାରଣ ।
ଆନ ହେତୁ ମହଭାରା ନୋହିବ ନିବାରି
ମୋହ ବିନୁ ଆନ କେହି କରି ତ ନପାରି ।
ତୋହର ଦେହେ ଥାଇ ମୁଁ କରିବି ପୃଥ୍ୱୀରକ୍ଷା
ଅବତାର ହୋଇବାକୁ ନାହିଁ ମୋର ଇଚ୍ଛା ।
ତୁ ପୁଣ୍ୟପୁରୁଷ ତୋତେ ହୋଇଲି ପ୍ରସନ୍ନ
ଏସନକ ଆଜ୍ଞା ଦେଲେ ଶ୍ରୀବତ୍ସ ଲାଞ୍ଛନ ।
ଆପଣାର କଣ୍ଠରୁ କାଢ଼ିଲେ ରତ୍ନମାଳ
ପର୍ଶୁରାମ କଣ୍ଠେ ଦେଲେ ମଦନ ଗୋପାଳ ।
କର୍ଣ୍ଣକୁ କୁଣ୍ଡଳ ମୁକୁଟ ଦେଲେ ତାର ଶିରେ
କୁଠାର ସମର୍ପିଲେ ପର୍ଶୁରାମ କରେ ।

ଦିବ୍ୟ ଅସ୍ତ୍ରମାନଙ୍କୁ କହିଲେ ବନମାଳୀ ।
ତୋଷମନ ଘେନିଣ କହି ତପଶାଳୀ ।
ଗରୁଡ଼ ପୃଷ୍ଠ ଉପରୁ ଉତୁରି ଶ୍ରୀହରି
ଅତି ଶ୍ରଦ୍ଧାରେ ପର୍ଶୁରାମକୁ କୋଳକରି ।
ସେ ବେନି ଶରୀର ଏକତ୍ୱମୟ ଦିଶେ
ମହାମହ ତେଜ ପର୍ଶୁରାମର ବିକାଶେ ।
ଏହି ସମୟରେ ସକଳ ଦେବଗଣ
ଯେ ଯାହାର ଆୟୁଧ ଦେଲେକ ସେ ପୁଣ ।
ବେଦବର ଆସିଣ ଆୟୁଧ ଦେଇଗଲା
କପିଳାସ କନ୍ଦରୁ ମୁହିଁ ଗଲି ପରା ।
ପିନାକୀ ପାଶୁପତ କୁଠାରକୁ ଦେଲି
ଦୁଷ୍ଟଜନକୁ ମାର ବୋଲିଣ ବୋଇଲି ।
ଏତେ କହି ମୁହିଁ ଯେ ଅଇଲି ନିଜ ସ୍ଥାନ
ବାସୁଦେବ ବିଜେକଲେ ଶୟନକୁ ପୁଣ ।
ସକଳ ଦେବତାଏ ଯେଝା ସ୍ଥାନ ଗଲେ
ଧନୁଶର ପାଇ ପର୍ଶୁରାମ ତୋଷ ହେଲେ ।
ବଇଷ୍ଣବ ଧନୁ କରେ ଧରି ପର୍ଶୁପତି
ଦକ୍ଷକରେ କୁଠାର ପ୍ରଚଣ୍ଡ ମୂରତି ।
ଏଥୁଅନନ୍ତରେ ପୁଣପର୍ଶୁରାମ ବୀର
ମହାକ୍ରୋଧ ହୋଇଣ ହୋଇଲେ ଅଧୀର ।
ସହସ୍ରାର୍ଜ୍ଜୁନର ପୁରକୁ ଧାଡ଼ିଦେଲା ।
ପ୍ରଥମ ଦିଗବିଜେ ତହିଁକି ଆଗ କଲା ।
ନଗରେ ପଶିଣ ଅନେକ ଲୋକ ମାରି
ରଥ ଗଜ ହୟ ଆଦି ବହୁତ ସଂହାରି ।
ଚାର ଜଣାଇଲା ଯାଇ ନୃପତିର ଆଗେ
ସେ ପର୍ଶୁରାମ ଆସିଛି ଅତି ମହାରାଗେ ।
ନଗ୍ରରେ ପଶି ତୋର ଅନେକ ଲୋକ ମାରି
ଯୋଦ୍ଧା ହସ୍ତୀ ପଦାତି ବହୁତ ସଂହାରି ।
ସପତ ଘଡ଼ି ସୂର୍ଯ୍ୟ ପରାଏ ତା ଜ୍ୟୋତି
ଏ ତୋର ସୈନ୍ୟଙ୍କୁ ଦେବ ମାଇଲା ବିକୋତି
ଶୁଣି ନୃପବର ବୋଇଲା କୋପ କରି
ଯାଅରେ ପୁତ୍ରେ ବେଗେ ତାହାକୁ ଆଣ ଧରି
ଉପ୍ରୋଧ ଛାଡ଼ିକରି ତାକୁ ବଧ କର
ପଳାଇଯିବ ତାକୁ ନିର୍ବନ୍ଧ କରି ଧର ।
ବେଳେବେଳେ ଆସିଣ କରଇ ଜଞ୍ଜାଳି
ଏ ମୋହର ସୈନ୍ୟଙ୍କୁ ପକାଇଲା ଦଳି ।

ଶୁଣି ସଜ ହେଲେ ଶତେକ ତନୟେ
ଅନେକ ବଳ ସଙ୍ଗରେ ଘେନିଣ ଧେ ଆଏ ।
ଧର ଧର ମାର ମାର ଶୁଭଇ ଶବଦ
ଡରେଣ ନଗ୍ରଜନେ ହୋଇଲେ ନିସ୍ତବ୍ଧ ।
ପର୍ଶୁରାମକୁ ଯାଇ ବେଢ଼ିଲେ ସଇନି
ପ୍ରହାର କରନ୍ତି ଯେ ଯାହା ଶସ୍ତ୍ର ଘେନି ।
ମୂଷଳ ପ୍ରମାଣରେ ଏକୁ ଏକ ଶର
ହାଙ୍କିଣ ବିନ୍ଧନ୍ତି ସେ ଶକତି ମୃଦୁଗର ।
ବଇଷ୍ଣବ ଧନୁ ପର୍ଶୁରାମ ଅଛି ଧରି
ବଳକୁ ସଂହାର କଲେ କୁଠାର ପ୍ରହାରି ।
ଏକା ପ୍ରହାରକେ ଲକ୍ଷ ଲକ୍ଷ ସେନାସେନାଶଇ
କୋପଭରେ ପୁଣ ପୁଣ କୁଠାର ପେଷଇ ।
ରଥ ଗଜ ସୈନ୍ୟ ବହୁତ ନାଶ କଲା
ରକ୍ତନଦୀ ବୀର କ୍ଷଣକେ ବୁହାଇଲା ।
ରଜାର ନନ୍ଦନଙ୍କୁ ପର୍ଶୁଧରି ପିଟି
ଶତେକ ନନ୍ଦନ ପଡ଼ିଲେ ମହୀଲୋଟି ।
ଦେଖିଣ ପଳାଇଲେ ସଇନି ସକଳ
ଯାଇଣ ଜଣାଇଲେ ରାଜାଙ୍କୁ ସକଳ ।
ସମସ୍ତ ସୈନ୍ୟଙ୍କୁ ତୋର ନାଶିଲା ପର୍ଶୁଧର
ରଣରେ ପଡ଼ିଲେ ତୋର ଶତେକ କୁମର ।
ପୂର୍ବ ପର୍ଶୁରାମ ସେ ନୁହଇ ଗୋସାଇଁ ।
ତାହାର କୋପକୁ ଭାଜନ କେହି ନାହିଁ ।
ଶୁଣିଣ ସହସ୍ରାର୍ଜ୍ଜୁନ ହୋଇଲାକ ଶଙ୍କ
ଥରହର ହୋଇଣ କମ୍ପଇ ତାର ଅଙ୍ଗ ।
ବିମାନ ଆରୋହିଣ କରେ ଶାସ୍ତ୍ର ଧରି
ସଙ୍ଗରେ ଅଛନ୍ତି ବହୁତ ଶସ୍ତ୍ରଧାରୀ ।
ଢୋଲ ଦମା ଟମକ ବାଜଇ ବୀରତୂର
ଆଲମ୍ୱ ପାଟଛତ୍ର ବିମାନ ଅପାର ।
ପର୍ଶୁରାମକୁ ଚାହିଁଣ ବୋଲଇ ନରପତି
ଶସ୍ତ୍ର ଧରି କେମନ୍ତେରେ ଯୁଝୁଅଛୁ ଯତି ।
ସମରେ ନପାରି ପୁଣ ପଳାଇଣ ଯାଉ
ଅରଣ୍ୟରେ ଲୁଚିକରି ଧାଡ଼ି ମୋତେ ଦେଉ
ସୈନ୍ୟ ସହିତେ ମୋର ପୁତ୍ରକୁ ମାଇଲୁ
ରାଜା ବାହୁତଳେ ଥାଇ ଦୋରେହା ହୋଇ
ଆଜ ତୋର ଜୀବନରେ ଯିବ ଯମଆଳ
ମୋତେ ଯେବେ ଭେଟିଲୁ ପୁରିଲା ତୋରକାଳ

ଏ ବଚନ ଶୁଣିଣ ବୋଇଲା ପଶୁ ରାଗେ
ଆସିଣ ମିଳିଲା ସହସ୍ରାର୍ଜ୍ଜୁନ ଆଗେ ।
କୁଠାର ଧରିକରି ମାରିଲା ରୋଷଭରେ
ଦେଖିଣ ନୃପତି ତାହା ବଞ୍ଚାଇଲା କରେ ।
ପର୍ଶୁ ବାଜିକରି ଛିଡ଼ିଲା ତାର ବାହା
ସହସ୍ରଭୂଜ କୋପେ ହୋଇଲା ନରନାହା ।
ଦେଖିଣ ପର୍ଶୁରାମ ପେଷିଲା କୁଠାର
ଛେଦି ପକାଇଲା ସେ ସହସ୍ରେକ କର ।
ମୁଣ୍ଡାବୃକ୍ଷ ପ୍ରାୟ ଦିଶିଲା ନୃପତି
ପାଶୁପତ ନାରାଚ ବିନ୍ଧିଲା ପର୍ଶୁପତି ।
ମସ୍ତକ ଛିଡ଼ି ତାହାର ପଡ଼ିଲା ଭୂତଳେ
ଧାଇଁଣ ପର୍ଶୁରାମ ବସିଲା ବକ୍ଷସ୍ଥଳେ ।
ସଶସ୍ତ୍ର ଥୋଇ ଯାଇ କନ୍ଧରେ ତାର ଚଢ଼ି
ମହାକ୍ରୋଧ ହୋଇ ବାମ କରେ ନିଶ ମୋଡ଼ି
କନ୍ଧକୁ ଚାପିଣ ଟେକି ପାଦ ବେନି
ପିତୃ ତର୍ପଣ କଲା ରୁଧିରକୁ ଘେନି ।
ସ୍ୱର୍ଗରୁ ଦେବତାମାନେ ପୁଷ୍ପବୃଷ୍ଟି କଲେ
ଅପସରୀମାନେ ହର୍ଷେ ହୁଳହୁଳି ଦେଲେ ।
ଦୁନ୍ଦୁଭି ବଜାଇଲେ ସମସ୍ତ ବିଦ୍ୟାଧରୀ
ସୁସ୍ୱରେ ଗାୟନ କଲେ ଅପସରୀ ।
ପର୍ଶୁରାମ ତେଜ ଦିଶେ ମଧ୍ୟାହ୍ନ ରବି ଜିଣି
ସ୍ୱୟଂ ଅବତାର ହେଲେ କି ଚକ୍ରପାଣି ।
ତର୍ପଣ ସାରିଣ ଉଠିଣ ଧନୁଧରି
ଦକ୍ଷିଣ ଭୁଜେ କୁଠାର ଅଛଇ ଉଭାରି ।
ରାଗେ ଥରହର ହୋଇ ଦଶଦିଗ ଚାହିଁ
ଛାମୁରେ ଭାଜନ ତାର ରହନ୍ତା କେ ନାହିଁ ।
ନଗ୍ରରେ ପଶିଣ ମାରଇ ସର୍ବଜନ
ବାଳ ବୃଦ୍ଧ ଛାଡ଼ିଣ ମାଇଲା ସଇନ ।
ପୁରୁଷମାନଙ୍କୁ ମାଇଲା ସକଳ
କି ଜାଣି ନଗରେ ପ୍ରବେଶ ହେଲା କାଳ ।
ନଗ୍ର ତୁଚ୍ଛା କରି ସେହୁ ବାହୁଡ଼ି ଅଇଲା
ଦଶଦିଗକୁ ପୁଣି ଦିଗବିଜେ କଲା ।
ପାର୍ବତୀ ବୋଲନ୍ତି ଶୁଣ ହେ ଈଶାନ
ପର୍ଶୁରାମକୁ ବଳି ନାହାନ୍ତି କ୍ଷତ୍ରୀ ପୁଣ ।
ସପ୍ତପୁର ସାଧିକଲା କେବଣହିଁ ମତେ
ବୁଝାଇ କହମୋର ଆଗେ ଶୂଳହସ୍ତେ ।

ତିନିପୁର ସାଧ କରିବାର ମୁଁ ଶୁଣିଲି
ଆଉ ଚାରିପୁର କଥା କିଛି ନ ଜାଣିଲି ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତି
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜିଣିଲେ ଭୃଗୁପତି ।
ସହସ୍ରାର୍ଜ୍ଜୁନ ମାରିଣ କୋପରେ ଚଳିଲେ
ସୁତଳ ପୁରରେ ବଳି ନୃପତି ଭେଟିଲେ ।
ଯେତେବେଳେ ବାସୁଦେବ ବାମନରୂପହେଲେ
ବଳିକି ନେଇଣ ସୁତଳେ ରଖିଲେ ।
ସେ ପୁରେ ରାଜା ତାକୁ କଲେ ନାରାୟଣ
ବଳବନ୍ତ ପଣ ଜାଣି ଜଗିଲେ ତାକୁ ପୁଣ ।
ସେ ବଳିକି ଜିଣିଲେ ପର୍ଶୁରାମ ଯାଇ
ବାମନ କହିବାରୁ ଶାନ୍ତ ଭୃଗୁସାଇଁ ।
ନୋହିଲେ ସେ ବଳିକି ମାରିଥାନ୍ତେ ପୁଣି
ବଳବନ୍ତ ଦେଖିଣ ନ ଛାଡ଼େ ଭୃଗୁ ପୁଣି ।
ତାହାର ବଡ଼ବାପ ଅଟେ ପ୍ରହଲାଦ ।
ବାସୁଦେବଙ୍କଠାରେ ହେଲା ଭକ୍ତିଭାବ ।
ଭକତି ଦେଖି ତାର ହରି ଘେନିଗଲେ
ଶୂନ୍ୟପୁରରେ ନେଇ ରାଜପଣ ଦେଲେ ।
କିଛିଦିନ ଅନ୍ତରେ କଲେ ଦେବ କୂଟ
ସେହି ପ୍ରହଲାଦ ହରିଙ୍କି ନ ଚିହ୍ନିଲାତ ।
ସେଠାରୁ ନାରାୟଣ ତା ପ୍ରତି କ୍ରୋଧ ହେଲେ
ବେତାଳ ପୁରେ ନେଇ ତାହାକୁ ରଖିଲେ ।
ବେତାଳ ପୁରେ ସେ ହୋଇଲା ରାଜନ
ତାକୁ ଜଗି ରହିଲେ ନୃସିଂହ ରୂପେ ପୁଣ ।
ସେ ପୁରେ ପର୍ଶୁରାମ ପ୍ରବେଶ ହୋଇଲା
ନୃସିଂହ ରୂପ ଦେଖି ଗଦା ଉଞ୍ଚାଇଲା ।
ନୃସିଂହ ବୋଇଲେ ଶୁଣ ଭୃଗୁପତି
ତୁହି ତ ବାସୁଦେବ ନ ଚିହ୍ନୁ ମୋତେ ନିକି
ପର୍ଶୁରାମ ବୋଇଲେ ତୁ ଯେବେ ନାରାୟଣ
ବିଗୁଣ ରୂପ କିମ୍ପାଇଁ ଧରିଅଛୁ ପୁଣ ।
ଶ୍ରୀହରି ବୋଇଲେ ହିରଣ୍ୟ ଦୈତ୍ୟ ଥିଲା
ଏହି ରୂପ ଧରି ମୁଁ ତାହାକୁ ମାଇଲି ପରା ।
ପର୍ଶୁରାମ ବୋଇଲେ ମାଇଲୁ ଯେବେ ତୁହି
ସବୁଦିନେ ସେ ରୂପ ରଖିଛୁ କାହିଁପାଇଁ ।
ନୃସିହ ବୋଇଲେ ତୁ ଶୁଣ ଭୃଗୁପତି
ହିରଣ୍ୟ କୁମର ଅଟଇ ମୋର ଭକ୍ତି ।
ପ୍ରତିଦିନ ଦର୍ଶନ କରେ ମୋର ରୂପ
ତେଣୁ କରି ତା ପାଶେ ଅଚି ମୋ ସ୍ୱରୂପ ।
ଏପୁରେ ଯେତେ ଜନ ସମସ୍ତେ ସଂଥ ଜାଣ
ଏପୁରରେ ତୋର କାର୍ଯ୍ୟ ନାହିଁ ଭୃଗୁ ଜାଣ ।
ପର୍ଶୁରାମ ବୋଇଲେ ଅଣାଅ ପ୍ରହଲାଦ
ସ୍ୱର୍ଗରେ ଦେବତା ହେଲା କେଉଁ ଶ୍ରଦ୍ଧ ।
ଶୁଣି କିମ୍ପା ତୋହଠାରେ ଅଭାବ ହୋଇଲା
ପୁଣି କେଉଁ ଗୁଣରେ ସେ ଭକତି ଲଭିଲା ।
ନୃସିଂହ ବୋଇଲେ ଶୁଣ ହେ ଭୃଗୁପତି
ସେ ଅସୁର ସବୁଦିବେ ଅଟେ ସଂଥମତି ।
ଦେବଙ୍କର ବିଚାରେ ସେ ଅଭାବ ମୋତେ ହେଲା
ଦେବକୂଟ ବୋଲିଣ ଜାଣି ସେ ଭାବିଲା ।
ମୁହଁତ ଭକତ ଅଟେ ହେ ଭାବଗ୍ରାହୀ
ତେଣୁକରି ଭକ୍ତଙ୍କ ପାଶରେ ଅଛି ମୁହିଁ ।
ପର୍ଶୁଧର ବୋଇଲେ ତୁମ୍ଭର ବାମନ ଏକି ରୂପ
ପୁଣିତ ନୃସିଂହ ରୂପ ହୋଇଲା ପ୍ରତ୍ୟକ୍ଷ ।
ଅନନ୍ତ ଶର୍ଯ୍ୟାରେ ଦେଖିଅଛୁ ଦେବ
ଗୋଲୋକରେ ଦେଖିଲୁ ରାଧାକୃଷ୍ଣ ରୂପ ।
ଅନନ୍ତ ଶଯ୍ୟାରେ ଅଛି ତୁମ୍ଭେ ଶୋଇ
ଏକଥା ଆଚମ୍ବିତ ମୋତେ ଯେ ଲାଗଇ ।
ନୃସିଂହ ବୋଇଲେ ମୋର ଅନେକ ଯେ ରୂପ
ବାମନ ନୃସିଂହ ଦେଖିଲୁ ଏବେ ତ ।
ତୁହି ତ ପର୍ଶୁରାମ ମୋର ରୂପ ଗୁଣ
ଯେଉଁଠାରେ ସୁମରିବୁ ଦେଖିବୁ ଭୃଗୁ ଜାଣ ।
ଶୁଣିଣ ପର୍ଶୁରାମ ସନ୍ତୋଷ ହୋଇଲା
ଧନ୍ୟ ଧନ୍ୟ ନୃସିଂହ ନିସ୍ତରିଲ ବୋଇଲା ।
ଶୁଣିକରି ନୃସିଂହ ଡକାଇ ପ୍ରହଲାଦ
ଅଇଲା ହିରଣ୍ୟର ନନ୍ଦନ ଯେ ବେଗ ।
ଦେଖିଣ ପର୍ଶୁରାମ ଧଇଲେ ତାର ବାଳ
ଦୁଇଥର ବୁଲାନ୍ତେ ଆରତ ହିରଣ୍ୟ ଦୁଲାଳ ।
ଆରତେ ପ୍ରହଲାଦ ନୃସିଂହ ସୁମରି
ଶୁଣିଣ ପର୍ଶୁରାମ ବାଳ ଦେଲା ଛାଡ଼ି ।
ନୃସିଂହ ଦେଖିଣ ପ୍ରହଲାଦର ଦଣ୍ଡ
କ୍ରୋଧରେ ଗର୍ଜନ କରିଲେ ପ୍ରଚଣ୍ଡ ।
ପଶୁରାମ କ୍ରୋଧରେ ହୋଇଲେ ଜର୍ଜର
ଥର ଥର ହୋଇଣ କମ୍ପଇ ଅଧର ।

ଦେଖିଣ ପର୍ଶୁରାମ ଗଦା କରେ ଧରି
ତାହା ଚାହିଁ ନୃସିଂହ ବିକ୍ରମ ମୂର୍ତ୍ତି ଧରି ।
ଦେଖିଣ ପର୍ଶୁରାମ ହୋଇଲେକ ମେରୁ
ନୃସିଂହ ଦେଖିଣ ବିଚାରେ ସେଥିରୁ ।
ଆପଣା ଆପଣାରେ ହେବ କିରେ ରଣ
କୌମୋଦକୀ ଗଦାକୁ ଧଇଲେ ପର୍ଶୁରାମ ।
ନୃସିଂହ ବୋଇଲେ ଭୃଗୁପତି ଶୁଣ
ଭକ୍ତକୁ କିମ୍ପାଇଁ ଦଣ୍ଡିଲୁ ଆପଣ ।
ଭୃଗୁପତି ବୋଇଲେ ନୃସିଂହ ତୁ କି ବାଇ
ମାୟାରେ ରୂପ ତୋର ଛଦ୍ମେ କହୁ ତୁହି ।
ପ୍ରହଲାଦ ଢଟାଳିରେ ଅଟଇ ତୋହର
ଜଣାଗଲା ତୋହର ବେଭାର ସମ୍ବର ।
ନୃସିଂହ ବୋଇଲେ କହ ସେଥି କଥା
ଆପଣ ଆପଣାରେ ହେବ ବଡ଼ ବ୍ୟଥା ।
ପର୍ଶୁରାମ ବୋଇଲେ ପ୍ରହଲାଦ ଭକ୍ତ
ଏକା ଅଙ୍ଗ ଗୋଟି କିମ୍ପା କଲେ ସେ ବିହିତ
ନୃସିଂହ ବୋଇଲେ ତୁ ସମ୍ଭାଳି ନପାରିଲୁ
ଅଳପ କଥାରେ ବହତ ଦଣ୍ଡ ଦେଲୁ ।
ପର୍ଶୁରାମ ବୋଇଲେ ମୁଁ ନାଶିଲି ତାରଗର୍ବ
ଅସୁର ପ୍ରକୃତି ଯାଇ ନାହିଁ ତାର ହୃଦ ।
ଆରତ ବେଳରେ ସେ ତୋତେ ସୁମରିଲା
ସୁଖୀ ହେଲା ବେଳେ ସେ ତୋତେ ସୁମରିଲା ।
ନୃସିଂହ ବୋଇଲେ କଥା ଅଟେ ସତ
ଆସିଣ ମାନ୍ୟ ତୋତେ ନୁହଇ ଅସୁରାନ୍ତ ।
ନୃସିଂହ ବୋଇଲେ ପ୍ରାଣ ଏବେ ପାଇ
ଜିଣିଲି ମୁଁ ହାରିଲି ଯାଅ ଭୃଗୁସାଇଁ ।
ମୋର ନାମ ଧରନ୍ତେ ତୁ ତାହାକୁ ରଖିଲୁ
ମୋହର ପ୍ରତିଜ୍ଞା ରଖି ତାହାକୁ ଦଣ୍ଡିଲୁ ।
ଶୁଣିଣ ପର୍ଶୁରାମ ନମସ୍କାର କଲେ
ଶାନ୍ତ ହୋଇ ନୃସିଂହ ସନ୍ତୋଷ ହୋଇଲେ ।
ତଳ ପୁରରୁ ପର୍ଶୁରାମ ଚଳିଗଲା
କୃତାନ୍ତକ ପୁରରେ ପ୍ରବେଶ ହୋଇଲା ।
ସେହି ପୁର ଲୋକଙ୍କୁ ସେ ପୁରେ ଦେଖିଲା
ସମସ୍ତ ଲୋକମାନେ ଅଟନ୍ତି ଯେ ଭଲା ।
ସମସ୍ତେ ପର୍ଶୁରାମଙ୍କୁ କରନ୍ତି ନମସ୍କାର
ମାନ୍ୟଧର୍ମ ଦେଖିଣ ପର୍ଶୁରାମ ହେଲେ ସ୍ଥିର ।

ସେ ପୁରେ ଦୁଷ୍ଟ ନ ଦେଖି ପର୍ଶୁରାମ ଗଲା
ରସାତଳ ପୁରରେ ପ୍ରବେଶ ହୋଇଲା ।
ସେ ପୁରେ ବିରାଟ ପୁରୁଷ ଦେଖିଲା ପର୍ଶୁରାମ
ଶତେବାର ପର୍ଯ୍ୟନ୍ତ ଓଗାଳି ଶୁଏ ପୁଣ ।
ଦେଖିଣ ବିରାଟ ପରମ ତୋଷ ହେଲେ
ସପ୍ତପୁର ଦିଗବିଜେ କଲୁ କି ପଚାରିଲେ
ପର୍ଶୁରାମ ବୋଇଲେ ତୁମ୍ଭର କଲ୍ୟାଣ
ମୋହର ବଳେକି ହୁଅଇ ଏମାନ ।
ବିରାଟ ବୋଇଲେ ତୁ ଗୋଲୋକ ନାରାୟଣ
ଯୁଗ ପ୍ରଳୟ ପର୍ଯ୍ୟନ୍ତ ଥାଅରେ ତୁ ପୁଣ ।
ଦୁଷ୍ଟଙ୍କୁ ନିବାରିଲୁ ସଂଥଙ୍କୁ ପାଳିଲୁ
ଆପଣାର ଅଙ୍ଗରେ ଆପଣାକୁ ଦେଖିଲୁ ।
ତୋ ବଳରେ ତୁହି ହୋଇଲୁ ନିଯୁକ୍ତ
ପ୍ରଳୟ କାଳେ ଗୋଲୋକ ହୋଇବ ପ୍ରାପତ
ଯାଅ ବାବୁ ଏପୁର ଅଟଇ ମୋହର
ପର୍ଶୁ ବୋଇଲେ ଦୁଷ୍ଟ ନାହାନ୍ତି ଏପୁର ।
ଥିଲେ ମୋତେ କହ ହେ ଧରିତ୍ରୀ ପୁରୁଷ
ବିରାଟ ବୋଇଲେ ଶୁଣ ଭୃଗୁଶିଷ୍ୟ ।
କାର୍ଯ୍ୟସିଦ୍ଧି ହେଲା ଦୁଷ୍ଟ କେହି ନାହିଁ
ମୋହର ନାମକୁ ସମସ୍ତେ ଛନ୍ତି ଧ୍ୟାଇ ।
ପର୍ଶୁରାମ ବୋଇଲେ କିଏ ସେ ଅଛି କହ
ତାହାକୁ ମାରିଲେ ଫିଟୁ ମୋ ସନ୍ଦେହ ।
ବିରାଟ ବୋଇଲେ ନ ମାରିବୁ ତାଙ୍କୁ
ଯେ ଯାହା କହିବେ କହିବୁ ଆମ୍ଭଙ୍କୁ ।
ଯାହ ସେ ଗିରିବର ଦେଖିବୁ ଏହିକ୍ଷଣି
କିଛି ନ ବୋଲିବୁ ମୋହର ରାଣ ପୁଣି ।
ଶୁଣିଣ ପର୍ଶୁରାମ ବେଗେ ଚଳିଗଲା
ଗିରିର ଉପରେ ପ୍ରବେଶ ହୋଇଲା ।
ଦେଖିଲା ପିତା ମାତା ବସିଛନ୍ତି ପୁଣ
ଯୋଗଲୟେ କରିର ଭଜନ୍ତି ରାମନାମ ।
ଦେଖିଣ ପାର୍ଶୁରାମ ପାଏ ପଡ଼ି ଶୋଇ
ଶତେବାର ପର୍ଯ୍ୟନ୍ତ ନମିଲାକ ତହିଁ ।
ପିତା ମାତା ବୋଇଲେ ଉଠରେ କୁମର
କାର୍ଯ୍ୟସିଦ୍ଧି ହୋଇଲା ଏବେ ଯେ ଆମ୍ଭର ।
ସହସ୍ରାର୍ଜ୍ଜୁନ ମାରିବାକୁ ବିରାଟକୁ ଭଜୁ
ଏବେ ତ ସୁଖୀ କଲୁ ଉଦ୍ଧାର କଲୁ ବାବୁ ।

ଯାଆଯା ବିରାଟଙ୍କୁ କହିଣ ଏ ପୁରୁ
ବିରାଟ କ୍ରୋଧ ହେଲେ ଯାଇତ ନପାରୁ ।
ଶୁଣିଣ ପର୍ଶୁରାମ ନମସ୍କାର କଲା
ପିତାମାତାଙ୍କ ବଚନ ପାଳି ଲେଉଟିଲା ।
ବିରାଟଙ୍କ ଚରଣେ କଲା ନମସ୍କାର
ବିରାଟ ବୋଇଲେ ଯାଅ ତୁ ସତ୍ୱର ।
ସଦାଶିବଙ୍କ ତୁଲେ ଭେଟ ହୋଇ ଯିବୁ
ମର୍ତ୍ତ୍ୟପୁରେ ନିଷ୍ଚିନ୍ତରେ ତପସ୍ୟା କରିବୁ ।
ଶୁଣିଣ ପର୍ଶୁରାମ ଅଇଲେ ବେଗକରି
ମୋତେ ଦେଖି ପାତାଳୁ ଗଲେ ପର୍ଶୁଧାରୀ ।
କ୍ଷତ୍ରିୟ କରି ନ ଥୋଇଲା କାହିଁ
ଏମନ୍ତେଣ ସାଧିକଲା ଯେ ସପତ ମହୀ ।
ରକତ ନଦୀରେ ତର୍ପଣ କରିଲା
ଅସ୍ଥି କୁଢ଼ରେ ବସୁନ୍ଧରୀ ପୂର୍ଣ୍ଣ ହେଲା ।
ମେଦିନୀ ଶୂନ୍ୟ କରି ବାହୁଡ଼ି ତହୁଁ ଆସି
ପୁଣ୍ୟସ୍ଥାନ ଦେଖିଣ ତପକରି ବସି ।
ପୁଣି ପିତାବଧ ମନରେ ତାର ହୋଇ
ଦଶଦିଗକୁ ସେ ବିଜେକରି ଯାଇ ।
ଯେବଣ ପୁର ତାର ପ୍ରବେଶ ହୁଏ ମନେ
ତକ୍ଷଣେ ପ୍ରବେଶ ହୁଅଇ ସେହିସ୍ଥାନେ ।
ସେ ନୃପତିକି ମାରି ରକ୍ତ ଚିତା ଘେନି
ନକ୍ଷତ୍ରୀ କଲା ସେ ବୁଲିଣ ମେଦିନୀ ।
ସହସ୍ରାର୍ଜ୍ଜୁନକୁ ଯେତେବେଳେ ହାରି
ତେତେବେଳେ ବୁଲି ପୃଥ୍ୱୀ ନିକ୍ଷତ୍ରୀ ସେ କରି
ଏକୋଇଶ ବାର ସେହୁ ମେଦିନୀ ବୁଲିଲା
କ୍ରୋଧ ହେତୁ ତାହା କିଛିହିଁ ନ ଲାଗିଲା ।
ନିକ୍ଷତ୍ରୀ କରିଣି ବସିଣ ତପ କଲା
ଏଥୁଅନନ୍ତରେ କିଛି ଦିନ ଗଲା ।
ବଶିଷ୍ଠ କହନ୍ତି ଶୁଣ ଦଶରଥ ରାଏ
କୋପେ ପର୍ଶୁରାମ ବୀରହୀନ ପୃଥ୍ୱୀ କିଏ ।
ପାର୍ବତୀ ବୋଇଲେ ଶୁଣ ପଞ୍ଚାନନ
ଷଷ୍ଠ ଅବତାର କଥା ସରିଲା ଏବେ ପୁଣ ।
ଈଶ୍ୱର ବୋଇଲେ ତୁ ଗୋ ଶୁଣ ଭଗବତୀ
ଅସୁରଙ୍କୁ ନ ମାଇଲେ ପର୍ଶୁରାମ ଯତି ।
ଚାରି ରାବଣ ଯହୁଁ ହୋଇଲେ ପ୍ରବଳ
ବସିଣ ବିଚାରନ୍ତି ଦେବତା ସକଳ ।
ବେଦବର ସଦାଶିବ ସଙ୍ଗରେ ଘେନି ପୁଣ
କ୍ଷୀର ସାଗର ତୀରକୁ ଚଳିଲେ ସେ ପୁଣ ।
ସେଠାରେ ବସିଣ ଅନେକ ସ୍ତୁତି କଲେ
ତେବେ ସେ ନାରାୟଣ ଶୟନୁଁ ଉଠିଲେ ।
ଶଙ୍ଖଚକ୍ର ଅନନ୍ତକୁ ସଙ୍ଗରେ ଘେନିଣ
ଦେବଙ୍କ ସଙ୍ଗରେ ଅଇଲେ ନାରାୟଣ ।
ଦେବତାଙ୍କୁ ବୋଇଲେ ଶୟନ ବାସୁଦେବ
ରାବଣର ସଙ୍ଗରେ କର ଯାଇ ଭାବ ।
ଶୁଣିଣ ଦେବତାଏ ଲଙ୍କାପୁର ଗଲେ
ଦଶଗ୍ରୀବ ଆଗରେ ପ୍ରବେଶ ହୋଇଲେ ।
ବାସୁଦେବ ଚତୁର୍ଦ୍ଧା ମୂରତି ଧରି ପୁଣ
ଅଯୋଧ୍ୟା ରାଜାଘରେ ଜନମିଲେ ଜାଣ ।
ଋଷ୍ୟଶୃଙ୍ଗ ଆସିଣ ଚରୁ ଅନ୍ନ ଦେଲେ
ତେବେ ସେ ବାସୁଦେବ ଜନମ ହୋଇଲେ ।
ବାର ବର୍ଷରେ ବିଶ୍ୱାମିତ୍ରର ଯାଗ ରଖି
ଅହଲ୍ୟାକୁ ପାଷାଣୁ ଦେଲେ ମୁକତିକି ।
ଶିବଧନୁ ଭାଙ୍ଗିଣ ସୀତାଙ୍କୁ ବିଭା ହେଲେ
ବାଟରେ ପର୍ଶୁରାମ ବଳକୁ ହରିଲେ ।
ତେବେ ସେ ବାସୁଦେବ ହେଲେ ଶାନ୍ତମୂର୍ତ୍ତି
ଅଧେବଳ ତାଠାରୁ ହରିଲେ ଶ୍ରୀହରିଟି ।
ତେବେସେ ପର୍ଶୁରାମ ନଗ୍ରରେ ହେଲେ ଲେଖା
ସାକ୍ଷାତେ ନାରାୟଣ ତୋର ପୁତ୍ର ଏକା ।
ପର୍ଶୁରାମ ସାକ୍ଷାତେ ଗୋଲୋକ ଠାକୁର
ଷଷ୍ଠ ଅବତାର ତାର ଏବେ ହେଲା ସ୍ଥିର
ସପ୍ତମରେ ଅବତାର ବାସୁଦେବ ହେଲେ
ଚତୁର୍ଦ୍ଧାରୂପ ଧରି ତୋ ଘରେ ଜନ୍ମିଲେ ।
ପାଞ୍ଚକଥା ତାଙ୍କର ହେଲା ଯେ ପ୍ରବଳ
ପାର୍ବତୀ ଆଗରେ କହନ୍ତି ଶଙ୍କର ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଜାନକୀଙ୍କୁ ଘେନି ରାମ ଅଯୋଧ୍ୟାରେ ଛନ୍ତି ।
ବଶିଷ୍ଠଙ୍କୁ ଦଶରଥ ପଚାରନ୍ତି ପୁଣ
ଶ୍ରୀରାମର କଥା ତୁମ୍ଭେ କହ ମୁନି ଜ୍ଞାନ ।
ପୁତ୍ର ତୋର ବାସୁଦେବ ବୋଲିଣ ମୁନି କହି
ତୋର ଘରେ ଜନ୍ମ ଚତୁର୍ଦ୍ଧାରୂପ ହୋଇ ।
ଶୁଣିଣ ଦଶରଥ ମନରେ ଆନନ୍ଦ
ମୁଖ ବିକାଶିଲା ପୂର୍ଣ୍ଣିମାର ଚାନ୍ଦ ।

ବୋଇଲେ ବାସୁଦେବ ମୋଘରେ ଜାତଯେବେ
ପ୍ରଭୁପଣ ବିଖ୍ୟାତ ନୋହିଲା କିମ୍ପା ଏବେ ।
ପାଞ୍ଚକଥା ଶ୍ରୀରାମ କରିବାର ପୁଣ
ବଶିଷ୍ଠ ବୁଝାଇଣ କହେ କଥା ପୁଣ ।
ଶୁଣିଣ ଦଶରଥ ବଶିଷ୍ଠଙ୍କୁ କହି
ପୁତ୍ରସିନା ଶ୍ରୀହରି କହିଲ ବୁଝାଇ ।
ଜନକର ଦୁହିତା ଅଟନ୍ତି ପୁଣ କିସ
ବୁଝାଇଣ କହ ମୋତେ ସେଥିର ସନ୍ଦେଶ ।
ବଶିଷ୍ଠ ବୋଇଲେ ଶୁଣ ନରସାଇଁ ।
ଜନକର ଦୁହିତା କମଳା ଅଟଇ ।
ଅଯୋନି ସଂଭୂତ ସେ ଧରଣୀରୁ ଜାତ
ଜାତ ହୋଇ ଜାନକୀ ହୋଇଲେ ଯୁବାମତ ।
ଜାଣିକରି ଦୁର୍ବାସା ମୁନି ମିଳିଲେ ସେଠାରେ
ଦେଖିକରି ଜାନକୀ ନମିଲେ ପୟରେ ।
ମୁନି ବୋଇଲେ ଆମ୍ଭର କଥା ମନେ ରଖ
ଶୁଦ୍ଧସ୍ନାନ ଦିନ ଉଜ୍ଜ୍ୱଳ ଘରେ ଦେବୁ ବାସ ।
ତେବେ ଅଶୁଦ୍ଧଟି ନୋହିବ ହେବ ଶୁଦ୍ଧ
ଆମ୍ଭ କହିବାର କଥା ଅଟଇଟି ସିଦ୍ଧ ।
ବିଷ୍ଣୁର ପାଟରାଣୀ ତୁ ସାକ୍ଷାତେ କମଳିନୀ
ମୃତ୍ୟୁପରେ ବିଖ୍ୟାତ ହେବ ମହିମା ପୁଣି ।
ଅଗ୍ନିରେ ପରୀକ୍ଷା ତୁ ସେ ଦିନ କରିବୁ
ଅଗ୍ନିକୁ ଲଗାଇ ତହିଁରେ ପଶିବୁ ।
ତେବେ ତୋ ଦେହଟି ହୋଇବ ଶଉଚ
ଏମନ୍ତ ବୋଲି ଋଷି କହିଲେକ ସ୍ୱଚ୍ଛ ।
ଶୁଣିକରି ଜାନକୀ ସନ୍ତୋଷ ହୋଇଲେ
ସେ କଥା ଗୋଟି ଦେବୀ ମନରେ ରଖିଥିଲେ ।
ରଜସ୍ୱଳା ଯହୁଁ ହୋଇଲେ ସୁନ୍ଦରୀ
ଡାକିଣ ସଖୀମାନଙ୍କୁ କହିଲେ ବିଚାରି ।
ତାହା ଶୁଣି ଦାସୀମାନେ ବେଗେ ଚଳିଗଲେ
ଜନକ ଋଷି ଘରଣୀଙ୍କି ଜଣାଇଲେ ।
ଶୁଣି ଜନକ ପତ୍ନୀ ଆଶ୍ଚର୍ଯ୍ୟିତ ହେଲା
ଜନକ ଋଷି ପାଶେ ଯାଇଣ ଭାଳିଲା ।
ଜନକ ବୋଇଲେ ଆସିଥିଲେ ଋଷି
ଯା କହିଗଲେ ଶୁଣ ଗୋ ପ୍ରେୟସି ।
ତୋର ଘରେସାଗର ଦୁଲଣୀ ଜାତ ହେବ
କାଳେ ସେ ଦେବୀ ନାରାୟଣଙ୍କୁ ଲଭିବ ।
ମୁଁ ବୋଇଲି ତାହା ମୁଁ ଜାଣିବି କେମନ୍ତେ
ସେବୋଇଲେ ଜନ୍ମବେଳେ ଯୁବାସେ ତୁରିତେ
ଏମନ୍ତ କଥାକୁ ଲୟେକର ବ୍ରହ୍ମଚାରୀ
ଆହୁରି କଥାଏ ଶୁଣ ହେତୁକରି ।
ଯେଉଁଦିନ ଶୁଦ୍ଧସ୍ନାନ ତାହାର ହୋଇବ
ପଞ୍ଚଅଗ୍ନି ଲଗାଇ ସ୍ନାନ ସେ କରିବ ।
ତେବେ ତୁ ଜାଣିବୁ ତାଙ୍କୁ ବିଷ୍ଣୁ ପାଟରାଣୀ
ଆହୁରି କଥାଏ ଲୟେ ରଖିଥିବୁ ପୁଣି ।
ଶିବ ଶରାସନ ତୋରପୁରେ ଅଛି
ସେହି ଶରାସନକୁ ଧରିବେ ଶ୍ରୀବତ୍ସି ।
ଆଉ ଅନ୍ୟ ଲୋକମାନେ ନପାରିବେ ଧରି
ଦେବ ଅସୁର ଆଦି ଯେତେ ବଳକାରୀ ।
ଯେ ଧରିବ ତାକୁ ଜାଣିବୁ ନିରଞ୍ଜନ
ଦୁହିତା ଗୋଟି ତାକୁ କରିବୁ ପ୍ରଦାନ ।
ସାକ୍ଷାତେ ବାସୁଦେବ ଦେଖିବ ନେତ୍ରରେ
କୃତାର୍ଥ ଲଭିବୁ ତୁ ଦୁହିତା ଦେବୁ ତାରେ ।
ଆଗରୁ ସେ କଥା ମୋତେ ଅଛଇଟି ଜଣା
ବାସୁଦେବ ନିଶ୍ଚୟେ କରିବେ କରୁଣା
ଶୁଣିଣ ଜନକରାଣୀ ବେଗେ ଚଳିଗଲା
ଜାନକୀ ପାଶରେ ପ୍ରବେଶ ହୋଇଲା ।
ଦାସୀଙ୍କି ବୋଇଲା ଲଗାଅ ଅନଳ
ଅଗ୍ନିରେ ସ୍ନାହାନ କରୁ ସୀତା ମୋର ।
ଶୁଣିଣ ଦାସୀମାନେ ଅନଳ ଲଗାଇଲେ
ନମସ୍କାର କରି ଦେବୀ ଅନଳେ ପଶିଲେ ।
ଅଗ୍ନିର ଭିତରେ ପଖାଳିଣ ଦେହୀ
ଅଗ୍ନିରୁ ବାହାର ହେଲେ ବଇଦେହୀ ।
ଗର୍ଭୁଶତେ ଗୁଣରେ ଦିଶିଲେ ସୁନ୍ଦର
ଦେଖିଣ ସମସ୍ତେ ହେଲେ ଚମତ୍କାର ।
ବିଚାରିଲେ ନିଶ୍ଚୟେ ଏ ଅଟେ କମଳା
ଏହାଙ୍କର ବର ଯେ ହୋଇବେ ଚକାଡ଼ୋଳା
ମାସକେ ଦୁଇଥର ବର୍ଷକେ ଚବିଶି
ସ୍ନାହାନ କରେ ଦେବୀ ଅଗ୍ନି ମଧ୍ୟେ ପଶି ।
ଏଗାର ବର୍ଷ ଷଡ଼ମାସ ଯାଏ ରହି
ବିଶ୍ୱାମିତ୍ର ଯାଗରଖି ତୋ ପୁତ୍ର ପ୍ରବେଶହୋଇ
ଶିବଙ୍କ ଶରାସନ ଧଇଲେ ଯେ କରେ
ତେଣୁ ଜନକ ଜାନକୀଙ୍କୁ ସମର୍ପିଲେ ।

ଶୁଣିଣ ଦଶରଥ ବିସ୍ମୟରେ କହି
ଏ ଦୁଇକଥାମାନ ତ ଖୋଜିଲେ ନପାଇ ।
ମୋହର ପାଶରେ ଅଛଇଁ ଏକଥା
ପଚାରି ଜାଣିଲେ ସିନା ନୋହିଲେ ସବୁ ମିଥ୍ୟା
ବଶିଷ୍ଠ ବୋଇଲେ ତୁମ୍ଭେ ରାଣୀଙ୍କି ପଚାର
ଗୁପ୍ତରେ ବୁଝ ଏହା ପ୍ରକାଶ ନ କର ।
ଶୁଣିଣ ଦଶରଥ ବେଗେ ଚଳିଗଲେ
ଅନ୍ତଃପୁର ଭିତରେ ପ୍ରବେଶ ହୋଇଲେ ।
କଉଶଲ୍ୟାଙ୍କ ପୁରେ ହୋଇଲେ ପ୍ରବେଶ
ଦେଖିଣ କୌଶଲ୍ୟା ନମିଲେ ସ୍ୱାମୀ ପାଶ ।
ଦଶରଥ ବୋଇଲେ ଶୁଣ ଗୋ ରାମମାତା
କଥାଏ ପଚାରିବି ନ କହିବି ମିଥ୍ୟା ।
ଋଷିମାନେ ବୋଲନ୍ତି ରାମ ଯେ ଶ୍ରୀହରି
ଜାନକୀ ଅଟନ୍ତି ସାଗର କୁମାରୀ ।
ଶ୍ରୀରାମର କଥାତ ଆଗରୁ ଜଣାଗଲା
ଶିବଙ୍କର ଶରାସନ ଯହୁଁ ସେ ତୋଳିଲା ।
ନାରାୟଣ ଅଟନ୍ତି ନିଶ୍ଚୟ ରାମ ମୋର
ଜାନକୀର କଥା ମୋତେ କହ ଗୋ ନିକର ।
ଅଗ୍ନିରେ ସ୍ନାହାନ କି କରଇ ତୋର ବଧୂ
ଏ କଥା ସତ ହେଲେ ସିଦ୍ଧ ହୁଏ ସବୁ ।
କୌଶଲ୍ୟା ବୋଇଲେ ଏକଥା ଅଟେ ସତ
ଶୁଦ୍ଧ ସ୍ନାନ ଦିନ ମୋର ବଧୂର ଏ ମତ ।
ଶୁଣିଣ ଦଶରଥ ବେଗେ ଚଳିଗଲେ
ବଶିଷ୍ଠଙ୍କ ଚରଣେ ପ୍ରଣମିତ ହେଲେ ।
ବୋଇଲେ ତୁମ୍ଭର କଥା ଅଟେ ସତ
ଶ୍ରୀରାମକୁ ରାଜା ମୁଁ କରିବି ନିଶ୍ଚୟତ ।
ବଶିଷ୍ଠ ବୋଲନ୍ତି ଶୁଣ ନୃପବର
ଚଉଦ ବରଷ ଯେ ଶ୍ରୀରାମକୁ ତୋର ।
ଏହି ଲାଗେ ଧଇଲେ ଧରିତ୍ରୀ ଦେବ ଧନ୍ଦି
ବଶିଷ୍ଠ ବୋଇଲେ ଏଥିରେ ଅଛି କଥା ସନ୍ଧି
ଦେବତାଙ୍କ ଛଳରେ ତୋପର ଘରେଜାତ
ଭୃଗୁପତି ହସ୍ତରେ ଗରିଷ୍ଠ ନୁହେ ହତ ।
ସମୁଦ୍ର ଭିତରେ ଲଙ୍କା ନାମେ ଗଡ଼
ସେଥିରେ ରାବଣ କୁମ୍ଭକର୍ଣ୍ଣ ଅଟନ୍ତି ଯେ ରାଢ଼
ଦେବତାଙ୍କୁ ଖଟାନ୍ତି ଆଣିଣ ପାଦତଳେ
ତେଣୁ ବାସୁଦେବ ଜନ୍ମ ଏହା ଘରେ ।

ଅଜୟେ ରାବଣ ଅସୁର କ୍ଷୟଯିବ ।
ଦେବତାମାନଙ୍କ ଦୁଃଖ ଦୂର ହେବ ।
ସେହି କଥା ଜାଣିଣ ପର୍ଶୁରାମ ଗଲା
ପିତାଙ୍କ ସ୍ଥାନରେ ନିଶ୍ଚିନ୍ତେ ତପ କଲା ।
ଶ୍ରୀରାମ ତୁମ୍ଭର ଅଟନ୍ତି ଜ୍ୟେଷ୍ଠପୁତ୍ର
ନାରାୟଣ ଅବତାର ହେଲେ ସେ ନିଶ୍ଚିତ ।
ମୃଗ ବେଣ୍ଟ ପାରିଧି କରନ୍ତି ଦୁର୍ଲଭ
କମଳା ରମଣ ଅଟନ୍ତି ବାସୁଦେବ ।
ଦଶରଥ ବୋଇଲେ ବଶିଷ୍ଠ କଥାଶୁଣି
ତୁମ୍ଭର ଆଗରେ ମୁଁ କରିବି ନୃପମଣି ।
ଶ୍ରୀରାମର ମହିମା ମୁନି କହିଲା ଏଡ଼େ କରି
ଅଯୋଧ୍ୟା ନଗ୍ରରେ ମୁଁ କରିବି ଦଣ୍ଡଧାରୀ ।
ସହଜେତ ଜ୍ୟେଷ୍ଠପୁତ୍ର କୁଳର ପ୍ରଦୀପ
ସେହି ତ ଅଯୋଧ୍ୟାକୁ ଅଟଇ ଯେ ନୃପ ।
ମୋହର ଥାଉଁ ତାକୁ କରିବି ଯୁବରାଜା
ଅଭିଷେକ ହୋଇଣ ସେ ପାଳୁ ଜନପ୍ରଜା ।
ବଶିଷ୍ଠ ବୋଇଲେ ଶୁଣ ରାଜା ତୁହି
ବିଳମ୍ବ ହେଲେ ରାମ ଅଭିଷେକ ହୋଇ ନ ପାରଇ
ମାରିବେ ଅସୁର ଦେବତା ହେବେ ଭଲ
ତେବେ ମହୀଧର ହେବେ ତୋ କୁମର ।
ଶ୍ରୀରାମ ରାଜ୍ୟ ପାଳିବାକୁ ଯେ ଭାଜନ
ଏ ବୁଦ୍ଧି ଯେବେ ତୁହି କରୁଛୁ ରାଜନ ।
ନକର ଅଳସ ତୁ କର ଅନୁକୂଳ
ଏଡ଼େ ଭଲ କଥା ନକର ତୁ ହେଳ ।
ସୁମନ୍ତ୍ର କହିଲେ ଏକଥା ପରିମାଣି
ଭୋଦେବ ଶ୍ରୀରାମଙ୍କୁ କରହେ ନୃପମଣି ।
ଶ୍ରୀମନ୍ତ ସୁରବନ୍ତ ଧାର୍ମିକ ସତ୍ୟବାଦୀ
ସକଳ ଗୁଣେ ଶ୍ରୀରାମ ଅଟନ୍ତି ଗୁଣନିଧି ।
ରଘୁବଂଶକୁ ଯେ ଅଟନ୍ତି ଶିରୋମଣି
ଦଶରଥ ରାୟେ ସଦୋଷ ଏହା ଶୁଣି ।
ଭୋ ମୁନି ବଶିଷ୍ଠ ତୁମ୍ଭେ ଅନୁକୂଳ ଘେନ
ଶ୍ରୀରାମ ନକ୍ଷତ୍ରକୁ ଯୋଗାଏ କେଉଁ ଦିନ ।
ଶୁଣିଣ ବ୍ରହ୍ମଋଷି ଗ୍ରହକୋଷ୍ଠୀ ଥୋଇ
ବାର କୋଷ୍ଠୀରେ ନବଗ୍ରହଙ୍କୁ ଲଗାଇ ।
ପବିତ୍ର ମାସ ଯେ ବୈଶାଖ ଶୁକ୍ଳ
ଖୋଜିଣ ପାଇଲେ ନିକଟେ ଅନୁକୂଳ ।

ପଞ୍ଚମୀରେ ଯେବେ ଗୁରୁବାର ହୋଇ
ଗୁରୁପଞ୍ଚମୀ ବୋଲି ଜ୍ୟୋତିଃଶାସ୍ତ୍ର କହି ।
ପୁଷ୍ୟା ନକ୍ଷତ୍ର ଯେ ଶୁଭ ନାମେ ଯୋଗ
ଶ୍ରୀରାମଚନ୍ଦ୍ର ରାଶିକି ଶ୍ରୀଚନ୍ଦ୍ର ହେଲା ଭୋଗ ।
ବଶିଷ୍ଠ ବୋଇଲେ ଶୁଣ ହେ ରାଜନ
ପାରିଲେ ଅଭିଷେକ କର ପରଦିନ ।
ନୋହିଲେ ଚଉଦ ବରଷ ନ ଯୋଗାଇ
ସୋମବାର ଦିନ ଅଷ୍ଟମ ଗ୍ରହ ହୋଇ ।
ବୃହସ୍ପତି ଯୋଗ ଯିବାର ପକ୍ଷେ ଥାଉ
ଶନିରେ କକଡ଼ା ବସିବେ ପୁଣ ତହୁଁ ।
ଏହାର ପାଞ୍ଚ ଦିବସ ଭୋଗାଭୋଗ ଥିବ
ଶ୍ରୀରାମର ରାଶିକି ଗ୍ରହ ଯେ ଗ୍ରାସିବ ।
ଅଠର ମାସ ଏ ଗ୍ରହ କରିବ ଯେ ଭୋଗ
ମଙ୍ଗଳରେ ସାତମାସ ପକ୍ଷେ ଭୋଗଯିବ ।
ସିଂହରେ ଦେବଗୁରୁ ବସିବାକୁ ଯାଇ
ସେଥିରେ ତେର ମାସ ଯେ ଶୁଦ୍ଧକାଳ ହୋଇ
ତୃତୀୟେ ବୃହସ୍ପତି ନଯୋଗାଏ କିଛି
ଚତୁର୍ଥରେ ଅନେକ ବିଷ୍ଟି ଯୋଗ ଅଛି ।
ପଞ୍ଚମରେ ବୃହସ୍ପତି ଥିବେ ଯେବେ ବସି ।
ସବୁ ଶୁଭ ହୁଏ ଏହା ଜ୍ୟୋତିଃଶାସ୍ତ୍ର ଭାଷି ।
ଷଷ୍ଠମେ ଜୀବଦୋଷ କଷ୍ଟ ଯେ ଅନେକ
ସପ୍ତମେ ଶୁଣ ତୁମ୍ଭେ ନୁହଇ ଅଭିଷେକ ।
ମୀନରାଶିରେ ଯେବେ ବସିବେ ଗୁରୁ ଯାଇ
ହରଣ ପାଦେ କକଡ଼ା ଅମୃତ ଦୃଷ୍ଟି ଦେଇ ।
ଦଶରଥ ଆଗରେ ବଶିଷ୍ଠ କହଇ
ଶୁଣିଣ ଦଶରଥ ମନରେ କଷ୍ଟ ପାଇ ।
ଅଷ୍ଟମ ଘରେ ଯେବେ ରହନ୍ତି ଗଉରୀ
କେବେହେଁ ଭଲନୁହେଁ ଶୁଣହେ ଦଣ୍ଡଧାରୀ
ଅଷ୍ଟମରେ ରାହୁ ମଙ୍ଗଳ ଯେବେ ଥିବେ
ଦୁଃଖକୁ ତ୍ୟାଗ କରି ସୁଖ ମନାସିବେ ।
ଚଉଦ ବରଷ ଆଉ ନୋହିବ ଅନୁକୂଳ
ତାହାଶୁଣି ବୋଲନ୍ତି ଦଶରଥ ମହୀପାଳ ।
ଭୋ ମୁନି ନିକଟେ ରାମ କରିବ ରାଜନ
ବଶିଷ୍ଠ ବୋଲନ୍ତି ଯେବେ ନୋହିବ ପରଦିନ
ଚଉଦ ବର୍ଷେ ଯେ ଅନେକ କଷ୍ଟ ପାଇ
ତହିଁ ଉତ୍ତାରୁ ରାମକୁ ଶୁଭଦଶା ହୋଇ ।

ତେତେବେଳେ ଅନୁକୂଳ ଶୁଣ ହେ ରାଜନ
ସୁର ଅସୁରମାନେ ସଙ୍ଗେ ଥିବେ ଜାଣ ।
କ୍ଷତ୍ରିୟ ବଶ୍ୟ ଯତି ବ୍ରାହ୍ମଣ ହେବେ ମେଳ
ଗନ୍ଧର୍ବ ଅପସରୀ ଦଶଦିଗପାଳ ।
ବ୍ରହ୍ମା ରୁଦ୍ର ଆଦି ଦିଗପାଳ ନାଗବଳ
ସପ୍ତଦ୍ୱୀପ ତିନିପୁର ଋଷି ହେବେ ଠୁଳ ।
ସପ୍ତସମୁଦ୍ରରୁ ସକଳ ତୀର୍ଥ ଜଳ
ଘେନିଣ ଅଭିଷେକ ହେବେ ତୋର ବାଳ ।
ପରଦିନ ଯେବେ କରିବ ଅଭିଷେକ
ପୂର୍ବରୁ ଭାଗ୍ୟଥିଲେ ସୁଯୋଗ ହେବ ଠିକ ।
ପ୍ରଜା ତୁମ୍ଭର ଯେତେକ ଛନ୍ତି ସୈନ୍ୟବଳ
ଲକ୍ଷେ ରାଜା ଏଥିରେ ନୋହିବେ ତ ଠୁଳ ।
ଚାରିପୁତ୍ର ତୁମ୍ଭର ଏକଠାବେ ନାହାନ୍ତି
ଏଥର ଅଭିଷେକ କରି ନପାରୁ ନୃପତି ।
ଚଉଦ ବରଷ ଏଥିରେ ବହିଯିବ
ପାପ ପ୍ରମାଦ ଯେ ବହୁତ ଘଟିବ ।
ତୁମ୍ଭର କର୍ମ ଯେବେ ସୁଫଳ ହୋଇଥିବ
ଶ୍ରୀରାମ ଅଭିଷେକ ନେତ୍ରରେ ଦେଖିବ ।
ଶୁଣିଣ ଦଶରଥ ମନରେ କେ ଅନର୍ଥ କରିବ ।
ଭୋ ମୁନି ଦେବ ବଶିଷ୍ଠ ଏ ଅନତ୍ୟ ସଂସାର
ଭୋ ମୁନି ଦେବ ବଶିଷ୍ଠ ଏ ଅନିତ୍ୟ ସଂସାର
ସାରକଲି ଧାତା ମୋତେ କଲେ ଯେ ଅସାର ।
କାଳ ସମ୍ଭାଳିବ ଆଶା ମୋ ନରହଇ ।
ଯମର ହୃଦରେ ତ ଉପ୍ରୋଧି ନବସଇ ।
ନବ ସହସ୍ର ବରଷ ମୁହିଁ ଯେ ଭୋଗ କଲି
ପିତା ଥାଉଁ ଥାଉଁ ଯବୁରାଜ ହେଲି ।
ପରରେ ପରାଭବ ନ ପାଇଲି କାହିଁ
ଯମ ଯୁଦ୍ଧ କରିଣ ହାରିଲା ମୋତେ ତହିଁ ।
ବୃଦ୍ଧକାଳେ ଚାରିପୁତ୍ର ହୋଇଲେ ପ୍ରାପତ
ଏଣୁ ବୃଷାଳ ହେଲା ରଘୁକୁଳ ଗୋତ୍ର ।
ଶ୍ରୀରାମ ଜ୍ୟେଷ୍ଠ ପୁତ୍ର ଧାମିକ ଶୂରବୀର
ଏହାକୁ ଅବଶ୍ୟ ମୁଁ କରିବି ନୃପବର ।
ଅଯୋଧ୍ୟା ରାଜ୍ୟଭାର ରଘୁନାଥ ବହୁ
ଏ ମହୀମଣ୍ଡଳେ ମୋର କୀର୍ତ୍ତି ରହିଥାଉ ।
ଦେବି ମୁଁ ଶ୍ରୀରାମକୁ ପରଦିନ ପୃଥ୍ୱୀ
ଆବର ସଂଶୟ ପୁଣ ଏଥି ନାହିଁ କିଛି ।

ସୁମନ୍ତ୍ରଙ୍କୁ ଚାହିଁଣ ବୋଲନ୍ତି ନୃପବର
ଅଭିଷେକ ବିଧି ସମ୍ଭାର ବେଗେ କର ।
ନଗ୍ରରେ ଉତ୍ସବ କରନ୍ତୁ ନରନାରୀ
ଦୁନ୍ଦୁଭି ବଜାଅ ଶ୍ରୀରାମ ହେବେ ଦଣ୍ଡଧାରୀ ।
ବନ୍ଧୁ ନିମନ୍ତ୍ରଣ କରିବାକୁ ବେଳ ନାହିଁ
ଅଭିଷେକ ହେବେ ପରଦିନ ପ୍ରଭାତଇ ।
ତପୀ ଋଷି ଯତି ଆସିବେ କେଉଁଦିନ
ଦୁଇନିଶି ମଧ୍ୟରେ ଅଟଇ ଏକଦିନ ।
ଯାଅ ହେ ସୁମନ୍ତ୍ର କରନାହିଁ ହେଳା
ଯେ ବିଧି ଦେଭାର ଭିଆଅ ସଂଖୋଳା ।
ଶୁଣିଣ ମନ୍ତ୍ରୀବର ଗଲା ତତକ୍ଷଣ
ଆଦେଶ ଦେଲେ ରାଜ୍ୟେ ଦିଆଅ ଘୋଷଣ ।
ପରଦିନ ଶ୍ରୀରାମ ହେବେ ଦଣ୍ଡଧାରୀ
ଉତ୍ସବ ବିଧାନ ପାଳିବେ ଯେଝାପୁରୀ ।
ରାଜା ଦଶରଥ ଛାଡ଼ିବେ ରାଜ୍ୟଭାର
ଭୋଗ କରିବେ ସେ ରହି ଅନ୍ତଃପୁର ।
ଶ୍ରୀରାମ ରାଜା ହୋଇ ପାଳିବେ ମେଦିନୀ
ଏତେ ବୋଲି ଦାଉଣ୍ଡି ବଜାଏ କରେ ଘେନି
ଶୁଣିଣ ନଗ୍ରଲୋକେ ସର୍ବେ ହର୍ଷଚିତ୍ତ
ଏକକୁ ଆରେକ ପୁଚ୍ଛନ୍ତି କଥାତ ।
କେ ବୋଲନ୍ତି ଶ୍ରୀରାମଚନ୍ଦ୍ର କାଲିହେବେ ରାଜା
ଏସନକ ବୋଲି ବାଜେ ବୀରବାଜା ।
ଏଥୁ ଅନନ୍ତରେ ରଜନୀ ପ୍ରଭାତ
ନିତ୍ୟକର୍ମ ସାରି ଆସ୍ଥାନେ ବିଜେ ଦଶରଥ ।
ସୁମନ୍ତ୍ରଙ୍କୁ ଚାହିଁଣ ବୋଲନ୍ତି ଦଣ୍ଡଧାରୀ
ଶ୍ରୀରାମଚନ୍ଦ୍ରଙ୍କୁ ଆଣ ହେ ହକାରି ।
ଶୁଣିଣ ପାତ୍ରମନ୍ତ୍ରୀ ଗଲେକ ଚଡ଼ତି
ପ୍ରବେଶ ହେଲେ ଯାଇ ଶ୍ରୀରାମଙ୍କ କତି ।
ଚାରିଦ୍ୱାର ପର୍ଯ୍ୟନ୍ତେ ଗଲେ ରଥେ ବସି
ପଞ୍ଚମଦ୍ୱାରକୁ ଶ୍ରୀରାମଚନ୍ଦ୍ର ଦିଶି ।
ରଥରୁ ଓହ୍ଲାଇ ପାତ୍ର ସୁମନ୍ତ୍ରମନ୍ତ୍ରୀ ।
ରାଘବଙ୍କ ନିକଟକୁ ପାଦରେ ଗମନ୍ତି ।
ରଘୁନାଥ ପଚାରିଲେ ସୁମନ୍ତ୍ରଙ୍କୁ ଚାହିଁ
ପାତ୍ର ମନ୍ତ୍ରୀ ତୁମ୍ଭେ ଅଇଲ କିମ୍ପାଇଁ ।
ନୃପତି କେଉଁଠାରେ ଅଛନ୍ତି ବିଜେକରି
କିସ ବିଚାର କରୁଛନ୍ତି ଦଣ୍ଡଧାରୀ ।
କେଉଁମାନେ ଅଛନ୍ତି ରାଜାଙ୍କ ସନ୍ନିଧାନ
ଶୁଣିକରି ସୁମନ୍ତ୍ର କହିଲେ ବଚନ ।
ମଧ୍ୟାହ୍ନ ଅବକାଶ ନୃପତିଙ୍କର ଏବେ
ବଶିଷ୍ଠ ବାମଦେବ ଜବାଳୀଛନ୍ତି ସର୍ବେ ।
ଏମାନେ ଛନ୍ତି ସର୍ବେ ବ୍ରହ୍ମମୁନିଙ୍କି ଘେନି
ମୋତେ ଚାହିଁ ଆଜ୍ଞାଦେଲେ ନୃପମଣି ।
ଶ୍ରୀରାମଙ୍କୁ ଆଣ ଯାଇ ରାଜା ଆଜ୍ଞାଦେଲେ
ଶୁଣି ରଘୁନାଥ ଆନନ୍ଦ ହୋଇଲେ ।
ବେଗେ ଯିବା ବାବୁ ସତ୍ୱର ହୋଇ ଆସ
ଶୁଣିକରି ଶ୍ରୀରାମ ହେଲେ ହସ ହସ ।
କାଲି ଘୋଷଣାର ବାରତା ପାଇଛନ୍ତି
ତେଣୁକରି ରଘୁନାଥ ଅଳପ ହସନ୍ତି ।
ନୃପତିଙ୍କ ଆଜ୍ଞା ସୁମନ୍ତ୍ର ମନ୍ତ୍ରୀ କହି
ତକ୍ଷଣେ ଦାଶରଥି ସଜ ହୋଇଣ ଯାଇ ।
ଅଶ୍ୱର ପିଠିରେ ଧରଇ ପାଟଛତ୍ର
ସଙ୍ଗରେ ଗୋଡାନ୍ତି ପାତ୍ର ମନ୍ତ୍ରୀଙ୍କର ପୁତ୍ର ।
ସୁମନ୍ତ୍ର ରଥ ଚଢ଼ି ସଙ୍ଗେ ସଙ୍ଗେ ଆସି
ଦାଶରଥି ନୃପତିଙ୍କ ମନ୍ଦିରେ ଯାଇ ପଶି ।
ସାତଦ୍ୱାର ପର୍ଯ୍ୟନ୍ତେ ଅଶ୍ୱ ପିଠିରେ ଗଲେ
ଅଷ୍ଟମ ଦ୍ୱାରେ ସମନ୍ତ୍ର ରାମଙ୍କୁ ଛାଡିଲେ ।
ଶ୍ରୀରାମଙ୍କ ଭୃତ୍ୟଜନେ ସେଠାରେ ରହିଲେ
ସୁମନ୍ତ୍ର ହସ୍ତଧରି ଶ୍ରୀରାମ ଚଳିଲେ ।
ସେହି ଦ୍ୱାରଠାରୁ ଦିଶିଲେ ନୃପବର
ବିଜେକରି ଅଛନ୍ତି ସିଂହାସନ ପର
ଶ୍ରୀରାମଙ୍କଠାରେ ପିତାମାତାଙ୍କର ପଡେ ଦୃଷ୍ଟି
ପିତାଙ୍କୁ ଦେଖି ଶ୍ରୀରାମ ପ୍ରଣମିଲେ ଲୋଟି ।
ଶିରରେ କରଦେଇ ଯଶ ଉଡ଼ାଇଲେ
ନିକଟକୁ ଯାଇଣ ମଥାରେ ହସ୍ତଦେଲେ
ନମସ୍କାର ହେଲେ ପିତାଙ୍କ ପାଶକୁ ଯାଇ
ଦେଖିଣ ମହୀପତି ମନରେ ବିଚାରଇ ।
ଶ୍ରୀରାମଙ୍କୁ ଦେଖି ରାଜା ହେଲେ ମନେ ତୋଷ
ହସ୍ତରେ ଠାରି ଦେଲେ ବାବୁ ଉପରକୁ ଆସ
ପିତା ଆଜ୍ଞା ପାଇ ରାମ ଉପରକୁ ଗଲେ
ନିକଟକୁ ଯାଇଣ ରାମ ମଥାରେ ହାତଦେଲେ
ବଶିଷ୍ଠଙ୍କ ସଙ୍ଗେ ବିପ୍ରଗଣ ଥିଲେ
ତାହାଙ୍କୁ ରଘୁନାଥ ନମସ୍କାର କଲେ ।

ନୀଳରୂପ ଗୋଟି ଦିଶଇ ଅନୁପମ
ଦଶରଥ ବୋଇଲେ ଶୁଣ ହେ ଶ୍ରୀରାମ ।
ଚତୁର୍ଥ କାଳ ମୋର ହୋଇଲାକ ଆସି
ରାଜ୍ୟର ଝଗଡରେ ହେଲି ମୁହିଁ ଧ୍ୱଂସୀ ।
ମହୀଭାରକୁ ମୁଁ ବହିବାକୁ ଭୟେ କରି
ନବସହସ୍ର ବରଷ ଦଣ୍ଡଛତ୍ର ଧରାଇଲି ।
ବୃଦ୍ଧକାଳରେ ମୋର ହେଲା ଚାରିପୁତ୍ର
ତୁ ମୋର ଜ୍ୟେଷ୍ଠପୁତ୍ର କୁଳକୁ ପବିତ୍ର ।
ନବସହସ୍ର ବର୍ଷ ରାଜ୍ୟ ମୁହିଁ କଲି
ଋଷିଶୃଙ୍ଗ ଚରୁରୁ ତୁମ୍ଭଙ୍କୁ ପାଇଲି ।
ତ୍ରେତୟା ଯୁଗର ପ୍ରମାଣ ଏବେ ଶୁଣ
ଦଶସହସ୍ର ବର୍ଷ ଭୋଗ ହୁଏ ପୁଣ ।
ସହସ୍ରେ ବର୍ଷ ପ୍ରମାଣ ମୋର ଅଛି
ତୋତେରାଜ୍ୟେ ରାଜାକରି ହେବି ମୁଁ ନିର୍ଦ୍ଦୋଷି
ଅସୁରଙ୍କୁ ନ ଡରି ଯୁଝ ତାଙ୍କ ସଙ୍ଗେ
ସହସ୍ରାର୍ଜ୍ଜୁନ ଜିଣିଲା ମୋତେ ରାଗେ ।
ପର୍ଶୁରାମ ବୀର ପ୍ରତିଜ୍ଞା ଯେ କଲା
ଦୁଷ୍ଟ ଜନଙ୍କୁ ମାରି ସନ୍ଥଙ୍କୁ ରଖିଲା ।
ବରଷକେ ଥରେ କରଇ ଦିଗବିଜେ
ତିନିପୁର ସାତଦ୍ୱୀପ ବୁଲା ମନୁ ବେଗେ ।
ଅପୁତ୍ରିକ ଦେଖିଣ ମୋର ସୀମାକୁ ନ ଆସିଲା ।
ତୋତେ ଦେଖନ୍ତେ ସନମାନ କଲା ଭଲା ।
ଲଙ୍କାରେ ରାବଣ ଅଟଇ ମୋର ଶତ୍ରୁ
ପିତୃଲୋକ ଅରଣ୍ୟ ରାଜାକୁ ମାରେତ ତୁ ।
ମୋହର ସମୟ ଏଣିକି ଆଉ ନାହିଁ
ବାସୁଦେବ ଚରଣେ ଶରଣ ଯିବି ମୁହିଁ ।
ତୁହିଁ ଥାନ୍ତେ ମୁହିଁ ଯେବେ ହେବି ମହାଦୁଃଖୀ
ତୁହି ମୋର ପୁତ୍ର କର ମୋତେ ସୁଖୀ ।
ଏ ରାଜ୍ୟ ଭାରାଭର ବହି ତୋର ମଥା
ଅଭିଷେକ ହୁଅ ତୁ କାଲିର ସବିତା ।
ବଳରାମ ଦାସ କହେ ଶୁଣ ସନ୍ଥଜନ
ଦୋଷ ନ ଧରିବ ଯେ ମୋହର ମନେ ପୁଣ ।
ନାରାୟଣ ଚରଣେ କୋଟିଏ ନମସ୍କାର
ଏଠାରେ ସହସ୍ରେ ପଦ ହେଲା ଠୁଳ ।
ଏଥୁଅନନ୍ତରେ ଦଶରଥ କହି
ଶ୍ରୀରାମଚନ୍ଦ୍ର ଶ୍ରବଣ କରନ୍ତି ବସି ତହିଁ ।

ପ୍ରଜାଙ୍କୁ ପାଳ ବାବୁ ପୁତ୍ରସମ କରି
ଶତ୍ରୁକୁ ଅବଶ୍ୟ ତୋ ହୃଦରେ ଥିବୁ ଡରି ।
ପୁରାତନ ଜନଙ୍କୁ ପଚାରିଥିବୁ ତୁହି
ଅଗ୍ନିଙ୍କ ମୁଖରେ ଆହୁତି ଦେବୁ ନେଇ ।
ନିତ୍ୟ ଗ୍ରହଙ୍କୁ ଶାନ୍ତି କରାଇବୁ ବାବୁ
ଦେବତା ବ୍ରାହ୍ମଣଙ୍କଠାରେ ପ୍ରିୟବୁଦ୍ଧି ହେବୁ ।
ହାତୀ ରଥୀ ଅଶ୍ୱ ପଦାତି ପଏକାର
ଏହାଙ୍କୁ ଗୌରବ କରିବୁ ରଘୁବୀର ।
ରଣରେ ପିଠିଦେଲେ କରିବୁ ତାକୁ ଦୟା
ସେବକ ଜନଠାରେ ନକରିବୁ ମାୟା ।
ଯେଉଁ ସ୍ଥାନକୁ ଯେଉଁ ନିଯୋଗ ବରଗିବୁ
ଅନ୍ନ ବସ୍ତ୍ର ତାହାକୁ ଅଇଶ୍ୱର୍ଯ୍ୟ ଦେବୁ ।
ଗାରିମା ସେବକଙ୍କୁ ନ ଥୋଇବୁ କତି
ଯେହୁ ଗାରିମାରେ ଆଜ୍ଞାକୁ ଭାଙ୍ଗନ୍ତି ।
ଆଜ୍ଞା ଭ୍ରଷ୍ଟ ହେଲେ କାର୍ଯ୍ୟ ନଷ୍ଟ ଯାଇ
ସେ ଭୃତ୍ୟକୁ ରଖିଲେ କାର୍ଯ୍ୟ ବିଘ୍ନ ହୋଇ ।
ହସ୍ତୀ ଘୋଡା ଯାହାକୁ ଅବିକ୍ଷଣେ ଦେବୁ
ଯେହୁ ହିତ ବିଧାନ ଜାଣଇଁରେ ବାବୁ ।
ତେବେ ସେ ରାଜାର ବହୁବଳ ଥାଇ
କାରବାର ବେଭାର ସବୁ ସେ ଜାଣଇଁ ।
ଗଜ ବାଜି ଅଶ୍ୱ ତୁରକି କମାଣ
ନିତ୍ୟ ପ୍ରତି ତିନିଥର ଦେଖିବୁ ଆଜି ପୁଣ ।
ତହିଁକି ଅନଶନ କରିବୁଟି ବାବୁ
ହସ୍ତୀ ଘୋଡାଙ୍କରଠାରେ ଲକ୍ଷ ରଖିଥିବୁ ।
ବଳ ରଖିଥିବୁ ତୁ ବୁଦ୍ଧିବନ୍ତ କରି
ଔଷଧି ଦେବ ବୈଦ୍ୟ ବ୍ୟାଧିକି ବିଚାରି ।
ନିତି ସାଧନା ତୁ କରିବୁ ବୀର ସଙ୍ଗେ
ଧନୁକୁ ନଛାଡିବୁ ଖେଳର କୁତୁରଙ୍ଗେ ।
ବିଶ୍ୱାସୀ ମାଲର ହସ୍ତେ ମର୍ଦ୍ଦନ ହୋଇବୁ
ଅତି ବିଶ୍ୱାସୀଠାରେ ଶିର ମୁଣ୍ଡାଇବୁ ।
ବିଶ୍ୱାସୀ ଗଉଡର ପୁତ୍ର ଯେବେ ଥାଇ
ଜାଣି ବୁଝି ତାହାକୁ କରିବୁ ମହାଭୋଇ ।
ଆପଣେ ମଣୋହି କରିବୁ ହେଳଜାଣି
ବୈଦ୍ୟଙ୍କୁ କହିବୁ ତୁ ଶରୀର ପରିମାଣି ।
ଦୁଇବେଳ ପୁରାଣ ଶୁଣୁଥିବୁ ନିତି
ବିଷ୍ଣୁଦେବତାଙ୍କୁ କରୁଥିବୁ ଭକ୍ତି ।

ଅନ୍ତଃପୁର ଲୋକଙ୍କୁ ନକରିବୁ କୋପ
ମୃଦୁସୁଲୀ ଜାଣି ପୁଚ୍ଛା କରିବୁ ପୁଣ୍ୟ ପାପ ।
ନିଦ୍ରାରେ ଅଳସ ନୋହିବୁ ରଘୁନାଥ
ଭଣ୍ଡାର ସମର୍ପିବୁ ଅଲୋଭୀ ଲୋକଙ୍କୁ ତ ।
କ୍ଷତ୍ରୀ ଲୋକ ଦେଖି ନିକଟେ ରଖିବୁ
ଖାଲଖଣ୍ଡା ବାଟ ଦେଖି ବନ୍ଧ ବନ୍ଧାଇବୁ ।
କାହିଁରେ ଥିବ ଶଙ୍ଖ କାହିଁରେ ଥିବ ଭେଳା
ମରୁଡି ଦେଖି ହାଣିବୁ ଆକଟ ନଳା ।
ଲୋକହିଁ ବଞ୍ଚିବେ କ୍ଷେତ ଧନହିଁ ପ୍ରାପତ
ଆଉ ବେଳ କଥା ଶୁଣି ରଘୁନାଥ ।
ଗ୍ରହଚକ୍ରେ ଯେବେ ତୁ ଦେବତା ନପାଳିବୁ
ଧାନ ଉପୁଜିବାକୁ ପୋଖରୀ ଖୋଳିବୁ ।
ଅପନ୍ତରା ବାଟରେ ମଣ୍ଡପ ତୋଳାଇବୁ
ମହର୍ଗ ପଡ଼ିଲେ ଅନ୍ନଛତ୍ର ଦେବୁ ।
ମାଗନ୍ତା ଜନଙ୍କୁ ନକରିବୁଟି ନିରାଶ
ତେବେ ବିଖ୍ୟାତ ହୋଇବ ତୋହର କୀର୍ତ୍ତିଯଶ
ଅଲୋଭୀ କରିଣ ରଖିଥିବୁ ଜାଣ
ଏହାଙ୍କୁ ଦେଶରେ କରିବୁ ପାତ୍ର ପୁଣ ।
ଆସ୍ଥାନରେ ବସିଣ ଜାଣିବୁ ରାଜବିଧି
ପାତ୍ରକୁ ବିଚାରି ତୁ କରିବୁ ସବୁ ବିଧି ।
ରାତ୍ରରେ ଗ୍ରାମରେ ବୁଲିବେ ଯେଉଁଜନ
ଦୋସାଧୁ ପଣକୁ ସେହିଟି ଭାଜନ ।
ଦୁଷ୍ଟ ଜନମାନଙ୍କୁ ନ ରଖିବୁ କ୍ଷଣେ
ଅନ୍ଧାରି ବିଜେକଲେ ନ ବୁଝିବେ ଜନେ ।
ଯାଗ କରିବୁ ବାବୁ ଶୁଦ୍ଧକାଳ ଜାଣି
ପିତୃଙ୍କୁ ତୋଷ କରିବୁ ତର୍ପଣ ବେଳ ଜାଣି ।
ନେତ୍ରରେ ନଦେଖିଲେ ପ୍ରତେ ନ କରିବୁ
ବିପିନେ ପଶିଣ ମୃଗ ହରିଣ ନାଶିବୁ ।
ଆହୁରି ବିଧାନେକ ଅଛି ରାଜନୀତି
ସବୁ ବିଧି କହିଦେବେ ବଶିଷ୍ଠ ମହାଯତି ।
ସୁପୁଣ୍ୟ ପୁରୁଷ ନଜାଣୁ ଅବା କିସ
ଆଜୁଁ ତୁ ହୋଇଲୁ ଅଯୋଧ୍ୟା ନରେଶ ।
ଦଶରଥଙ୍କଠାରୁ ଏସନ ବାଣୀ ଶୁଣି
ରଘୁନାଥ ବୋଲନ୍ତି ଶୁଣ ଦେବ ପୁଣି ।
ବୟସରେ ସାନ ମୁଁ ବାର ତେର ଜାଣ
ଅଚିନ୍ତା ସାଗରେ ମୋତେ ରଖିଅଛ ପୁଣ ।
ଚାରିଭାଇ ଆମ୍ଭେ ନାହୁଁ ଠୁଳ ହୋଇ
ଦୁଇଭାଇ ଅଛନ୍ତି ଅଜାଘରେ ଯାଇ ।
ତୁମ୍ଭର ଭଲହେଲେ ଆମ୍ଭର ସିନା ଭଲ
ଦଇବ ବିଚାରିଲେ ସବୁ କଥା ହେବ ତୁଲ ।
ଚଉଦବରଷ ଯେବେ ହେବ ସୁଖ ପୁଣ
ତରତର କିମ୍ପାଇଁ ହେଉଛ ଆପଣ ।
ରାଜାଗଣ ଅଣାଅଁ ବନ୍ଧୁ କୁଟୁମ୍ବ ନିମନ୍ତ୍ରିଣ
ସମ୍ଭାଳି କାର୍ଯ୍ୟକଲେ ଭଲ ହୁଏ ଜାଣ ।
ତରତର ହେଲେ ଦୁଃଖ ମିଳେ ସବୁଦିନେ
ଅପଖ୍ୟାତି ଦିହନ୍ତି ପ୍ରଜାଜନମାନେ ।
ରଘୁବଂଶ କାରଣ ଅଟ ହେ ଦଣ୍ଡଧାରୀ
ତୁମ୍ଭ ମନକୁ ସନ୍ତୋଷ କରିବ ନ ବିଚାରି ।
ଚଉଦ ବରଷ ହେଲେ ସର୍ବେ ହେବେ ସୁଖ
ଏକଥା ମନରେ କରୁଛ କିମ୍ପା ଦୁଃଖ ।
ବଶିଷ୍ଠ ବୋଇଲେ ଶୁଣ ରାମଚନ୍ଦ୍ର
ତାଙ୍କ ମତଇଚ୍ଛା କାଲି କରିବେ ତୋତେଇନ୍ଦ୍ର ।
ସଂପଦ ବିପଦ ସିନା ଦଇବକୁ ଜଣା
ତାଙ୍କର ହୃଦରେ ତୋତେ ହୋଇଛି କରୁଣା
ଶୁଣିକରି ରଘୁନାଥ ସନ୍ତୋଷମନ ହେଲେ
ଉତ୍ତର ଭାଷା ଯେ ତାହାଙ୍କୁ କହିଲେ ।
କରଯୋଡିଣ ସେ କହନ୍ତି ରଘୁନାଥ
ଯେ ତୁମ୍ଭର ଆଜ୍ଞା ପାଳିବି ନିଶ୍ଚୟତ ।
ବଶିଷ୍ଠ ଋଷି ଜାବାଳୀ ବହୁତ ତିଆରି
ସୁମନ୍ତ୍ର ବହୁତ ପ୍ରିୟ କହିଲେ ବିଚାରି ।
ଅନେକ ପୁରୁଷାର୍ଥ କହିଲେ ସେହୁ ତ
ସନମିତେ ଶିର ପୋତିଲେ ରଘୁନାଥ ।
ଦଶରଥଙ୍କ ଚରଣେ ନମସ୍କାର କରି
ନିଜମନ୍ଦିରକୁ ଚଳିଲେ ଚାପଧାରୀ ।
ସୁମନ୍ତ୍ର ମହାପାତ୍ର ଆସିଲେ ପାଛୋଟି
ରଘୁନାଥ ବୋଲନ୍ତି ମୋମନ ହେଉଛି ଘାଣ୍ଟି
ବାମ ନୟନ ତ ଡେଉଁଅଛି ମୋର
ତୁମ୍ଭେ ତ ମନ୍ତ୍ରୀବର ବୁଝି କାର୍ଯ୍ୟ କର ।
ପିତା ଆମ୍ଭଙ୍କୁ ଯେ ଅର୍ଜିଛନ୍ତି ଜାଣ
ତାଙ୍କ ହୁକୁମକୁ କେ କରିବ ମେଣ୍ଟଣ ।
ପିତାଙ୍କ ଆଗରେ ମୋର ନକହିବ କିଛି
ଭଲ ହେବ ବୋଲି ମୋତେ ତ ନଦିଶି ।

ତୁମ୍ଭେ ଯାଅ ରାଜାଙ୍କର ପାଖରେ ଥିବଟି
ରାମଙ୍କ ଆଜ୍ଞା ପାଇ ସୁମନ୍ତ ଲେଉଟି ।
ସୁମନ୍ତ ଆସନ୍ତେ ରାମ କରନ୍ତି ବିଚାର
ଶ୍ୱେତ ଛତ୍ର କାଲି ଉଡିବ ମୋ ଶିର ।
ମନକୁ ନିଉନରେ ମନ୍ଦିରେ ପ୍ରବେଶ
ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।
ଏସନକ ସମୟେ ମଉଳିଲା ଆସ୍ଥାନ
ଯେ ଯାହାର ପୁରକୁ ଗଲେ ସର୍ବଜନ ।
ଏଥୁଅନନ୍ତରେ ନଗ୍ରର ସର୍ବଜନ
କସ୍ତୁରୀରେ ଲେପନ ସବୁରି ଘର ପୁଣ ।
ସୁବର୍ଣ୍ଣ କଳସ ଶୋହେ ନେତ୍ରର ଚିରାଳ
ଦ୍ରୋଣାରେ ଲମ୍ବାଇଲେ ମୁକୁତା ମାଳ ମାଳ
ଉତ୍ସବରେ ନଗ୍ରେ ବାଜେ ବୀର ବାଜା
ମଙ୍ଗଳ ଉତ୍ସବ କରନ୍ତି ଜନପ୍ରଜା ।
ନଗ୍ର ନରନାରୀମାନେ ବିବିଧ ବେଶ ହୋନ୍ତି
ଭଳି ଭଳି ବେଶ ଶୁଣ ଗୋ ପାର୍ବତୀ ।
ବୃଦ୍ଧ ବୟସ ଯେଉଁମାନଙ୍କର ଜାଣ
ସେମାନେ ରାମନାମ କରନ୍ତି ଗାୟନ ।
ଯୁବା ପୁରୁଷମାନେ ଚନ୍ଦନ ବିଲେପନ
ବାଳକେ ଖଡୁ ମେଳି ପାଟ ଯୋଡିମାନ ।
ବାଳକ ସ୍ତିରୀମାନେ ହୋଇଲେ ଭୂଷଣ
ଯୁବା ସ୍ତିରୀମାନଙ୍କର କହିବ କେତେ ଗୁଣ ।
ବେଶ୍ୟାମାନେ ହାଟ ଦାଣ୍ଡରେ ବିହରନ୍ତ
ହାଟୁଆ ବାଟୁଆମାନେ ମନରେ ହେଲେ ଶାନ୍ତି
ଏଥୁଅନ୍ତେ ଶୁଣ ହେମବନ୍ତର ଦୁଲଣୀ
ସ୍ୱର୍ଗକୁ ବିଜେକଲେ ନାରଦ ମହାମୁନି ।
ଠୁଳ ହୋଇଣ ବସିଛନ୍ତି ଦେବତାଏ
ଦେଖିଣ ଦେବଗଣ ସନମାନ ହୁଏ ।
କେଣିକି ବିଜେ କରିଥିଲ ହେ ବ୍ରହ୍ମଋଷି
କେଉଁଠାରେ କେଉଁ କଥା ଜାଣିଛ କହସି ।
ନାରଦ ବୋଇଲେ ତୁମ୍ଭେ ଦେବତାଏ ଶୁଣ
ଚଉଦ ବର୍ଷରେ ପାଆନ୍ତି କାରଣ ।
ଅସୁରେ ନାଶଗଲେ ସ୍ୱର୍ଗରେ ରହନ୍ତ
ଆଉ ଲଙ୍କା ଗଡକୁ ତୁମ୍ଭେ କେବେ ନଦେଖନ୍ତ
ଦଶରଥଙ୍କ ଘରେ ବାସୁଦେବ ଜାତ
ରାବଣର ସଗୋତ୍ର ମାରିବେ ରଘୁନାଥ ।

ସୀତା ଘେନି ଯେବେ ବନକୁ ଯାନ୍ତେ ହରି
ତେବେ ସିନା ମରନ୍ତା ଲଙ୍କା ଦଣ୍ଡଧାରୀ ।
ପ୍ରଭାତରୁ ଶ୍ରୀରାମ ହୋଇବେ ଯେ ରାଜା
ଅଯୋଧ୍ୟାରୁ ଶୁଣି ମୁଁ ଅଇଲି ଦେବରାଜା ।
ତୁମ୍ଭର ଉପାୟ ଥିଲେ ତୁମ୍ଭେ ବେଗେ କର
ଏତେ କହି ନାରଦ ଗଲେ ନିଜପୁର ।
ଏଥୁଅନନ୍ତରେ ରାଜା ପରିବାରୀ
ମନ୍ଥରା ବୋଲି ନାମ ଅଟଇ ତାହାରି ।
ସ୍ୱର୍ଗର ଅପସରା ମାନବେ ଅବତରି
ଦେବେ ଜାତ କରିଛନ୍ତି ରାବଣକୁ ଡରି ।
ତୁହି ଗୋ ସୁନ୍ଦରି ଦେବୀ ତାଙ୍କର ଅଟୁମାତା
ଆମ୍ଭର କଷ୍ଟ କି ଗୋ ତୁମ୍ଭଙ୍କୁ ନୁହେ ଚିନ୍ତା ।
ଲଙ୍କାଗଡ ରାଜା ଯେ ଅଟେ ଦଶଶିରୀ
ଏତେବେଳେ ଭୋଗ ସେ କରୁଛି ତିନିପୁରୀ ।
ଦେବେ ଦାନବେ ସେ କେବେ ନୁହେ ହତ
ମାନବ ରୂପରେ ହରି ହୋଇବେ ଯେ ଜାତ
ରୁକ୍ଷ ମର୍କଟ ଯେ ବଳ ଘେନି ସାହା
ସମୁଦ୍ରେ ବନ୍ଧ ବାନ୍ଧି ମାରିବେ ବିଂଶବାହା ।
ତେବେସେ ମେଦିନୀଭାରା ହୋଇବ ଯେ ସ୍ଥିର
ନୋହିଲେ ସ୍ୱର୍ଗକୁ ଛାଡିବେ ସୁରେଶ୍ୱର ।
ଯେବେ ତୁ କାରଣ କରିବୁ ଗୋ ମାତ
ମର୍ତ୍ତ୍ୟପୁରେ ଯାଇଣ ତୁହି ହେବୁ ଜାତ ।
କୈକେୟୀ ରାଣୀର ପରିବାରୀ ଥିବୁ ହୋଇ
ତାହାର କଟକରେ ଜନମ ହେବୁ ଯାଇ ।
ତୋହର ରୂପକୁ ତୁ ବିରୂପ ହୋଇଥିବୁ
କୈକେୟୀ ରାଣୀ ସଙ୍ଗରେ ଅଯୋଧ୍ୟାକୁ ଯିବୁ ।
ଦଶରଥ ଗଉରବ କରିଲେ ତୋତେ ଦେଖି
ରାଣୀଙ୍କ ସଙ୍ଗତରେ ପଢ଼ି ଦେବେ ଲେଖି ।
ଏମନ୍ତେ ବାଇଶି ବରଷ ଥିବୁ ରହି
ଭଗବାନ ଅବତାର ହୋଇବେ ତହିଁ ଯାଇ ।
କଉଶଲ୍ୟା ଗର୍ଭେ ନାରାୟଣ ହେବେ ଜାତ
କୈକେୟୀ ପୁତ୍ର ପୁଣ ହୋଇବେ ଭରତ ।
ଲକ୍ଷ୍ମଣ ଶତ୍ରୁଘନ ସୁମିତ୍ରାଙ୍କର ବତ୍ସ
ଲକ୍ଷ୍ମଣ ଅନନ୍ତ ଭ୍ରତ ଚକ୍ର ଶତ୍ରୁଘ୍ନ ଗଦା ଯା
ଶ୍ରୀରାମ ବଡ ହେବେ ବୀରଶୂର ପଣେ
ନେବାକୁ ବିଶ୍ୱାମିତ୍ର ଆସିବେ ଆପଣେ ।

ଦଶରଥଙ୍କୁ ମାଗିଣ ବିଶ୍ୱାମିତ୍ର ନେବେ
ସିଦ୍ଧବନେ ଯାଇ ଯାଗ ଆରମ୍ଭିବେ ।
ଦାଶରଥି ଯାଇଣ ରଖିବେ ସେ ଯାଗ
ଯୁଗେ ଯୁଗେ କୀର୍ତ୍ତି ରହିବ ମହୀଭାଗ ।
ମୁନି ଘେନି ରାମଙ୍କୁ ମିଥିଳାପୁର ଯିବେ
ଜନକର ମନ୍ଦିରେ ପ୍ରବେଶ ହୋଇବେ ।
ଶିବଧନୁକୁ ରାମ ଆମଞ୍ଜନ କରି
ସୀତାଙ୍କୁ ବିବାହ ହୋଇବେ ମଧୁହାରୀ ।
ଅଯୋଧ୍ୟାକୁ ଆସିଣ ବରଷେ ରହିବେ
ରାଜା କରିବାକୁ ପିତା ଶରଧା କରିବେ ।
ତେତେବେଳେ ତୁ ଯେ ପାରିବୁ ବୁଦ୍ଧିକରି
ଚଉଦ ବରଷ ତିନିମାସ ରାମକୁ ଥିବ ହେରି
ତେତେବେଳେ ଯେବେ ହେବେ ବନଚାରୀ
ତେବେ ସେ ଦେବତାଙ୍କୁ ରଖିବେ ଦୟାକରି
ସୀତା ଲକ୍ଷ୍ମଣ ସଙ୍ଗରେ ଘେନି ରଘୁନାଥ
ଯାଇଣ ଆଶ୍ରେ କରିବେ ବନ ପରବତ ।
ଚଉଦ ବରଷ ବନରେ ନେବେ ଦିନ
ବାରତା ପାଇଣ ଆସିବ ଦଶାନନ ।
ଗୋଦାବରୀ କୂଳରୁ ସୀତାଙ୍କୁ ନେବ ହରି
ସେ ହେତୁରୁ କଷ୍ଟ ସହିବେ ଚାପଧାରୀ ।
ବନେ ବୁଲି କଷ୍ଟ ପାଇବେ ରାଘବ
ଏ ହେତୁରୁ ରାବଣ ସଗୋତ୍ରେ ନାଶ ଯିବ ।
ଶୁଣିଣ ଦେବମାତା କଲା ସନମତ
ମର୍ତ୍ତ୍ୟଲୋକରେ ପୁଣ ହେଲା ସେହୁ ଜାତ ।
ବାଳୁତ କାଳରୁ ପିତାଘରେ ଥିଲା
ଯୁବା ହୋନ୍ତେ ପୁଣ ରାଜା ତାଙ୍କୁ ନେଲା ।
ଦୁହିତା କୈକୟା ସଙ୍ଗେ ଅଯୋଧ୍ୟାକୁ ଗଲା
ରାଣୀର ସଙ୍ଗରେ କେତେକାଳ ସେ ରହିଲା ।
ଏଥୁଅନନ୍ତରେ ଶୁଣ ଗୋ ଗଉରି
ସ୍ୱର୍ଗ ପୁରେ ଯହୁଁ ପଡିଲା ହାଲହୋଳି ।
ନାରଦ କହିବାରୁ ଦେବେ ଯେ ଉଚ୍ଚାଟ
ଇନ୍ଦ୍ର ବିଚାରିଣ ରାଇଲେ ପବନନ୍ତ ।
ବୋଇଲେ ତୁମ୍ଭେ ବେଗେ ଅଯୋଧ୍ୟାକୁ ଯିବ
ମନ୍ଥରାର କର୍ଣ୍ଣେ କହିଣ ଆସିବ ।
ବୋଲିବ ଶ୍ରୀରାମ ଯେମନ୍ତେ ବନେ ଯାଇ
ତେବେ ସେ ଲଙ୍କାରେ ରାବଣ ମରଇ ।
ଏତେ ଚେତାଇ ଦେବ ତାକୁ ଯାଇ
ଚଉଦ ବର୍ଷରେ ମରିବ ଲଙ୍କସାଇଁ ।
ଶୁଣିଣ ପବନ ଦେବ ବେଗେ ଚଳିଗଲା
ମନ୍ଥରାର କର୍ଣ୍ଣରେ ବୁଝାଇ କହିଲା ।
ଜାଣିଣ ମନ୍ଥରା ସେ କଥା କଲା ହେତୁ
ସହୀରେ ଢମାଳି କରେ ନାନା ତନ୍ତୁ ।
ପୂର୍ବ କଥା ଚିତୋଇ ମନରେ ବିଚାରିଲା
ଶ୍ରୀରାମ ପରା ମୋତେ ମାଡ଼ ମାରିଥିଲା ।
ଶ୍ରୀରାମକୁ ବନକୁ ପେଷିବି କୂଟ କରି
ଭ୍ରତକୁ କରାଇବି ଏଥିରେ ଦଣ୍ଡଧାରୀ ।
ସେହି ବାରତା ଯେ ପାଇଲା ମନ୍ଥରା
ପରିହାସେ ଗୀତା ଗାଇ ଦିଏ ହାଲହୋଳି ।
ନବରୁ ବାହାର ହୋଇ ଗଲା ନଗ୍ର ଫେରି
ବୁଲଇ ନଗ୍ରରେ ସେ ସବୁ ଦାଣ୍ଡ ଘେରି ।
ତୁଣ୍ଡରେ ପାନ ତାର ମୁଣ୍ଡରେ ଫୁଲ ଖୋସା
ଲୋକଙ୍କୁ ଦେଖିଲେ ସେ ଦିଏ ମୁରୁକିହସା ।
ଗାଲରେ ଚୂନ ହଳଦୀ ନେତ୍ରରେ କଜ୍ଜ୍ୱଳ
ନାକକୁ ଡିଆଁଇଣ ଚାହିଁ ଜଳ ଜଳ ।
ପିନ୍ଧିବା ଶାଢ଼ୀ ଅଞ୍ଚଳ ଭୂମିରେ ଲୋଟଇ
ଫରହର ହୋଇଣ ସେ ଧୂଳି ସାଉଁଟଇ ।
ଗୋଲରେ ମନ୍ଥରା ମାରେ ବାହାଲେଡା
ରଣଝଣ ବାଜଇ ନୂପୁର ଦୁଇ ଯୋଡା ।
ଯତନେ ହାବୁଡଇ ଲୋକ ଯାଉ ଯାଉ
ଅପ୍ରକାର ବାଣୀ ସେ କହେ କହୁ କହୁ ।
ଗୀତ ଢଗ ଗାଇ ସେ ହୁଳହୁଳି ଦେଇ
ଘରେ ଘରେ ପଶିଣ ଢମାଳି ଗୀତ ଗାଇ ।
ଘରମାନଙ୍କ ଉତ୍ସବ ଦେଖି ପଚାରଇ ପୁଣି
ଲୋକେ ବୋଲନ୍ତି ଶ୍ରୀରାମ ହେବେ ନୃପମଣି
ତୁହି କି ନଜାଣୁ ଶ୍ରୀରାମ ହେବେ ଦଣ୍ଡଧାରୀ
ମାୟାରେ ଆସିଛୁ ଆମ୍ଭଙ୍କୁ ପଚାରି ।
ଶୁଣିକରି ମନ୍ଥରା ନଗ୍ରବୁଲି ଯାଇ
ଖେଳିବାର ପୁଅକୁ ଦିଅଇ କନ୍ଦାଇ ।
ପଳାଇବା ଲୋକେ ଗାଳି ଦ୍ୟନ୍ତି ରାଇ
ମିଛରେ କଳି ସେ ଆରମ୍ଭ କରଇ ।
ଦାଣ୍ଡହାଟ ବାଟରେ ପଡିଲା ବୋବାଳି
ନଗ୍ରରେ ଦାସୀ ଯେ ଲଗାଏ ହାଲହୋଳି ।

କେ ବୋଲଇ ମନ୍ଥଡୀ କରୁଛି କିମ୍ପା ଦ୍ୱନ୍ଦ
ଏହା ଯୋଗରୁ ଅବଶ୍ୟ ଉପୁଜିବ ମନ୍ଦ ।
ଗାଳିଦେଇ ମନ୍ଥଡୀ ଲଗାଏ ପୁଣି କଳି
ବୁଲିଣ ମନ୍ଥଡୀ ଆସେ କଥା କଳି ।
ଠାବେଠାବେ ଲୋକ ଲଗାନ୍ତି ହାଲହୋଲି
ବିଚାରିଲା ଏଥିରୁ ଯିବା ବେଗେ ଚଳି
ଅନ୍ତଃପୁରେ ପଶିଲା ଧଡପଡ଼ ହୋଇ
ମନକୁ ବିରସ କରି ଆସଇ ଯେ ସେହି ।
କୈକୟା ରାଣୀ ଆଗରେ ପଡ଼ିଲା ମୁହଁ ମାଡି
ଦେହରୁ ପ୍ରାଣ ତାର ବେଗେଗଲା ଛାଡି ।
ପ୍ରତ୍ୟକ୍ଷେ ଦେଖିଲା ତାକୁ ଭ୍ରତର ଜନନୀ
ଧାଇଁ ଯାଇ ମୁଖେ ସିଞ୍ଚିଲାକ ପାଣି ।
ତୋଳି ବସାଇଲେ ବିଞ୍ଚିଲେ ବିଞ୍ଚଣୀ
ବାସପାଣି ମୁହଁରେ ସିଞ୍ଚିଲେକ ପୁଣି ।
ସଚେତ କରାଇ ଯେ ବାରତା ପୁଛିଲେ
କ୍ଷଣକେ ଜ୍ଞାନ ତାର ଦେହରେ ପିଶିଲେ ।
କିମ୍ପାଇଁ ମନ୍ଥଡୀ ତୁ ଲୋ ହୋଇଲୁ ଅଜ୍ଞାନ
ରୋଗବ୍ୟାଧି ତୋ ଦେହରେ କିଛି ନାହିଁ ପୁଣ୍ୟ
ମୋହରେ ପଡ଼ିଲୁ ତୁ ଯେ ଗତ ପ୍ରାଣ ଜାଣି
ଏଥିର କଥା ମୋତେ କହ ସଙ୍ଗାତୁଣୀ ।
ମନ୍ଥଡୀ ବୋଇଲା ଶୁଣ ମହାଦେଇ
ବିପରୀତ କଥା ଆଜି କଳନା ନ ଯାଇ ।
ନଗ୍ରେ ବୁଲିବାକୁ ମୁଁ ଯାଇଥିଲି ଆଜ
ସବୁଙ୍କର ଘରେ ଦେଖିଲି ଶୁଭକାର୍ଯ୍ୟ ।
ଅନେକ ପାତାଙ୍ଗ ସୁବର୍ଣ୍ଣ କଳସ
ବିଚିତ୍ର ଲେଖନ ସବୁଙ୍କରି ଗୃହବାସ ।
ବିବିଧ କୁସୁମରେ ମଣ୍ଡଣି କରିଛନ୍ତି
ମୁକ୍ତାର ମାଳମାନ ଖମ୍ବରେ ଲମ୍ବିଛନ୍ତି ।
ଦାଣ୍ଡରେ ବୀରତୁର ବାଜେ ବୀର ବାଜା
ପଚାରିଲେ ବୋଲନ୍ତି ହେବେ ରାମ ରାଜା ।
ଏକଥା ଶୁଣିଣ ମୁଁ ଅଇଲି ଶୀଘ୍ର ହୋଇ
ବିଚାରିକି ରାଣୀ ଆଗେ କହିବି ବେଗେ ଯାଇ
ମନ୍ଥଡୀ ମୁଖରୁ ଏସନ ବାଣୀ ଶୁଣି
ମନରେ ସନ୍ତୋଷ ହେଲେ କଇକୟା ରାଣୀ ।
ଆପଣାର କଣ୍ଠରେ ଥିବା ରତ୍ନମାଳା
ଲମ୍ବାଇଣ ଦେଲେ ମନ୍ଥଡୀର ଗଳା ।

ବୋଇଲେ ଏମାନ ତୋତେ ଦେଲିମୁଁ ବଧାଇ
ସତେ ଯେବେ କାଲି ମୋର ରାମ ରାଜାହୋଇ
ଆବର ତୋତେ ମୁଁ ଦେବି ଅଳଙ୍କାର
ଧନ ବସ୍ତ୍ର ତୋତେ ଦେବି ମୁଁ ଅପାର ।
ତୋହର ବଚନ ଅମୃତ ମୋତେ ହେଉ
ମୋ ରାମ ଅଯୋଧ୍ୟାରେ ନୃପତି ବୋଲାଉ ।
ଜ୍ୟେଷ୍ଠ ମୋର ରାମ ବହୁ ମହିମା ତାର
ଅଯୋଧ୍ୟାରେ ରାଜାକୁ ଭାଜନ ରଘୁବୀର ।
ସକଳ ଗୁଣେ ଶ୍ରୀରାମଙ୍କୁ ମୋର ପୂଜା
ରାମ ରାଜା ହେବାକୁ ସମସ୍ତେ ମନେ ହେଜା ।
ଏ ବଚନ ଶୁଣି ମନ୍ଥଡୀ ବୋଇଲା
ଏ କଥା ତୋ ମନକୁ କେମନ୍ତେ ଯୋଗାଇଲା
ରାମଚନ୍ଦ୍ର ହୋଇବେ ଅଯୋଧ୍ୟାର ସାଇଁ
ଏ କଥାକୁ ବୁଝ ତୁ ଚତୁର ଲୋକ ହୋଇ ।
କଉଶଲ୍ୟା ରାଣୀ ହେବ ରାଜମାତା
ପାଟ ମହାଦେଈ ହେବେ ଜନକ ଦୁହିତା ।
ତୁମ୍ଭେ ପୁଣି ହୋଇବ କଉଶଲ୍ୟାର ସପତଣୀ
ଶ୍ରୀରାମଙ୍କୁ ଭ୍ରତ ସେବା କରିବେ ମନ ଜାଣି ।
ତୋର ବୋହୂ ହେବେ ସୀତାର ପରିବାରୀ
ଏ କଥାକୁ ତୁ ଯେ ମନରେ ନ ବିଚାରି ।
ଶ୍ରୀରାମର ସେବକ ହେବେ ତୋର ପୁଏ
ରାମଚନ୍ଦ୍ର ବୋଲାଇବେ ଅଯୋଧ୍ୟାର ରାଏ ।
ଧନ ଦ୍ରବ୍ୟ ଶ୍ରୀରାମ ଆୟତେ ରହିବ
ଶ୍ରୀରାମ ବନରେ ସବୁଦ୍ରବ୍ୟ ଥିବ ।
ଥାଟସୈନ୍ୟ ଚଳିବେ ଶ୍ରୀରାମର ବୋଲେ
ଝରି ମରୁଥିବୁ ଗୋ ସେ କଥା ଦେଖିଲେ ।
ଦୋଷ ଲଗାଇ ଶ୍ରୀରାମ ଭ୍ରତକୁ ଦଣ୍ଡିବେ
ଖଳ ବଚନ କହି ଅନର୍ଥ କରିବେ ।
ଯେ ଅବା ତୋର ପୁତ୍ରର ଅଟନ୍ତି ବିଶ୍ୱାସ
ତାହାକୁ ରାମଚନ୍ଦ୍ର କରିବେ ନିଶ୍ଚେ ନାଶ ।
ସାବତ ଭାଇ ସିନା ଅଟନ୍ତି ବଇରୀ ତ
ଭାଇର ଭୋଗ ଶିରୀ ଦେଖି ନ ପାରନ୍ତି ତ ।
କଉଶଲ୍ୟା କରିବ ମନରେ ଯେଉଁ ଇଚ୍ଛା
ତୋତେ କି ପ୍ରାପତ ହେବ ମନୋବାଞ୍ଛା ।
ତୋର ବଧୂ କି ରତ୍ନ ହାନ୍ଦୋଳା ଚଢ଼ିବ
ଉତୁଙ୍ଗିଆ କାହିଁ ଯେ ପଟୁଆର ହେବ ।

ଶ୍ରୀରାମର ଉପରେ ଉଡିବ ଶ୍ୱେତଛତ୍ର
ସାମନ୍ତ ପାତ୍ରଙ୍କ ସଙ୍ଗେ ହେବ ତୋର ପୁତ୍ର ।
କଉଶଲ୍ୟା ଯେମନ୍ତେ ତୋତେ କରଇ ଦୟା
ସେ କଥାକୁ ମନେ ହେତୁକର ଗୋ କୈକୟା ।
ଅଭିମାନ ପାଇ ତୁମ୍ଭେ ଝୁରିଣ ମରିବ
ଆମ୍ଭମାନଙ୍କ ସଙ୍ଗରେ ତୁମ୍ଭେ ଜଣେ ହେବ ।
ଋଷି ଜନମାନେ ନଛାଡନ୍ତି ସେ କଥା
ଯାହାର ପୁଅ ସିନା ତାକୁ ଲାଗେ ବ୍ୟଥା ।
ସୁଭାଗୀ ହୋଇ ତୁ ଯେ ହେଉଥିବୁ ଟାଣି
ପାରୁ ଯେବେ ପୁତ୍ରକୁ କର ଗୋ ନୃପମଣି ।
ଭ୍ରତ ତ ଧାର୍ମିକ ସୁନ୍ଦର ବୀରଶୂର
ଏକା ବାପଙ୍କର ଚାରିହିଁ ସୋଦର ।
ଦଶରଥ ମନକୁ ଭ୍ରତ କିମ୍ପା ନ ଯୋଗାଇ
ଅଯୋଧ୍ୟାରେ ଭ୍ରତ ହୁଅନ୍ତୁ ନରସାଇଁ ।
ହୋଇ ପାରିଲେ ପଛେ ରାମ ହୁଅନ୍ତା ରାଜା
ଆଗକରି ଭ୍ରତକୁ କରନ୍ତୁ ସେ ପୂଜା ।
ତୁମ୍ଭର ଗୁଣକର ଗୋ କୈକୟା
ତୁ ବୋଲୁ ନୃପତିର ଅଛି ତୋତେ ଦୟା ।
ଦେଖିଲା ଶୁଣିଲା ଲୋକଙ୍କୁ ନ ଯୋଗାଇ
ତୁ କେହ୍ନେ ସହିବୁ ଗୋ ଗର୍ଭଧାରୀ ହୋଇ ।
ଅନେକ ପ୍ରକାରେ ମନ୍ଥଡୀ ତିଆରି
କୁମନ୍ତ୍ର ଛନ୍ଦକଥା ତୁ ନଜାଣିଲୁ ନାରୀ ।
କୈକୟା ମନରେ ଯହୁଁ ପଶିଲା ମନ୍ଦ
ସ୍ୱର୍ଗରେ ଥାଇଣ ଭାଳନ୍ତି ଦେବ ଇନ୍ଦ୍ର ।
ବ୍ରହ୍ମା ସହିତେ ଅଇଲେ ଶୂଳପାଣି
ପବନ ବରୁଣ ଅଇଲେ ବେଳ ଜାଣି ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଦଶଦିଗପାଳ
ଏକାଦଶ ରୁଦ୍ର ଚୌଷଠି ମେଘମାଳ ।
ଦ୍ୱାଦଶ ଆଦିତ୍ୟ ଷୋହଳ ଚନ୍ଦ୍ରମା
ବିଦ୍ୟାଧରୀ କିନ୍ନରୀ ଅପସରୀ ବାମା ।
ଅଷ୍ଟବସୁ ନବଗ୍ରହ ଗନ୍ଧର୍ବ ଯକ୍ଷପତି
ଯମ ଧର୍ମ ମରୁତ କଶ୍ୟପ ବୃହସ୍ପତି ।
ସନକାଦି ମୁନି ଦ୍ୱାଦଶ ବିଶ୍ୱଦେବା ।
ସମସ୍ତେ ଆସିଣ ମେଳ ହେଲେ ସଭା ।
ବ୍ରହ୍ମା ବୋଇଲେ ସୁରଗଣଙ୍କୁ ଚାହିଁ
ଶ୍ରୀରାମ ଅବତାର ହେଲେ ଆମ୍ଭ ପାଇଁ ।
ଆମ୍ଭଙ୍କୁ ରଖିବେ ଚାରି ରାବଣକୁ ମାରି
ଆମ୍ଭେ ଯେ ସର୍ବଦା ସେବକ ତାଙ୍କରି ।
ଯେବେ ସେ ଅଯୋଧ୍ୟାରେ ହେବେ କାଲିରାଜା
ଏହ୍ନେକ ବୋଲିଣ ବାଜୁଅଛି ବାଜା ।
ନୃପତି ହୋଇଲେ ତ ରାବଣ ନ ମରିବ
ସୁରଗଣଙ୍କର କଷ୍ଟ ନ ସରିବ ।
ବନବାସ ଗଲେ କାର୍ଯ୍ୟହେବ ସିଦ୍ଧି
ସୀତାଙ୍କୁ ହରିଲେ ରାବଣ ହେବ ବଧି ।
ଚଉଦବରଷ ଯେବେ ରାମ ଦୁଃଖ ପାଇ
ତେବେ ସେ ଅସୁରର ସଗୋତ୍ର ନାଶ ଯାଇ
ଏବେ ଯେବେ ଶ୍ରୀରାମ ହେବେ ନୃପବର
ରାବଣ ସଙ୍ଗରେ କେ କରିବ ସମର ।
କି ବୁଦ୍ଧି ଉପାୟ କରିବା ଏବେ ପୁଣ
ଶୁଣିଣ ବୋଇଲେ ଶଚୀଙ୍କ ରମଣ ।
ତ୍ରୈଲୋକ୍ୟ ମାତାଙ୍କୁ ପେଷିଛି ଆଗକରି
ସେ ତହିଁରେ ଅଛି ମନ୍ଥଡୀ ରୂପ ଧରି ।
ଶ୍ରୀରାମ ରାଜାପଣ ଖଣ୍ଡିବାର ପାଇଁ
ଆଗକରି ତାହାକୁ ଅଛି ଯେ ପଠାଇ ।
ସେ କିସ ଉପାୟ କରୁଛି ସେଥିପାଇଁ
ବିଧାତା ବୋଇଲେ ତାହାର ଦୋଷନାହିଁ ।
ଆମ୍ଭର ପାଇଁ କି ବିଷ୍ଣୁଙ୍କୁ ଦ୍ରୋହକଲା
ରାତ୍ର ଦିବସେ ରାମଙ୍କୁ ଅହନ୍ତା ବିହିଲା ।
ଏବେ ରାମ ରାଜା ହେବାର ସେ ଜାଣି
ଅନେକ ଉଦ୍‌ଯୋଗ କରୁଛି ତରୁଣୀ ।
ରାତ୍ରରେ ନିଦ ନମାଡେ ଦିବସ ଭୋକ ନାହିଁ
ଉପାୟ କରୁଅଛି ନାନାକଥା ଭ୍ୟାଇ ।
ଆପଣେ ଗାଳିମନ୍ଦ କରି ସେ କାହାର
ଏତିକି ସାମାନ୍ୟ ଭରସା ତାହାର ।
ଦ୍ରୋହ କଥାକୁ ନ କଲା ସେ ଭୟେ
ଆମ୍ଭର ଲାଗି ସିନା ଦଗ୍ଧ କରେ କାୟେ ।
କୈକୟାକୁ ଅନେକ ମତେ ତିଆରଇ
ସେ ପୁଣି ସ୍ତିରୀର କଥା ନ ଶୁଣଇ ।
ରାମକୁ ଅବା ବନକୁ ପେଷନ୍ତା ତାର ମନେ
ତେଣେ ସେ ସଙ୍କଟ ଲାଗେ ଅଳ୍ପ ଦିନେ ।
ତୁ ଦେବରାଜ ପୁଣ ବନକୁ କହିଲ
ନାରଦ କହିବାରୁ ପଠିଆଇ ଦେଲୁ ।

ପବନ କହିଲେ କର୍ଣ୍ଣରେ ଯାଇ ତାର
ତେତେବେଳୁ ଉପାୟେ ତତପର ।
ବ୍ରହ୍ମାଙ୍କ କଥା ଶୁଣି ବୋଲନ୍ତି ବରୁଣ
ତୁମ୍ଭେ ପିତାମହ ହେ କରଟି କାରଣ ।
ଏବେ ବିଚାରିଣ ଆନକୁ ଯେ ପେଷ
ଯେମନ୍ତେ ରାମ କାଲି ଯାନ୍ତୁ ବନବାସ ।
ନୋହିଲେ ଅସୁରେ ଭୋଗ କରିବେ ବସୁନ୍ଧରୀ
ଏତେ ବୋଲିଣ ଦେବେ ଉଚ୍ଚେ ରୋଦନ କରି
ଦଶଦିଗପାଳେ ଅଷ୍ଟବସୁ କରନ୍ତି ରୋଦନ
ନବଗ୍ରହ ଦେବତା ଗନ୍ଧର୍ବଗଣ ପୁଣ ।
ଅନେକ ରାକ୍ଷସ ପୂର୍ବେ ଥିଲେ ମହୀ
ରାବଣ ପରା ତେଜ ନଥିଲେ ଯେ କେହି ।
ଆମ୍ଭର ରାଜା ଯେ ଅଟନ୍ତି ସୁରପତି
ଏ ପୁଣି ବସଇ ଯାଇ ଦ୍ୱାରପାଳ କତି ।
ତୁମ୍ଭେ ବିଧାତା ଜଗତ ନିତି ପ୍ରତି ଗଢ଼
ରାତ୍ର ପ୍ରହରେକ ଥାଉ ବେଦ ତା ଆଗେ ପଢ଼
ନାରଦ ମହର୍ଷି ବୀଣା ଯନ୍ତ୍ର ବାଇ
ଗାନ୍ଧାର ଆଳାପେ ତ୍ରିପାଠ କରଇ ।
ଦେବଙ୍କର ଗୁରୁ ଯେ ଅଟନ୍ତି ବୃହସ୍ପତି
ତିଥି ବାର କହି ସେ ଉଭା ହୋଇଥାନ୍ତି ।
ଆଉ କେ ଭାଜନ ତାର ଛାମୁରେ କହି
ଏତେ ବୋଲି ଦେବେ ବ୍ରହ୍ମା ଆଗେ ଶୋଇ ।
ସୁରଗଣଙ୍କ ବିକଳ ଦେଖି ପିତାମହ
କହେ ସମର୍ଥରେ ଅଳପ ଦିନ ରହ ।
ଖଳ ଦୂର୍ବଳଙ୍କୁ ବିଚାରିଣ ରାଇ
ବୋଇଲେ ଅଯୋଧ୍ୟାକୁ ଯିବ ବେଗ ହୋଇ ।
କୈକୟା ଗର୍ଭରେ ପଶିବ ଯାଇ ଖଳ
ଦଶରଥ ଦେହରେ ପଶିବ ଦୁର୍ବଳ ।
ସୁରଭି ଯାଇ ଜାତ ମନ୍ଥରୀ ରୂପ ଧରି
ଏମନ୍ତେ ହୋଇଲେ ତୁମ୍ଭେ ତିନିଚାରି ।
ଦେବକାର୍ଯ୍ୟ ଅର୍ଥରେ ପାପକୁ ନ ଡରିବ
ତାଙ୍କ ଦେହରେ ଭେଦ ନିଶ୍ଚୟ ହୋଇବ ।
ରାମଚନ୍ଦ୍ରଙ୍କୁ କୈକୟା ଛାଡିବେ ଉପ୍ରୋଧ
ଦଶରଥ ସେ କଥାକୁ ଯିବ ପ୍ରତିଶୋଧ ।
ମନ୍ଥରୀର ବୋଲ ଯେ କରିବେ ଭ୍ରତମାତା
ରାମଚନ୍ଦ୍ର ବନେ ଯିବେ ସଙ୍ଗେ ଘେନି ସୀତା ।

ଲକ୍ଷ୍ମଣ ଗୋଡାଇବେ ଶ୍ରୀରାମ ଯାଉ ଯାଉ
ସରଯୁ ପାରି ହୋଇବେ ଶ୍ରୀରାମ ଥାଉ ଥାଉ ।
ଚଉଦ ବରଷ ନୋହିବେ ନୃପତି
ଶ୍ରୀରାମଠାରେ ଦଶରଥ ନକରିବେ ପ୍ରୀତି ।
ଏ କଥାଯେବେ ତୁମ୍ଭେ ଆଜି ମଧ୍ୟେ କର
ତେବେ ସେ ନାଶ ଯିବ ରାବଣ ଅସୁର ।
ଯାଅ ହେ ବେଗେ ତୁମ୍ଭେ ହେଳା ଯେ ନକର
ଶ୍ରୀରାମଚନ୍ଦ୍ରଙ୍କୁ ପଠାଅ ବନନ୍ତର ।
ଯେତେ ମାୟା ତୁମ୍ଭେ ଦୁହେଁ ଅଛ ଶିଖି
ତୁମ୍ଭର ହେତୁରୁ ଦେବେ ହେବେ ସୁଖୀ ।
କରଯୋଡ଼ି ଖଳ ଦୂର୍ବଳ କହେ ପୁଣ
ଦଇବାଦି ସର୍ବ ଦେବଗଣ ଶୁଣ ।
ବିଷ୍ଣୁ ଦ୍ରୋହକରିବୁ ଆମ୍ଭେ ତୁମ୍ଭେ ଏଥିର ଦୋଷୀ
ବିଷ୍ଣୁ ଭୋଗଛାଡି ରାମ ହେବେ ବନବାସୀ ।
ତ୍ରୈଲୋକ୍ୟର ମାତା ଯେ ଅଟନ୍ତି ଜାନକୀ
ଅସୁର ପୁରେ ରହିଣ ହୋଇବେ ସେ ଦୁଃଖୀ ।
ବିଧାତା ବୋଇଲେ ତୁମ୍ଭେ ବେଗେ ଯାଅ
ଏ ଦୋଷ ଆମ୍ଭର ତୁମ୍ଭେ ବିକଳ ଯେ ନୁହଁ ।
ଧାତା ଆଜ୍ଞା ପାଇ ଦୁର୍ବଳ ଦୁଇଜଣ
ଅଯୋଧ୍ୟାରେ ପ୍ରବେଶ ହୋଇଲେ ତକ୍ଷଣ ।
ରାଜାର ମନ୍ଦିରେ ସେ ପଶିଲେ ମାୟାରୂପେ
ଦଶରଥ ନୃପତିର ମିଳିଲେ ସମୀପେ ।
ତକ୍ଷଣେ ମହୀପତି ହୋଇଲେ ବିକଳ
ଛନ୍ନ ଛନ୍ନ ମନ ତାର ଜୀବନ ଆକୁଳ ।
ତରଳରେ ନୟନ ବୁଜନ୍ତି ଘନଘନ
ଅସ୍ଥିର ଭାବ ବିକଳିତ ଯେ ମନ ।
ଯହୁଁ ଦୁର୍ବଳ ମହୀପତିକି ଆକର୍ଷିଲା
ଖଳ ମହାତମା ଯେ ସେଠାରୁ ପଳାଇଲା ।
ଯେଉଁଠାରେ କଇକୟା ମନ୍ଥରୀ କଥା ହୋନ୍ତି
ତହିଁରେ ଯାଇ ଖଳ ପୁରୁଷ ମିଳନ୍ତି ।
ରାଣୀର ଶରୀରରେ ବସିଲା ସେ ମାଡି
ଚେତା ଯେ ଚୈତନ୍ୟ ଦେହରୁ ଗଲା ଛାଡ଼ି ।
ଚିତ୍ତଭ୍ରମ ହେବାରୁ ଆନୁଆନ ସେ କହଇ
ମନ୍ଥରୀ ବୋଲଇ ଶୁଣ ମୋର ସହୀ ।
ଶତ୍ରୁର କଥାକୁ ତୁ ମଣୁଅଛୁ ହିତ ।
ତୋତେ ଯେ ଗ୍ଡୋଚର ନୁହେ ତୋର ଚିତ୍ତ ।

ପେଟ ଥାଉ ଥାଉ କୋଳକରୁ ପିଠି
ବାଟ ଥାଉ ଅମଡାରେ ଚାଲୁ ବିମ୍ବଓଷ୍ଠୀ ।
ଅମୃତ ପକାଇ ଗୋ ବିଷ କରୁ ପାନ
ତୋହର ଦେହରେ ନ ବସେ ଅଭିମାନ ।
ତୋର ପୁତ୍ର ଥାଉ ସାବତ ପୁତ୍ର ଲୋଡୁ
ତୋର ବୁଝିବାର ପଣ ସବୁ ପୋଡୁ ।
ରାଜମାତା ହେବାକୁ ତୋତେ ନ ଯୋଗାଇ
ସଉତୁଣୀ ସଙ୍ଗେ ନିତ୍ୟେ ମିତଣୀ ବସୁ ତୁହି ।
ସାମାନ୍ୟ ବୁଦ୍ଧି କି ବୋଲିବାକ ତୋତେ
ଏ କଥା ଶୁଣିବାକୁ ଲାଜମାଡେ ମୋତେ ।
କେବଣ ଦଇବ ପୁଣି ତୋତେ ଜାତକଲା
ତୋ ଦେହେ ଛଳ ହିଂସା କିଛିହିଁ ନ ରହିଲା
ଏମନ୍ତ ବଚନ କହି ମନ୍ଥରୀ ଝିଙ୍ଗାସିଲା
କୈକୟୀ ମନରେ ସେ କଥା ପଶିଲା ।
ବୋଇଲା ସଖୀ ତୁ ଲୋ ଯାହା ପ୍ରକାଶିଲୁ
ମୋହର ହିତ ନିମନ୍ତେ ଏକଥା ଭିଆଇଲୁ ।
ଆରହୁଁ ଜାଣିଥିଲେ ବୁଝନ୍ତୁ ମୋର କଥା
ଏବେ ନରପତି କଲା ତା ଦୃଢ଼ତା ।
ଶ୍ରୀରାମକୁ ରାଜ୍ୟ ଦେବାକୁ କହିଲା
କଥାଟା ସାର ହୋଇଣ ବଳାଇଣ ଗଲା ।
ଏବେ ମାଗିଲେ କଥା ହେବ ଅବିହିତ
କିସ ବୋଲିଣ ମୋତେ ବୋଲିବେ ଜଗତ ।
ଏବେ ମୁଁ ଏହାକଲେ ନୋହିବ କିଛି କାର୍ଯ୍ୟ
ଆପଣାର କଥାରେ ନିଜକୁ ହେବ ଲାଜ ।
ଶ୍ରୀରାମଚନ୍ଦ୍ରଠାରେ ହୋଇବି ଅନ୍ତର
ଅସୁଖ ପାଇବେ ଦଶରଥ ନୃପବର ।
କାର୍ଯ୍ୟହିଁ ନୋହିବ ମୁଁ ଯେ ପାଇବି ଅପଖ୍ୟାତି
ଶ୍ରୀରାମକୁ ରାଜନ କରିବେ ମହୀପତି ।
ଆଗରୁ ମାଗିଥିଲେ କଥାର ଆଶାଥାନ୍ତା
ଦେଇଥିଲେ ନରପତି ଅଥବା ଦିଅନ୍ତା ।
ଟୀକା ଦେଲେଣି ରାଏ ଶ୍ରୀରାମଚନ୍ଦ୍ର ଆଣି
କିସ ବୋଲି ମାଗିବି ତାଙ୍କୁ ମୁହିଁ ପୁଣି ।
ଏମନ୍ତ ବଚନ ଶୁଣିଣ ମନ୍ଥରୀ
ଉପାୟରେ ବୁଦ୍ଧିବଳେ କାର୍ଯ୍ୟ ଅଛି ଗଢ଼ି ।
ଶମ୍ବର ଦୈତ୍ୟ ସଙ୍ଗେ ଇନ୍ଦ୍ରଥିଲେ ଯୁଝି
ସ୍ୱର୍ଗ ଛାଡି ଦେବେ ପଳାଇଲେ ଭାଜି ।
ସେ ବାରତା ପାଇଲେ ଦଶରଥ ରାଏ
ଯାଇଣ ଦୈତ୍ୟ ସଙ୍ଗେ ଅନେକ ଯୁଦ୍ଧ କଏ ।
ତୁ ଯେ ସାରଥି ପଣେ ବାହୁଥିଲୁ ରଥ
ଶମ୍ବର ବାଣେ ମୋହଗଲେ ଦଶରଥ ।
ଜାଣିକରି ତୁ ବାହୁଡ଼ାଇ ଆଣିଲୁ ଯାନ
ଏ କଥାରେ ତୋତେ ସଖୀ ଅଛି ଅଭିମାନ ।
ଶସ୍ତ୍ରରେ ଦେହ ତାର ଭେଦ ହୋଇଥିଲା
ତୁମ୍ଭର ଔଷଧରେ ଦେହ ଭଲ ହେଲା ।
ପ୍ରସନ୍ନ ହୋଇ ତୋତେ ଯାଚି ଦେଲେ ବର
ଅନୁଗ୍ରହ କଲେ ତୋତେ ଅଯୋଧ୍ୟା ଈଶ୍ୱର ।
ଯୁଦ୍ଧରୁ ଆସିଣ ତୁ ବେଳକାଳ ଜାଣି
ଔଷଧ ଦେଇ ଭଲ କଲୁରେ ତରୁଣୀ ।
ରାଜାବୋଇଲେ ରାଜ୍ୟଶିରୀତୋହେତୁ ପାଇଲି
ତେଡ଼େ ଦୈତ୍ୟଠାରୁ ମୁଁ ଉବୁରି ଅଇଲି ।
ହୋଇଲୁ ସଖୀ ମୋର ପ୍ରାଣର କାରେଣୀ
ଯେଉଁ ବର ମାଗିବୁ ତୋତେ ଦେବି ଏହିକ୍ଷଣି
ଏକଥା ମିଥ୍ୟାହେଲେ ପାପୀ ହେବି ମୁହିଁ
ଯେଉଁ କଥା ଇଚ୍ଛା ତୋର ମାଗ ପ୍ରାଣସହୀ ।
ତୁମ୍ଭେ ଯେ ନୃପତିଙ୍କି କହିଲ କୈକୟୀ
ଭୋସ୍ୱାମୀ ତୋରଯେବେ ମୋରେ ହେଲାଦୟା
ଏବେତ ଅପୂର୍ବ ନାହିଁ ମୋତେ କିଛି
ତୁମ୍ଭେ ସୁଦୟା କଲେ ମୋର ସଂପଦ ଅଛି ।
ତୁମ୍ଭର ଆଜ୍ଞା ଯେବେ ହେଲା ପ୍ରାଣେଶ୍ୱର
ଯେତେବେଳେ ଯାହାମାଗିବି ଦେବତା ନିକର
ସେବେଳର କଥା ଏବେ ହୋଇଅଛି ଆସି
ପାରୁ ଯେବେ ରାଜାକୁ ମାଗ ଶୁଭ୍ରକେଶୀ ।
ରାମ ବନଯିବ ଭ୍ରତ ହେବ ଦଣ୍ଡଧାରୀ
ସତ୍ୟ କରାଇ ତୁ ମାଗ ବେଗକରି ।
କିମ୍ବା ନୃପତି ନକରିବେ ସନମତ
ଦୁଇପୁତ୍ର ନୃପତିଙ୍କ ଆମ୍ଭାରୁ ହେଲେ ଜାତ ।
ଶ୍ରୀରାମ ଭ୍ରତରତ ବେଗଳ ନୁହନ୍ତି
ଚାରି ପୁତ୍ରରୁ ପୁତ୍ରେକ ହୋଇବେ ନୃପତି ।
ମନ୍ଥଡ଼ୀର ବଚନ ଏସନକ ଶୁଣି
ମନରେ ଅନୁରାଗ ହେଲେ କୈକେୟୀ ରାଣ
ବୋଇବେ ମନ୍ଥଡ଼ୀ ଲୋ ମାଗିବି ଆଜ ରାତି
ଭ୍ରତକୁ ଅଯୋଧ୍ୟାରେ କରିବି ନୃପତି ।

ଶ୍ରୀରାମଙ୍କୁ ବନକୁ ପେଷିବି ମୁହିଁ କାଲି
ଦେଖ ମୋର ପ୍ରତିଜ୍ଞା କଇକୟା ବୋଲି ।
ଖଳ ବଚନକୁ ରାଣୀ ସନମତ କଲା
ତେବେ ଯେ ଦେବଙ୍କର ସଭା ମଉଳିଲା ।
କଇକୟା କରୁଅଛି ବିଷମ ଅନର୍ଥ
ଧିକ ଦାଉ ତାର ଯେ ସକଳ ପଦାର୍ଥ ।
ପୂର୍ବରେ ସେହି ନାରୀ ପାପ ଅର୍ଜିଥିଲା
କାହାର ବୋଲରେ ସେ ହୋଇବ ଆନକଲା ।
ଅବିବାହି କାଳେ ପୁଣି ପିତା ଘରେ ଥିଲା
ବିବିଧ ବେଶ ହୋଇଣ ଆସନକୁ ଗଲା ।
ମନ୍ତ୍ରୀ ଅମନାତ୍ୟ ସମସ୍ତେ ଅଛନ୍ତି
ସଗର୍ବ ହୋଇଣ ଆସ୍ଥାନେ ବସିଛନ୍ତି ।
ଦୁହିତା କୈକୟା ମଧ୍ୟରେ ପୁଣ ଥାନ୍ତେ
ଯାଇଣ ମିଳିଲେ ଏକ ବୃଦ୍ଧ ତପୋବନ୍ତେ ।
ପାଚିଲାର ଥୋଡ଼ ପିଙ୍ଗଳ ଜଟାଭାର
ଥରହର ବଦନ ଶୁଭେ କର୍ଣ୍ଣଦ୍ୱାର ।
ପାଖର ଲୋକଙ୍କୁ ନଚାହେଁ ନୟନେ
ତାହା ଦେଖି କୈକୟା ହସିଲା ମନେମନେ ।
ହାସ୍ୟକୁ ଚାହିଁଣ ବୋଲନ୍ତି ମୁନିବର
ଆମ୍ଭଙ୍କୁ ପରିହାସ କଲୁ ତୁହି ଛାର ।
ବୃଦ୍ଧକୁ ଦେଖିଣ ହସିଲୁ ରାଜଜେମା
ତୋତେ ପରିହାସ କରନ୍ତୁ ତିନିପୁରେ ସିନା ।
ଶାପଦେଇ ଋଷି ଗଲେ ଅନ୍ତର୍ଦ୍ଧାନେ
କୈକୟା ଜେମା ବିଷାଦ ହେଲା ତାର ମନେ
ବାଳକାଳେ କୈକୟା ଏମନ୍ତ ହୋଇଥିଲେ
ସେହି କାଳର କଥାଏବେ ହେଲା ହୋଇଥିଲେ
ସେହି କାଳର କଥା ଏବେ ହେଲା ଭଲେ ।
ବେଳକାଳ ଜାଣିଥିଲେ ବାଟ ଚାହିଁ
ତପୀଙ୍କର ବଚନ ଅନ୍ୟଥା ନୁହଇ ।
ଶ୍ରୀରାମଙ୍କୁ କୈକୟା ଯେବେ ପେଷିବ ବନ
ତାକୁ ହାସ୍ୟ କରିବେ ତିନିପୁର ଜନ ।
ଏସନକ କର୍ମ ଅର୍ଜିଅଛି ରାଣୀ
ମନ୍ଥରାର ବୋଲରେ ପଡ଼ିଲା ସେ ପୁଣି ।
ଖଳର ହେତୁରୁ ରାଣୀ ସନମତ କଲା
ଆଜି ରାତିରେ ରାଜ୍ୟ ମାଗିବି ବୋଇଲା ।
ଶୁଣ ଗୋ ପାର୍ବତୀ ମନ କରି ଧୀରା
ଶ୍ରୀରାମ ବନ ଯିବେ ଦେବଙ୍କ ମାୟା ପରା ।

ପାର୍ବତୀ ବୋଇଲେ କହ ହେ ଈଶ୍ୱର
ପୂର୍ବରୁ କେଉଁ ପାପ ଦଶରଥଙ୍କର ।
ଶ୍ରୀରାମଙ୍କ ଅଭିଷେକ ନଦେଖିବେ ପୁଣ
ଚୌଦବର୍ଷ କାନ୍ଦିବେ କୌଶଲ୍ୟା ରାଣୀ ଜାଣ
ଏହା ମୋତେ ବୁଝାଇ କହ ତ୍ରିଲୋଚନ
ତେବେ ସିନା ପ୍ରସନ୍ନ ହୋଇବ ମୋର ମନ ।
ଈଶ୍ୱର ବୋଇଲେ ପାର୍ବତୀ ଗୋ ଶୁଣ
ପୂର୍ବଜନ୍ମ କଥା କହିବା ବୁଝାଇଣ ।
ଦଶରଥ ପୁତ୍ରର ଅଭିଷେକ ବେଳେ
କରୁଣାକର ଋଷି ମିଳିଲେ ସେଠାରେ ।
ମାନ୍ୟଧର୍ମ ଗଉରବ ରାଜା ତାଙ୍କୁ କଲେ
ଦିବ୍ୟ ଆସନରେ ମୁନିଙ୍କୁ ବସାଇଲେ ।
ଅଭିଷେକ କଲେ ଯେ ପୁତ୍ର ଦଶରଥ
ସଗର୍ବରେ ରାଜା ହୋଇଲେ ମୋହିତ ।
ଅଭିଷେକ ସରନ୍ତେ ମେଲାଣି ସର୍ବେ ହେଲେ
ଧନରତ୍ନ ପାଇଣ ସମସ୍ତେ ତୋଷ ହେଲେ ।
କରୁଣାକର ଋଷିଙ୍କୁ କରିଲେ ମେଲାଣି
ନମସ୍କାର ନୋହିଲେ ନୃପଶିରୋମଣି ।
ଦେଖିଣ କୋପକଲେ କପିଳ ଋଷି ସୁତ
ବୋଇଲେ ମାନ୍ୟଧର୍ମ ନକଲୁ ନୃପନାଥ ।
ତୋହର ଗର୍ବ ମୁଁ ଜାଣିଲି ଯେ ପୁଣ
ଆମ୍ଭର ଶାପକୁ ଘେନ ନରରାଣ ।
ତୋର ଘରେ ବିଷ୍ଣୁ ହୋଇବେ ଯେ ଜାତ
ରାବଣ ଅସୁରକୁ ମାରିବେ ରଘୁନାଥ ।
ଚତୁର୍ଦ୍ଧାରୂପରେ ଚାରିପୁତ୍ର ହେବେ
ରାମଲକ୍ଷ୍ମଣ ଭରତ ଶତ୍ରୁଘ୍ନ ବୋଲାଇବେ ।
ଶ୍ରୀରାମ ବାସୁଦେବ ଭରତ ହେବେ ଚକ୍ର
ଗଦାପଦ୍ମ ଘେନିଣ ଶତ୍ରୁଘନ ଜାତ ।
ଅନନ୍ତ ମୂର୍ତ୍ତି ଜାତ ହୋଇବେ ଲକ୍ଷ୍ମଣ
ଜାନକୀ ସଙ୍ଗେ ଜାତ ଚାରିଭୌଣୀ ଜାଣ ।
କମଳା ହୋଇବେ ବଇଦେହୀ ରୂପ
ପାର୍ବତୀ ହୋଇବେ ଉର୍ମିଳା ସ୍ୱରୂପ ।
ଆଉ ଦୁଇ କନ୍ୟା ଦୁହିଙ୍କର ସୁଖୀ ହେବେ
ଦୁଇ ମାତାରୁ ତିନିକନ୍ୟା ସମ୍ଭୂତ ହୋଇବେ ।
ଜାନକୀ ଭୂମିରୁ ହୋଇବେ ଯେ ଜାତ
ତାର ସକାଶେ ମରିବେ ଦୈତ୍ୟକୁଳ ଗୋତ୍ର ।

ଚାରିକନ୍ୟାଙ୍କୁ ଚାରିପୁତ୍ର ବିଭା ହେବେ ତୋର
ଶ୍ରୀରାମ ଅଭିଷେକ ନ ଦେଖିବୁ ନେତ୍ରର ।
କୈକୟୀ ସତ୍ୟର ଭ୍ରତ ହେବେ ରାଜା
ଚଉଦ ବର୍ଷ ରାମ ରାଜ୍ୟ କରିବେ ତେ୍ୟଜା ।
ରାମଙ୍କୁ ନ ଦେଖିଣ ପ୍ରାଣ ତୋର ଯିବ ।
ଅସୁରଙ୍କୁ ମାରି ରାମ ଅଯୋଧ୍ୟାରେ ରାଜା ହେବ
ଏମନ୍ତ କହି ମୁନି ଅନ୍ତର ହୋଇଗଲେ
ପମ୍ପା ସରୋବର ତୀରରେ ମିଳିଲେ ।
ଦଶରଥ କଥା ଶୁଣିଲ ଗୋସାମଣି
କଉଶଲ୍ୟା କଥାକହିବି ଶୁଣ ପୁଣି ।
ଦଶରଥ ରାଜା କୌଶଲ୍ୟାକୁ ହେଲେ ବିଭା
ସାତଶ ପଞ୍ଚାଶ ରାଣୀ ମଧରେ ପାଏ ଶୋଭା ।
ନବ ସହସ୍ର ବର୍ଷକାଳ ବହିଗଲା
ପୁତ୍ର ଦୁହିତାଦି କିଛି ହିଁ ନୋହିଲା ।
କେତେକାଳେ କୌଶଲ୍ୟାର ଦୁହିତା ହେଲାଜାତ
ଶାନ୍ତା ନାମ ତାକୁ ଦେଲେକ ବଶିଷ୍ଠ ।
ବିଭାକାଳେ ଋଷ୍ୟଶୃଙ୍ଗ ଅଣାଇଲେ ଜାଣି ।
ଚରୁଦେଇ ଋଷ୍ୟଶୃଙ୍ଗେ ବିଭା ଦେଲେ ପୁଣି
ବିବାହ ସମୟରେ ନାରଦ ଯାଇଥିଲେ ।
ରାଣୀସଂହ ପୁରରେ ପ୍ରବେଶ ହୋଇଲେ ।
ଦେଖିକରି କଉଶଲ୍ୟା ଆସନୁଁ ଉଠିଗଲେ
ନାରଦ ଋଷିଙ୍କି ମାନ୍ୟ ସେ ନକଲେ ।
କ୍ରୋଧରେ ଶାପ ଦେଲେ ବ୍ରହ୍ମାଙ୍କ ନନ୍ଦନ
ଚଉଦବର୍ଷ ଶୋକ କରିବୁ ତୁ ଜାଣ ।
ଏତେ କହି ନାରଦ ଅନ୍ତର୍ଦ୍ଧାନ ହେଲେ
ସେହି କଥା ଏବେ ଫଳିଲା ଯେ ଭଲେ ।
ଶୁଣି ପୂର୍ବକଥା ଗଣେଶଙ୍କ ମାତା
ସନ୍ତୋଷ ହେଲେ ଆସିଲାକି ଚେତା ।
ଏଥୁଅନନ୍ତରେ ଶ୍ରୀରାମଙ୍କ ମାତା
ମୃଦୁସୁଲୀ ମୁଖରୁ ପାଇଲେ ବାରତା ।
ରାମ ତୋର ନୃପତି ହୋଇବେ ଯେ କାଲି
ଏ ବଚନ ଆସିଣ କହିଲା ମୃଦୁସୁଲୀ
ଶୁଣିଣ କୌଶଲ୍ୟା ହୋଇଲେ ଆନନ୍ଦ
ମୁଖ ବିକାଶିଲା ପୂର୍ଣ୍ଣିମାର ଚାନ୍ଦ ।
ବ୍ରାହ୍ମଣଙ୍କୁ ଭୋଜନ ଦେଇ ଗ୍ରହଶାନ୍ତି କଲେ
ବିଷ୍ଣୁ ଦେବତାଙ୍କୁ ବିବିଧ ଭୋଗ ଦେଲେ ।
ଶିବଙ୍କୁ ପୂଜାରେ କରାଇଲେ ତୃପ୍ତ
ଦେବୀଙ୍କୁ ଦେଲେ ସେ ଛାଗଳ ବଳି ଭାତ ।
ଦରିଦ୍ର ଲୋକଙ୍କୁ ଅନ୍ନ ବସ୍ତ୍ର ଦେଲେ
ଭୃତ୍ୟ ଲୋକମାନଙ୍କୁ ଗଉରବ କଲେ ।
ବୋଇଲେ ଶ୍ରୀରାମ ମୋର ହୋଇବ ଯେବେ ରାଯେ
ତୁମ୍ଭଙ୍କୁ ଦେବି ମୁଁ କାଲି ବହୁତ ଥାଏ ।
ସୀତାଙ୍କ ଆଗରେ କହିଲେ ପରିବାରୀ
ତୁମ୍ଭ ସ୍ୱାମୀ କାଲି ହୋଇବେ ଦଣ୍ଡଧାରୀ ।
ଦଶରଥ ରାଜା ବଶିଷ୍ଠଙ୍କୁ ଭାଳି
କାଲି ମୁଁ ରାମଙ୍କୁ ଦେବି ମହୀଆଳି ।
ପାଟ ମହାଦେଈ ତୁମ୍ଭେ ହେବ ଗୋ ବଇଦେହି
ଆମ୍ଭଠାରେ ଦୟା କରିଥିବ ଆଈ ।
ଶୁଣି ପରମ ତୋଷ ସୀତାଙ୍କର ଚିତ୍ତ
ମନେ ମନେ ଦେବୀ ହୋଇଲେ ଉଷତ ।
କିଛି ନ କହିଲେ ଲଜ୍ଜାଭାବ ଘେନି
ସତେ ସ୍ୱାମୀ ମୋର ବହିବେ ମେଦିନୀ ।
ଲକ୍ଷ୍ମଣଙ୍କର ଆନନ୍ଦ କହିଲେ ନସରେ ।
ରଘୁକୁଳ ନାଥ ହେବେ ଦଣ୍ଡଧରେ ।
ପାତ୍ର ସାମନ୍ତମାନେ ମିଳିଲେ ତାଙ୍କ ପାଶେ
ତାହାଙ୍କୁ ଶୁଭ କଥା କହନ୍ତି ହରଷେ ।
ଶ୍ରୀରାମର ବିଶ୍ୱାସ ଲୋକଙ୍କୁ ଘେନି ଭାଳି
ରାଜା ହେବାକୁ ଯହୁଁ ହେଲେ ମହୀଆଳି ।
ଦେବା ଦେବୀ ପୂଜା କରାଇ ଅନେକ
ଈଶ୍ୱରଙ୍କୁ ପଞ୍ଚାମୃତେ କଲେ ଅଭିଷେକ ।
ବ୍ରାହ୍ମଣମାନଙ୍କୁ ବହୁ ଧନ ଦେଲେ
ଗ୍ରହପୁତ୍ର ମୁଖରେ ଗ୍ରହଶାନ୍ତି କଲେ ।
ସହସ୍ରେକ ଗୋରୁରେ ଗୋଗୋଷ୍ଠ ଭିଆଇ
ଶତେ ବରଷକୁ ଭାତ ଲୁଗା ଦେଇ ।
ଦଶ ଦଶ ଗୁଆଳ ସେ ଗୋଗୋଷ୍ଠ ପଲ ବାଇ
ପଘା ଯଅଳେ ଯେ ବାଆଁରା ଦୁଇ ଦୁଇ ।
ଏମନ୍ତେ ସହସ୍ରେ ଗୋଗୋଷ୍ଠ ଭିଆଇଲେ
ବ୍ରାହ୍ମଣ ଜଣକେ ଗୋଗୋଷ୍ଠ ଗାଈ ଦେଲେ ।
ବୃଦ୍ଧ ବ୍ରାହ୍ମଣେକ ଅଇଲା ଖରକରି
ଶ୍ରୀରାମଙ୍କୁ ଆଶୀର୍ବାଦ କଲା ବାକ୍ୟ ପଢ଼ି ।
ରଘୁନାଥ ବୋଇଲେ ସହସ୍ରେକ ଗୋରୁ
ଘେନିଯାଅ ବ୍ରାହ୍ମଣ ତୋ ଦରିଦ୍ରତା ସରୁ ।

ବୃଦ୍ଧ ବ୍ରାହ୍ମଣ ତୁମ୍ଭେ ଚଳିତ ଅସକତ
ବସିବାର ଠାବରେ ମିଳିବ ଯେ ଭାତ ।
ଶୁଣିକରି ଦ୍ୱିଜବର ବଚନ କହିଲା
ଦିଅହେ କୁଶପାଣି ହେଉ ସବୁ ଭଲା ।
ଶ୍ରୀରାମ ଦେଲେ ଦାନ ବ୍ରାହ୍ମଣ ନେଲେ ପୁଣ
ସନ୍ତୋଷ କଲ୍ୟାଣ କଲେ ଦ୍ୱିଜରାଣ ।
ପିନ୍ଧିବାର ଲୁଗାକୁ ବ୍ରାହ୍ମଣ ସଜକଲେ
କରରେ ଲଉଡ଼ି ଧରି ଗୋଗୋଷ୍ଠେ ଧାଇଲେ
ଲୋଭରେ ବାହ୍ମଣ କରନ୍ତି ପାକର୍ମ
ଟହ ଟହ ହୋଇଣ ହସିଲେ ଶ୍ରୀରାମ ।
ଡକାଇଣ ବୋଇଲେ ଶୁଣ ହେ ବ୍ରାହ୍ମଣ ।
ଗୋଷ୍ଠରେ ଜଗିଛନ୍ତି ଗୋପାଳ ଦଶଜଣ ।
ଶତେ ବରଷକୁ ଭାତ ବରତନ ଦେଇ
ବାଞ୍ଛାକରି ଯେବେ ପାରିବ ନିର୍ବାଇ ।
ତୁମ୍ଭେ କିମ୍ପା ଦୁଃଖ ପାଇବ ବ୍ରାହ୍ମଣ
ଦାନ ଦେବାର ମୋର ହୋଇବ ଅକାରଣ ।
ଶୁଣିଣ ଦ୍ୱିଜବର ଗୋରୁଙ୍କୁ ଘେନିଗଲା
ଶ୍ରୀରାମଙ୍କୁ ଅନେକ କଲ୍ୟାଣ ସେ କଲା ।
ଏହି ପ୍ରାୟେ ରାଘବ ବହୁତ ଦାନ ଦେଲେ
ଦରିଦ୍ରଙ୍କ ମନ୍ଦିରେ ସୁବର୍ଣ୍ଣ ପୂର୍ଣ୍ଣ କଲେ ।
ଅନ୍ନ ବସ୍ତ୍ର ଛତ୍ର ପାଣି ପଣା ଦାନ
ତଇଳ ଗନ୍ଧ ପୁଷ୍ପ ବିବିଧ ବିଧାନ ।
ଅପୂଜା ଦେବତାଙ୍କୁ କରାଇଲେ ପୂଜା
ବୋଇଲେ ମୁହିଁ ଯେବେ କାଲି ହେବି ରାଜା ।
ମେଢ଼ ଯେ ମଣ୍ଡପ ଦେଉଳ ତୋଳାଇବି ।
ଭୋଗ ରାଗ ସମ୍ପଦ ଅନେକ ଭିଆଇବି ।
ଦାନ ଦେଲେ ଶାନ୍ତି ନୁହେ ମୋର ମନ
ଭୃତ୍ୟଜନମାନଙ୍କୁ ଦେଲେ ବହୁତ ଧନ ।
ଏସନ ସମୟରେ ବେଳ ଅସ୍ତ ହେଲେ
ଶ୍ରୀରାମଚନ୍ଦ୍ର ଯାଇ ସନ୍ଧ୍ୟା ସୁମରିଲେ ।
ଅନ୍ନ ଭୋଜନ ପୁଣି ନକଲେ ସେବନ
ଫଳ ମୂଳରେ ଶ୍ରୀରାମ ତୋଷକଲେ ମନ ।
ବ୍ରାହ୍ମଣଙ୍କ ସଙ୍ଗତରେ ଜିତେନ୍ଦ୍ରିୟ ହୋଇ
ନିଶି ପୁହାଇଲେ ଉଜାଗର ହୋଇ ।
ବାସୁଦେବ ବାସୁଦେବ କଲେ ସୁମରଣ
କି ଜାଣି ସନ୍ନ୍ୟାସୀ ରୂପ ବ୍ରାହ୍ମଣ ଉଚ୍ଚାରଣ ।

ଏଥୁ ଅନନ୍ତରେ ଦଶରଥ ରାଏ
ଅଭିଷେକ ଉତ୍ସବ ଯୋଗାଡ଼ କରାଏ ।
ଶ୍ରୀରାମ ଅଭିଷେକ ହେଲେ ପ୍ରଭାତରେ
ସମ୍ଭର୍ବମାନ ଭିଆଣ କରଟି ସତ୍ୱରେ ।
ପାତ୍ର ବୋଇଲେ ଦେବ ନଅର ମଣ୍ଡାଇଲି
ଦେବସୁତ ପ୍ରମାଣେ ସମସ୍ତ ରୁଣ୍ଡ କଲି ।
ରାତ୍ର ପ୍ରହରେ ଥାଉଁ ଅଣାଇବି ସଞ୍ଚମାନ
ରବି ଉଦେହେଲେ ଅଭିଷେକର ବିଧାନ ।
ସୁମନ୍ତର ତହୁଁ ଏମନ୍ତ ବାଣୀ ଶୁଣି
ମନରେ ସନ୍ତୋଷ ହେଲେ ନୃପମଣି ।
ଏଥୁଅନନ୍ତରେ ନୃପତି ଦଶରଥ
ମେଲାଣି ଦେଲେ ସେ ପାତ୍ର ଅମନାତ୍ୟ ।
ଅନ୍ତଃପୁରକୁ ବିଜେ କଲେ ମହୀପାଳ
ମୃଦୁସୁଲୀ ପହଣ୍ଡ ମଣାଇଁ ତତ୍କାଳ ।
ହୁଳହୁଳି ଶବଦ କରନ୍ତି ନଟକାରୀ
ସୁବର୍ଣ୍ଣ ଦିହୁଡ଼ି ଧରିଛନ୍ତି ନାରୀ ।
କୈକୟୀର ପୁରେ ନୃପତି ବିଜେକରି
ଦେଖିଲେ ଅଭିମାନେ ବସିଛନ୍ତି ନାରୀ ।
ଶୋକଭରେ ମୁଖ କରିଣ ମହୀଆଳି
କୈକୟୀକୁ ଦେଖିଣ ମନରେ ଦୁଃଖକରି ।
ଭ୍ରତର ଜନନୀ ପୁଣ ମୁଣ୍ଡରେ ଆଣ୍ଠୁଦେଇ
ସ୍ୱାମୀଙ୍କି ଦେଖିଣ ନ ଉଠେ ଚାନ୍ଦମୁହିଁ ।
ଆଗରେ ଉଭା ହୋଇ ପୁଚ୍ଛନ୍ତି ନୃପବର
କିମ୍ପା ମହାଦେଇ ମାନ କରିଛ ମନର ।
ଅକାରଣେ କିମ୍ପା ଗୋ କରୁଅଛ କୋହ
ମୋହର ଆଗରେ ସ୍ୱରୂପ କରି କହ ।
କେଉଁ ଦ୍ରବ୍ୟ ଅପୂର୍ବ ହୋଇଲା ଯେ ତୋତେ
ଅଭିମାନ ଛାଡ଼ ମାଗ କିନା ମୋତେ ।
ଶରତ୍ ପୂର୍ଣ୍ଣିମା ଜିଣି ତୋ ଚନ୍ଦ୍ର ବଦନ
ଶରୀର ପଟାନ୍ତର ରସାଣିଲା ସ୍ୱର୍ଣ୍ଣ ।
ନୟନର ନୀର ହୃଦ କମଳ ବର୍ଣ୍ଣ ଜାଣି
ଏହା ମଳିଣ କିମ୍ପା କରୁଛ ସଙ୍ଗାତୁଣୀ ।
ଆନନ୍ଦ କାଳେ କିମ୍ପା ବିଷାଦ ମନ ଧରି
ଅକାରଣରେ ନୟନରୁ ଅଶ୍ରୁଜଳ ଝରି ।
ଆସ ଆସ ସୁନ୍ଦରୀ ବସିଛ କିମ୍ପାଇଁ
କି କି ଅଭିମାନ କହ ତା ବୁଝାଇ ।

ଦାସୀଙ୍କି ଚାହିଁଣ ବୋଲନ୍ତି ନୃପବର
ତୁମ୍ଭେ ଜାଣିଛ କି ଏଥିର ସମାଚାର ।
ମଂଥଡ଼ୀ ବୋଇଲା ମୁଁ ନଜାଣଇଁ କିଛି
ଅପାର କାଳରୁ ସେ ବସିଣ କାନ୍ଦୁଛି ।
ଶୁଣିଣ ନୃପବର ମନରେ ପାଇ ବ୍ୟଥା
ଆପଣେ ଶ୍ରୀକରେ ତୋଳିଲେ ରାଣୀ ମଥା ।
ଛାଡ଼ ଛାଡ଼ ଚିନ୍ତା ଗୋ ମୋର ପ୍ରାଣସହି
କିମ୍ପାଇଁ କଷ୍ଟ ଗୋ ପାଉଅଛୁ ଦେହୀ ।
କିସ ମନେ ଧରିଛୁ ନ ମାଗୁଛୁ ମୋତେ
ମାଗିଲା ମାତ୍ରକେ ଦେବି ଗୋ ତ୍ୱରିତେ ।
ମୋହର ସତ୍ୟ ସତ୍ୟ ନକରେ ମୁଁ ଆନ
ମୁଖ ଟେକି ମୋତେ କହ ଗୋ ବଚନ ।
ଶୁଣିଣ କୈକୟୀ କହେ ଭଛେବୋଣୀ
ତୁମ୍ଭର ସତ୍ୟ ମୁଁ ପୂର୍ବରୁ ଅଛି ଜାଣି ।
ଶମ୍ବର ଦଇତ ସଙ୍ଗରେ ଯୁଦ୍ଧ କଲ
ଇନ୍ଦ୍ରଙ୍କର ପାଇଁ ବିବାଦ ଭ୍ୟାଇଲ ।
ରଥ ବାହିବାକୁ ଭାଜନ କେହି ନାହିଁ
ରଥ ମୁଁ ବାହିଲି ସାରଥୀ ସେ ହୋଇ ।
ସେ ସମୟରେ ମୁଁ ବାହିଲି ଯେ ରଥ
ଶମ୍ବର ତୁଳେ ତୁମ୍ଭେ କଲ ଯେ ଅନର୍ଥ ।
ବିଷମ ଗୋଳଯୁଦ୍ଧ ବାଜିଲା ଦୁହିଙ୍କରି
ସ୍ତିରୀ ବୋଲିକରି ମୋତେ ଦଇତ ନମାରି ।
ତୁ ସ୍ୱାମୀ ତାହାର ସଙ୍ଗରେ ଯୁଦ୍ଧକଲୁ
ଅସୁର ସଇନଙ୍କୁ ହେଳାରେ ମାଇଲୁ ।
ଶମ୍ବର ଦୈତ୍ୟଙ୍କୁ ମାଇଲ ତୀକ୍ଷ୍ଣଶର
ସେହ୍ନାଫୁଟି ନାରାଚ ଭେଦିଲା ହୃଦୟର ।
ଘାତପାଇ ଘୁମାଇଲା ଅସୁର କୁଳପତି
ସ୍ୱର୍ଗେ ଦେବଗଣ ତୋତେ ପ୍ରଶଂସା କରନ୍ତି ।
କ୍ଷଣକରେ ଚେତା ପାଇଣ ଅସୁର
କୋପ ହୋଇଣ ସେ ମାଇଲା ମୋହଶର ।
ସେ ବାଣ ଅତିକ୍ଷଣ ହୋଇଲା ତୋର ଦେହ
ହସ୍ତରୁ ଧନୁ ଛାଡ଼ି ଯାନେ ଗଲ ମୋହ ।
ଦେବତାଏ ଡାକଦେଲେ ସ୍ୱର୍ଗପୁରେ ଥାଇ
ଭୋ ରାଣୀ ବିମାନ ନିଅ ବାହୁଡ଼ାଇ ।
ଏଡ଼େ ମହାରାଜା ଅଖଡ଼େ ନାଶଯିବ
ଏ ଥିଲେ ଦେବକାର୍ଯ୍ୟ ବହୁତ ହୋଇବ ।

ଦେବତାଙ୍କ ବଚନ ପଶିଲା ମୋର କର୍ଣ୍ଣେ
ବାହୁଡ଼ାଇ ବିମାନ ମୁଁ ବାହିଲି ଗଗନେ ।
ଆକି ପିଛୁଡାକେ ଆଣି ଅଯୋଧ୍ୟାରେ କଲି
ଆଉଷଧି ଦେଇଣ ତୁମ୍ଭଙ୍କୁ ବଞ୍ଚାଇଲି ।
ପ୍ରସନ୍ନ ହୋଇ ମୋତେ ଯାଚିଲ ଯେ ବର
ସେହି ଦିନୁଁ ଜାଣିଛି ତୁମ୍ଭର ସତ୍ୟାଚାର ।
ଯେବେ ସତ୍ୟ କରିଥିଲ ନଦେଲ କିମ୍ପାଇ
ଏବେ ପଚାରୁଛ ତାହା ସଙ୍କୋଚ ନପାଇ ।
ଏହାଶୁଣି ନୃପବର ପାଇଲେକ ଲାଜ
ବୋଇଲେ ସଖୀ ମାଗ ଦେବି ଆଜ ।
ଏ ମୋହର ସତ୍ୟ ସତ୍ୟ ନୁହଇ ଯେ ଆନ
ମାଗ ମାଗ ସଙ୍ଗିନୀରେ ହୋଇଲି ପ୍ରସନ୍ନ ।
ଏହା ଶୁଣି କରଯୋଡ଼ି କହଇ କୈକୟୀ
ନ ପୁଣ ସ୍ୱାମୀ ତୁମ୍ଭେ କରିବ ଯେ ମାୟା ।
ଯେ ପୁଣ ବେନିବରକୁ ଅଛ ଦେବାକରି
ତାହା ମୋତେ ପ୍ରସନ୍ନ ହୁଅ ଦଣ୍ଡଧାରୀ ।
ଶୁଣିଣ ନୃପବର ପୁଣିହିଁ ସତ୍ୟ କଲେ
ମାଗ ମାଗ ବର ନିଶ୍ଚେ ଦେବଇଁ ବୋଇଲ
ପୁଣ ପୁଣ ମହାରାଜା କରଇ ସତ୍ୟ ସତ୍ୟ
ଦୁର୍ବଳରେ ମୋହିତ ତାହାର ପଞ୍ଚଭୂତ ।
କେ ଆନ କରିବଟି ଦଇବ କଲା ମାୟା
ନୃପତି ମୁଖ ଚାହିଁ ବୋଲଇ କୈକୟା ।
ଦେବଟିକି ମହାରାଜା ମାଗିବିଟି କିସ
ନପୁଣ କ୍ରୋଧ ମୋତେ କର ଅଜ ଶିଷ୍ୟ ।
ଦଶରଥ ବୋଇଲେ କଟାକ୍ଷ କେତେ କରୁ
ସନ୍ଦେହ କଥା ଗୋ କିମ୍ପାଇଁ ମନେଧରୁ ।
ପୁରୁଷଙ୍କ ବଚନ ପାଷାଣ ରେଖାଜାଣି
ମାଗ ମାଗ ବର ତୋତେ ଦେବି ଗୋ ମିତଣି
ମାଗ ମାଗ ନିଶ୍ଚୟ ଦେବଇଁ ମୁଁ ବର
ଆନ କରି ନପାରିବେ ବ୍ରହ୍ମା ସୁର ହର ।
ଏମନ୍ତେ ମହାରାଜା ସତ୍ୟ ପୁଣ କଲା
ଦୃଢ଼ରାଜି ତାହାର କୈକୟା ଜଣାଇଲା ।
ମାଗୁଅଛି ରାଜା ମୋହର ଦୋଷ ନାହିଁ
ସତଭଗ୍ନ ପୁଣ ନହୁଅ ନରସାଇଁ ।
ଏହା ଶୁଣି ନୃପବର କଲେ ସନମତ
କୈକୟା କହନ୍ତି ଶୁଣ ନରନାଥ ।

ଅଯୋଧ୍ୟା ରାଜ୍ୟରେ ରାଜା ଭରତ ହୋଇବ
ଚୌଦବର୍ଷ ରାମ ଅରଣ୍ୟକୁ ଯିବ ।
ଦେଶ ନ ମାଡ଼ିବ ସେହୁ ଅରଣ୍ୟେ ରହିବ
କନ୍ଦମୂଳ ଖାଇ ସେ ଦୁଃଖରେ ଦିନ ନେବ ।
ଏ ବେନି ବରକୁ ତୁମ୍ଭେ ଦେବ ରାଜା ମୋତେ
ପୂର୍ବରେ ମୁଁ ଉପକାର କରିଅଛି ତୋତେ ।
ଶୁଣିଣ ନୃପତି ଦେହରୁ ଗଲା ଜ୍ଞାନ
ଢଳି ପଡ଼ିଲେ ତଳେ ଅଯୋଧ୍ୟା ରାଜନ ।
ସଙ୍ଗରେ ଥିଲେ ଅନେକ ସ୍ତିରୀ ମିଳି
ଧାତିକାରେ ରାଜାଙ୍କୁ ଧଇଲେ ସେ ତୋଳି
ମୁଖରେ ପାଣି ସିଞ୍ଚି ବିଞ୍ଚନ୍ତି ବିଞ୍ଚଣି
ଦୁଇ ଘଡ଼ିରେ ଚେତନା ପାଇଲେ ନୃପମଣି
କୈକୟୀଙ୍କୁ ଚାହିଁଣ ବୋଲନ୍ତି ନୃପବର
ମନରେ କିମ୍ପା ନାରୀ କରୁଛ ଅନ୍ତର ।
ଶ୍ରୀରାମ କି ତୋହର ନୁହନ୍ତି ତନୟେ
ତୋଠାରେ ରଘୁନାଥ ବହୁତ ବିନୟେ ।
ଜ୍ୟେଷ୍ଠପୁତ୍ର ଶିରେ ଆମ୍ଭେ ରାଜ୍ୟଭାର ଦେବ
ନିଶ୍ଚିନ୍ତ ହୋଇଣ ଆମ୍ଭେ ଯେ ରହିବା ।
କି ଲାଗି ସଙ୍ଗିନୀ କହୁଛ ଏ ବାଣୀ
ଶ୍ରୀରାମକୁ ଉପ୍ରୋଧ ଛାଡୁଛ ରମଣୀ ।
ବନସ୍ତରେ ରାଘବ କରିବ ପୁଣ କିସ
ପର୍ବତ କନ୍ଦରେ ବୁଲି ପାଇବ ଦେହେ ପ୍ରାସ ।
ଶ୍ରୀରାମଚନ୍ଦ୍ର ତୋର କେବଣ ଦୋଷ କଲା
ଆନର ମୁଖେ ଅପଖ୍ୟାତି ଯେ ଦିଶିଲା ।
ଜଗତରେ ଶ୍ରୀରାମକୁ ପ୍ରଶଂସା କରନ୍ତି
ପ୍ରାଣରୁ ଅଧିକ କରି ସମସ୍ତେ ଦେଖନ୍ତି ।
ଖଳ ବିଧାତା ଆସି ପଶିଲା ତୋର ମନ
କେମନ୍ତେ ଶ୍ରୀରାମକୁ ପେଷିବି ମୁଁ ବନ ।
ଭ୍ରତ ଶ୍ରୀରାମର ବେଗଳ ନୁହନ୍ତି
ଏହି ଚାରି ଭାଇଯାକ ଏକତ୍ୱ ଅଟନ୍ତି ।
ଏକ ଆତ୍ମାରୁ ପୁଣ ହେଲେ ଉତପତ୍ତି
ଋଷ୍ୟଶୃଙ୍ଗ ଚରୁରୁ ହେଲେ ସେ ଉତ୍ପତ୍ତି ।
କିମ୍ପାଇଁ ବିପ୍ଳବ କଲୁ ମହାଦେଇ
ଶ୍ରୀରାମ ବନ ଗଲେ ପ୍ରାଣ ନ ରହଇ ।
ମୁହିଁ ଯେବେ ମରିବି ତୁମ୍ଭେ ହେବ ଦୁଃଖୀ
ବେଶ ଭୂଷଣ ତୋତେ ଭାରୀ ହେଲା ସୀଖୀ ।

ସୁଗନ୍ଧ କୁସୁମ ତୁ ନ ଘେନିବୁ କେଶ
ପରିହରଣ ନୋହିବୁ ଅମଳାଣ ବାସ ।
ଚନ୍ଦନ କସ୍ତୁରୀ ଅଙ୍ଗେ ନ୍ହୋହିବୁ ତୁ ବୋଳି
ତାମ୍ବୁଳରେ କସ୍ତୁରୀନ ଭୁଞ୍ଜିବୁ ଲୋ ବାଳୀ ।
ରତ୍ନ ଅଳଙ୍କାରମାନ ନ ଘେନିବୁ ସବୁ
ବିଧବା ଅବସ୍ଥାରେ ଦିନକାଳ ନେବୁ ।
ଅଞ୍ଜନ ନ ଘେନିବୁ ତୁହି ନୟନରେ
ଅଳତା ନ ଘେନିବୁ ପାଦ ଯୁଗଳରେ ।
ଝୁଣ୍ଟିଆ ପାହୁଡ଼ା ବଳା ନ ଲଗାଇବୁ ସହୀ
ଚୂଡ଼ି ବିହୁନେ ତୁଚ୍ଛା ହେବ ହସ୍ତ ଦୁଇ ।
କର୍ଣ୍ଣରୁ ଖସିବ ତୋର ତଡ଼ିକି ମେଖଳା
କଣ୍ଠରେ ନ ଲଗାଇବୁ ମୁକୁତାର ମାଳା ।
ବାହୁରେ ବାହୁଟି ନ ଥିବ ବିଦ ମୁଦି
କୁଚମାନ ପ୍ରଭାବଳୀ ନୋହିବ ସଖିଟି ।
ଅଳକା ନ ଘେନିବୁ ଗଭାକୁ ଭାଗିବ
ତୋ ଚନ୍ଦ୍ର ବଦନ ମଳିନ ଦିଶିବ ।
ସୁନ୍ଦର ଚିକୁର କେଶ ହେବ ତୋ ମୁକୁଳା
ମର୍ଦ୍ଦନ ନୋହିବ ତୋର ଅଙ୍ଗ ପରା ।
ଏତେ ଦୁଃଖ କେମନ୍ତେ ସହିବୁ ଗୋ ବାଳି
ଦୂଷଣ କଥା କିମ୍ପା କହିଲୁ ନ ଭାଳି ।
ଶ୍ରୀରାମର ଗୁଣ ବିଶ୍ୱାମିତ୍ର କହିଥିଲେ
ଏ ରାମ ନାରାୟଣ ବୋଲିଣ ବୋଇଲେ ।
ତୁମ୍ଭେ ତ କୈକୟୀ ରାଜାର ଦୁଲଣୀ
ଆବର ଅଯୋଧ୍ୟା ରାଜାର ପାଟରାଣୀ ।
ମୁନିମାନେ ଯାହାକୁ ପ୍ରଶଂସା କରନ୍ତି
ଶଚୀ ଲକ୍ଷ୍ମୀ ପାର୍ବତୀ ସଙ୍ଗରେ ଗଣନ୍ତି ।
ତୁମ୍ଭେ ତ ଧାର୍ମିକ ସାଧବୀ ସାଧୁନାରୀ
ଶ୍ରୀରାମଙ୍କୁ ଏମନ୍ତ କହିଲ ନବିଚାରି ।
ସବୁରାଜ୍ୟେ ସଖୀ ଗୋ ଶୁଭିବ ମନ୍ଦବାଣୀ
ଧିକ ଦଶରଥ ଧିକ କଇକେୟୀ ରାଣୀ ।
ଶ୍ରୀରାମର ସ୍ନେହ ଭାବ ଘେନିଣ ସମସ୍ତେ
ତୋତେ ମୋତେମନ୍ଦଗୋବୋଲିବେ ଜଗତେ
କୈକୟୀ ବୋଇଲେ ତୁମ୍ଭେ ଅଜ୍ଞାନ ନୃପବର
ସୁଜନ ସଙ୍ଗେ ବସିଲା ନାହିଁକି ତୁମ୍ଭର ।
ବ୍ରହ୍ମାଙ୍କ ମୁଖରୁ ଧର୍ମ ଶାସ୍ତ୍ର କି ନାହିଁ ଶୁଣି
ପୁରାଣର କଥା କିମ୍ପା ମନରେ ନ ବଖାଣି ।

ସତ୍ୟକୁ ଲଙ୍ଘିଲେ ଯେତେ ଦୋଷ ଲାଗଇ
କହିଁର କଥା ଦେବ ଶୁଣ ମନଦେଇ ।
ସତ୍ୟକୁ ଲଙ୍ଘି ବେଣୁରାଜା ନାଶଗଲେ
ସତ୍ୟକୁ ନ ଲଙ୍ଘି ରଘୁରାଜା ସ୍ୱର୍ଗଗଲେ ।
ସତ୍ୟକୁ ଲଙ୍ଘିବାର ସମୁଦ୍ର ଖାରିପାଣି ।
ସତ୍ୟକୁ ନଲଙ୍ଘି ମନ୍ଦିର ଧରିଛି ଧରଣୀ ।
ସତ୍ୟକୁ ଲଙ୍ଘି ଚନ୍ଦ୍ରମା ହେଲେ ମନ୍ଦକୃତି
ମାସକରେ ଥରେ ହୁଏ ଉଜ୍ଜ୍ୱଳମତି ।
ସତ୍ୟକୁ ଲଙ୍ଘିଣ ନାଶହୋନ୍ତି ଦୈତ୍ୟ
ସତ୍ୟକୁ ଲଙ୍ଘିଲେ କୁଳକ୍ଷୟେ ସତ୍ୟ ।
ସତ୍ୟକୁ ଛାଡ଼ିଲେ ସ୍ତ୍ରୀ ବିଟପୀରେ ଗଣନାନା
ଗୃହସ୍ଥକୁ ଛାଡ଼ି ସେ ପରରେ ହୋନ୍ତି ବଣା ।
ନିସତ କଥାମାନ ଲଙ୍ଘିତ ହୋଇଲା
ଅଗ୍ନିରେ ଚାଲିଲେ କି ଫୋଟକା ନୁହେ ଭଲା
ମୋତେ ଯେଉଁ ବିଧାତା ଜନ୍ମ ଦେଇଥିଲା
ଖଳ ପୁରୁଷକୁ ମୋର ଦେହରେ ରଖିଲା ।
ଯୁଗଯୁଗାନ୍ତରେ କଥା ରହିବ ଯେ ମୋର
ଜାଣିବେ କୈକୟୀ ମାତା ଦୁଷ୍ଟଗଣ ତାର ।
ତୁମ୍ଭେ ତ ବୋଲୁଅଛ ଶ୍ରୀରାମ ନାରାୟଣ
ମର୍ତ୍ତ୍ୟପୁରେ କିମ୍ପା ଜାତ ହେଲେ ପୁଣ ।
ଯେବେ ନାରାୟଣ ଅନନ୍ତ ଘେନି ଜାତ
ଦୁଷ୍ଟକୁ ମାରି ସନ୍ଥ ପାଳିବେ ନିୟତ ।
ତୁମ୍ଭେ ତ ଦେଖିବ କରିବେ ଯାହା ପୁଣ
ସତେ ଯେବେ ବାସୁଦେବ ହୋଇଥିବେ ଜନ୍ମ
ଅସୁର ବଳଙ୍କୁ କରିବେ ନିସୁଦନ
ପୃଥ୍ୱୀର ଭାରାଭର ହୋଇବ ମୋଚନ ।
ଚଉଦ ବରଷରେ ଧରଣୀ ସ୍ଥିର ହେବ
ଦେବେ ସୁଖୀ ହେବେ କୁଳ ଉଦ୍ଧରିବ ।
ମଲେ ତୁମ୍ଭଙ୍କୁ ହେବ ସ୍ୱର୍ଗପୁରେ ବାସ
ଯମଦଣ୍ଡ ତୁମ୍ଭଙ୍କୁ ନୋହିବ ସୂର୍ଯ୍ୟଅଂଶ ।
ଲକ୍ଷ୍ମଣ ଅନନ୍ତ ଯେବେ ନ ଛାଡ଼ିବ
ସୀତା ଯେବେ ପରମଲକ୍ଷ୍ମୀ ସଙ୍ଗରେ ଯିବ ।
ଏକଥାରେ ତୁମ୍ଭେ କିମ୍ପା ହେଉଛ ବିକଳ
ସତ୍ୟ କରି ମୋତେ କହିଲ ତ୍ରିବାର ।
ସତ୍ୟକୁ ପାଳିଣ ମହୀରେ ଲୋକଛନ୍ତି
ସାବଧାନରେ ତୁମ୍ଭେ ଶୁଣ ହେ ନୃପତି ।

ସତ୍ୟଯୁଗରେ ଶିବ ନାମରେ ରାଜା ଥିଲା
ସତ୍ୟକୁ ଆଶ୍ରେକରି ସ୍ୱର୍ଗକୁ ଚଳିଲା ।
ସ୍ୱର୍ଗେ ଥାଇ ବିଚାର କରିଲେ ଦେବଗଣ
ଜାଣିବା ଶିବ ରାଜାର ସତ୍ୟ କେତେ ଟାଣ ।
ଏମନ୍ତ ବିଚାର କରି ଇନ୍ଦ୍ର ହୁତାଶନ
ମାୟାରେ ରୂପ ଧରି ହେଲେ ସେ ଉତ୍ପନ୍ନ ।
ଅଗ୍ନିଦେବତା କପୋତ ହୋଇଣ ପଳାଇଲେ
ଇନ୍ଦ୍ରରାଜା ସେଣାପକ୍ଷୀ ହୋଇ ଗୋଡ଼ାଇଲେ
ଶିବନାମେ ନୃପତି ଅଛନ୍ତି ଯେ ବସି
ଆରତରେ କପୋତ ଶରଣ ଯାଇ ପଶି ।
ଭୋ ଶିବରାଜା ତୁମ୍ଭେ ଅଟ ସତ୍ୟବାଦୀ
ସେଣା ନାମେ ପକ୍ଷୀ ଆସେ ମୋତେ ଖେଦି ।
ଏହିକ୍ଷଣି ମାରିଣ ଭୁଞ୍ଜିବ ମୋର ମାଂସ
ମୋତେ ତୁମ୍ଭେ ଶରଣ ରଖ ହେ ଶିବ ଦାସ
ଏହି ସମୟରେ ସୋଣାପକ୍ଷୀ ବେଗି
ପବନ ପରାୟେ ଦୂରରୁ ଆସେ ଗର୍ଜି ।
ଯୁଦ୍ଧରେ ଆର୍ତ୍ତ ହୋଇ ପଡ଼ଇଲାକ ଧାଇଁ
କପୋତ ଶିବ ରାଜାରେ ଶରଣ ଅଛଇଁ ।
ଭୋ ରାଜା ମୋତେ ରଖ ମାରିବ ଏହିକ୍ଷଣି
ଶିବ ନରପତି ବୋଲନ୍ତି ଏହା ଶୁଣି ।
କିମ୍ପାଇ ସେଣା ତୁ କପୋତକୁ କରିବୁ ନାଶ
ଜୀବ ବଧକଲେ ତ ଅଛି ବହୁତ ଦୋଷ ।
ଗତଜନ୍ମ ଶାପରେ ପକ୍ଷୀ ଜନ୍ମ ତୁରେ
ଏ ଜନ୍ମରେ ପାପ କଲେ ବହୁତ ଦଣ୍ଡରେ ।
ପୁଣ ତ ଅର୍ଜ୍ଜୁନ ଦୁଃସହ ଘୋର ହତ୍ୟା
ଏଘାନ୍ତି ନରକ ତୋତେ ଦେବେ ସୂର୍ଯ୍ୟପୁତା
ସେଣା ପକ୍ଷୀ ବୋଲେ ଶୁଣ ହେ ନୃପତି
ଜୀବବଧ କରିବା ମୋହର ଉଚିତି ।
ମାଂସ ଭକ୍ଷିଣ ମୁଁ ପୋଷଇ ଉଦର ।
ବିହି ଜାତକଲାବେଳେ ଲେଖିଛି କପାଳର ।
ତେଣୁ ଜୀବକୁ ମାରି ଭୁଞ୍ଜୁଅଛି ମୁହିଁ
ତିନିଦିନ ହୋଇଲା ଆହାର ମୋର ନାହିଁ ।
ଆଜତ ଦଇବ ମୋତେ କପୋତ ଭେଟାଇଲା
ଇଷ୍ଟ ଦେବତା ମୋତେ ଶୁଭ ଯୋଗଦେଲା ।
ତୁମ୍ଭେ କିମ୍ପାଇ ଆହାର ରଖୁଅଛ ମୋର
ଦିଅ କପୋତକୁ ଭକ୍ଷି ତୋଷିବି ଉଦର ।

କ୍ଷୁଧାତୁରେ ଅନଳ ଦହୁଛି ମୋତେ ଜାଣ
ତୋତେ ହତ୍ୟା ଲାଗିବ ଗଲେ ମୋର ପ୍ରାଣ ।
ରାଜାବୋଲେ ତୋତେଯେବେ କ୍ଷୁଧାହେଉଅଛି
ଆନ ମାଂସ ତୋତେ ଭୁଞ୍ଜାଇବା କିଛି ।
ଏହି ଜୀବର ତୁ ହୋ ନ ଘେନ ପରାଣ
ସେଣା ପକ୍ଷୀ ବୋଲେ ଶୁଣ ନୃପରାଣ ।
ଏ ଜୀବ ପାଇଁ ସେ ଆରେକ ଜୀବ ମାରି
ଏଥିରେ କି ଧର୍ମଅଛି କହ ଦଣ୍ଡଧାରୀ ।
ଶରଣ ରଖିଲ ତୁମ୍ଭେ ସତ୍ୟବ୍ରତ ପଣେ
ଏଥକୁ ପାଳଟ ଯେବେ ହୋଇବ ଆପଣେ ।
କପୋତର ତୁଳରେ ଦେହରୁ ମାଂସ ଦେବ
ତେବେ ତୁମ୍ଭେ ରାଜନ ଧର୍ମକୁ ପାଳିବ ।
ଶରୀରରୁ ମାଂସ କାଟି ଦେବ ମୋତେ ଠିକ
ମୁଁ ସତ୍ୟ କରୁଛି ନ ଭକ୍ଷିବ ଅଧିକ ।
ଶୁଣିଣ ନୃପବର ଆନନ୍ଦ ମନ ହେଲେ
ଦେବି ମୁଁ ଶରୀରୁ ମାଂସ ସନମତ କଲେ ।
ଥଟାରିକୁ ଡକାଇଲେଏ ଶିବ ନରସାଇଁ
ବୋଇଲେ ମୋ ଶରୀରୁ ମାଂସ କାଟ ତୁହି ।
ଖଡଗ ଧରି ରାଜାର ଅଙ୍ଗରୁ ମାଂସ କାଟି
ତରାଜୁରେ ତୂଳିରେ କପୋତତୁଲରେ ନଅଣ୍ଟି
ପୁନରପି ମାଂସ କାଟି ତହିଁରେ ଭରିଲେ
କପୋତ ତୁଲରେ ତୂଳରେ ନୋହିଲେ ।
ରାଜାବୋଇଲେ ମୋତେବିଧାତା କଲେମାୟା
କେବଣ ମହାତମା ହରିବ ମୋର କାୟା ।
ସତ୍ୟକଲି ମୁହିଁ ଦେବି ବୋଲି ଦାନ
ଯାଉ ପଛେ ଜୀବନ ନୋହିବି ସତ୍ୟ ଭଗ୍ନ ।
ଏତେ ବୋଲି ଆପଣା ଶରୀରୁ ମାଂସ କାଟି
କପୋତ ସଙ୍ଗରେ କେଭେ ତୂଳରେ ନଅଣ୍ଟି
ସେଣାପକ୍ଷୀ ବୋଇଲା ବଡ଼ କୃପଣ ରାଜା ତୁହି
ଛାର କପୋତର ସଙ୍ଗେ ତୋ ମାଂସ ନଅଣ୍ଟଇ
ସେଣାପକ୍ଷୀଠାରୁ ଏହା ଶୁଣିଣ ରାଜନ
ଖଡ଼ଗ ନେଇ ତୋଡ଼ିରେ ବସାଇଲେ ଜାଣ ।
ଦେଖିଣ ଇନ୍ଦ୍ର ଅଗ୍ନି ନିଜ ରୂପ ଧରି
ଛାଡ଼ ୨ ଖଡ଼ଗ ରାଜା ତୋତେକେହି ନୁହେସରି
ସତ୍ୟଶୀଳ ଧାର୍ମିକ ତୁ ଅଟୁ ନୃପବର
ଆଉ କେହି ତୋତେ ନୋହିବେ ପଟାନ୍ତର ।

ଏ ତୁମ୍ଭର କୀରତି ରହିବ ଯୁଗେ ଯୁଗେ
ଶରଣ ରଖି ଦେହରୁ ମାଂସ ଦେଲୁ ବେଗେ ।
ଆସ ଆସ ସ୍ୱର୍ଗକୁ ଯିବ ହେ ନୃପବର
ଏତେ ବୋଲି ଇନ୍ଦ୍ର ଧଇଲେଶିବରାଜାଙ୍କ କର
ଯେତେବେଳେ ସୁରପତି ଧଇଲେ ଶିବଅଙ୍ଗ
ଶିବରାଜା ଦିଶିଲେ ଦ୍ୱିତୀୟ ଅନଙ୍ଗ ।
ଶିବରାଜା ବୋଇଲେ ଶୁଣ ମୋର ବୋଲ
କିମ୍ପାଇଁ ପଣ ଯେ ହୋଇଲା ମୋହର ।
ପୂର୍ବରେ କେଉଁ ତପ କରିଥିଲି ମୁହିଁ
ଦେବରାଜା ମୋତେ ତୁମ୍ଭେ ଦେବ ହେ ବୁଝାଇ
ଇନ୍ଦ୍ରଦେବତା ବୋଇଲେ ଶିବରାଣ
ତୋତେ ଜାତ କଲେ ଧର୍ମପରାୟଣ ।
ଧର୍ମଦେବତାଙ୍କର ଅଟୁ ସ୍ୱଦେହ ଜାଣ
ତେଣୁ ତୁ ସତ୍ୟଶୀଳ ହେଲୁ ହୋ ରାଜନ ।
ତ୍ରେତୟାରେ ହରିଚନ୍ଦନ ରୂପେ ଜାତ
ସତ୍ୟପାଳି ବିକିବୁ ଭାରିଜା ପୁତ୍ରକୁ ତ ।
ସ୍ୱଦେହ ଧରିଣ ସ୍ୱର୍ଗ ପୁରକୁ ଯିବୁ
ଦ୍ୱାପର ଯୁଗରେ ଯୁଧିଷ୍ଠିର ହେବୁ ।
ଭାରତ ଯୁଦ୍ଧରେ ସୋଦର ବଂଶ ମାରି
ଧର୍ମରେ ଯୁଧିଷ୍ଠି ନାମ ହୋଇବ ତୋହରି ।
ବାସୁଦେବ ତୋତେ କରିବେ ନମସ୍କାର
ଏଣୁ ତୁ ସତ୍ୟଭାଷୀ ଧର୍ମର କୁମର ।
ଶୁଣିଲଟିକି ରାଜନ ଧର୍ମର କଥାମାନ
ମନ ସନ୍ତୋଷ ହେଲା କି ଧର୍ମର ନନ୍ଦନ ।
ଏମନ୍ତ ସମୟରେ ମାତଳି ରଥ ଘେନି
ଯାନ ଆରୋହିଣ ଗଲେ ଜଣ ତିନି ।
ଇନ୍ଦ୍ରଦେବତା ଅଗ୍ନି ସଙ୍ଗେ ଶିବ ମହୀପତି
ଦେବ ବିମାନ ସେ ଆରୋହିଲେ ଧାତି ।
ସ୍ୱର୍ଗରେ ପ୍ରବେଶ ହେଲେ ଦେଖିଲେ ଅପସରୀ
ସାଧୁ ସାଧୁ ଶିବରାଜା ବୋଲି ଧ୍ୱନିକରି ।
ଧର୍ମଦେବତା ପାଶରେ ପ୍ରବେଶ ହେଲେ ରାଏ
ଧର୍ମଙ୍କ ପାଶରେ ରହିଣ ପୂଜା ପାଏ ।
ଆପଣେ ତରିଗଲେ ଉଦ୍ଧରିଲେ ବଂଶ
ଇହପର ଲୋକଙ୍କର ହୋଇଲେ ପ୍ରଶଂସ୍ୟ ।
ଦ୍ୱିତୀୟ ଜନ୍ମେ ଶବିରାଜା ହୋଇ ଜନ୍ମିଥିଲେ
ସତ୍ୟକୁ ପାଳି ସେ ସ୍ୱର୍ଗରେ ରହିଲେ ।

ଆଜିଯାଏଁ ବିଖ୍ୟାତ ରହିଛି ତାଙ୍କ କିର୍ତ୍ତି
ତେବେ ସେ ରାଜାକୁ ସହେ ବସୁମତି ।
ସତ୍ୟ ପ୍ରତିପାଳନ ପୁଣ୍ୟ ଲୋକମାନେ
ଅସତ୍ୟେ ଲୋକ ବଚନ ଭ୍ରଷ୍ଟ ହୀନେ ।
ସତ୍ୟରେ ତରୁମାନେ ଫଳୁଛନ୍ତି ଫଳ
ସତ୍ୟରେ ଧେନୁମାନେ ଦେଉଛନ୍ତି କ୍ଷୀର ।
ସତ୍ୟରେ ମେଘମାନେ ବରଷନ୍ତି ଜଳ
ସତ୍ୟରେ ବାରମାସ କରନ୍ତି ଯେଝାକାଳ ।
ସତ୍ୟରେ ବାରାନିଧି ନଲଙ୍ଘନ୍ତି କୂଳ
ସତ୍ୟବନ୍ତ ଲୋକମାନେ ଏମନ୍ତ ପ୍ରକାର ।
ସତ୍ୟରେ ବଳିରାଜା ରହିଲେ ପାତାଳେ
କଥାରୁ ହୋଇଲେ ବୈଲୋଚନ ବାଳେ ।
ସତ୍ୟେ ପ୍ରହଲ୍ଲାଦକୁ ପ୍ରସନ୍ନ ଦେବହରି
ସ୍ୱର୍ଗରେ ଇନ୍ଦ୍ରପଦେ ବସିଲେ ଯାଇକରି ।
ସ୍ୱର୍ଗ ସହିତରେ ନେଲେ ତିନିପୁର
ଦାନରେ ସଚା ଯେ ବୀରଧୁ ବାନା ତାର ।
ପଶ୍ଚିମେ କଟକାଇ କଲେ ନୃପମଣି
ବନଗିରି ଦେଶ ବହୁତ ସେ ଜିଣି ।
ଶତ୍ରୁମାନେ ଶୁଣିଣ ଭୟରେ ପଳାଇଲେ
ଶରଣ ପଶି ଝିଅମାନଙ୍କୁ ବିଭାଦେଲେ ।
ଶରଣ ନ ପଶିବା ରାଜା ବନ୍ଦିରେ ପଡ଼ିଲେ
ଯେ ଶରଣ ପଶିଲେ ସେ ମିତ୍ର ହୋଇଲେ ।
ପଶ୍ଚିମଦେଶ ପୁର ଜିଣି ନୃପବର
ପ୍ରବେଶ ହେଲେ ସେ ଉତ୍ତର ଦିଗର ।
ସକଳ ରାଜାଙ୍କୁ କରିବେ ସାଧ ସେହି
ପୂର୍ବଦିଗେ ବିଜେକଲା ଅସୁର ସଙ୍ଗେ ନେଇ ।
ପୂର୍ବଦିଗ ରାଜାକୁ ଆଣିଲା ବନ୍ଦିକରି
ଦୁଷ୍ଟଜନଙ୍କୁ ମାରି ସନ୍ଥଙ୍କୁ ରକ୍ଷାକରି ।
ପ୍ରବେଶ ହେଲା ଯାଇ ଦକ୍ଷିଣ ଦିଗରେ
ରାଜାମାନଙ୍କୁ ସେ ଜିଣିଲା ବାହୁବଳେ ।
ପାତାଳେ ପଶି ଦୈତ୍ୟ ଜିଣିଲାକ ରାଜା
ନାଗବଳ ଜିଣିକରି ତହିଁରେ ହେଲା ରାଜା ।
ସହସ୍ରେ ବର୍ଷଯାଏଁ ସେଠାରେ ରହିଲା
ତେବେ ସେ ବଳିରାଜା ସେଠାରୁ ଅଇଲା ।
ସ୍ୱର୍ଗପୁରେ ସେହୁ ପରବେଶ ହେଲେ
ଦେଖିଣ ବୀରତ୍ୱ ସମସ୍ତେ ଭୟକଲେ

ସ୍ୱର୍ଗପୁର ଛାଡ଼ିଣ ଗଲେ ଦେବଗଣ
ବନଗିରି କନ୍ଦରେ ଲୁଚିଲେ ଯାଇଣ ।
ଇନ୍ଦ୍ର ଚନ୍ଦ୍ର ବରୁଣ କୁବେର ଦିଗପାଳେ
ରହି ନପାରିଲେ ତାହାର ଆଗରେ ।
ଶୂନ୍ୟ ଦେଖି ତହିଁରେ ଦୈତ୍ୟ ରାଜା ହେଲା
ଛାୟାଣୋଇଁ ସହସ୍ର ବରଷ ବହିଗଲା ।
ଶୁଣଗୋ ପାର୍ବତୀ ଅସୁରର କଥା
ଦଶରଥଙ୍କୁ କହେ କୟେକୟ ସୁତା ।
ବିଧାତା କହିଲା ବଳିକି ଯାଇଣ
ଦେବତାଙ୍କୁ ଛାଡ଼ିଯାଅ ତୁ ଅସୁର ରାଣ ।
ସ୍ୱର୍ଗରେ କରନ୍ତୁ ସୁରଗଣ ମିଳି
ଦେବରାଜା ହେଉ କଦମ୍ବା ନାମେ ସରି ।
ବିଧାତା କହିବାରୁ ସ୍ୱର୍ଗରୁ ଅଇଲା
ମଞ୍ଚପୁର ଦକ୍ଷିଣ ଦିଗରେ ମିଳିଲା ।
ପାତାଳ ସ୍ୱର୍ଗ ଛାଡ଼ିଲା ଈଶ୍ୱର ବ୍ରହ୍ମା ବୋଲେ
ପ୍ରବେଶ ହେଲା ବୀର ଦକ୍ଷିଣ ସିଂଧୁତୀରେ ।
ରଥ ଗଜ ଅଶ୍ୱ ପଦାତି ଗହଳେ
ସ୍ନାହାନ କଲେ ସେ ପଶିଣ ସିଂଧୁ ଜଳେ ।
ରାଜନ ଅଭିଷେକ ହୋଇଲା ସିଂଧୁ ପାଣି
ଦେବ ପିତୃ ତର୍ପଣ କଲାକ ନୃପମଣି ।
ଦାନବିଧି କରିଣ ବହୁତ ଧନ ଦେଲା
ପ୍ରବେଶ ହୋଇ ରତ୍ନ ପୀଢ଼ାରେ ବସିଲା ।
ଏସନକ ସମୟରେ ଟଳିଲା ଆସ୍ଥାନ
ନୃପତି ବିଚାର କରଇ ମନେମନ ।
ସଂଶୟ କରି ପୁଣ ଶୁକ୍ରଙ୍କୁ ପଚାରିଲା
କହ ମନ୍ତ୍ରୀ କିଲାଗି ଆସନ କମ୍ପିଲା ।
ଗୁରୁ ବୋଇଲେ ଅରିଷ୍ଟ ଯୋଗ ଅଛି
କପଟରେ ତୋ ବିଭୂତି ହରିବେ ଶ୍ରୀବତ୍ସି ।
ବାମନ ରୂପଧରି ପଢ଼ିଲେ ଆସି ବେଦ
ସତ୍ୟକରାଇ ମାଗିବେ ଭୂମି ତିନିପାଦ ।
ତୁ ରାଜନ ନଜାଣି ଭକ୍ତି ତାଙ୍କୁ ହୋଇ
ଶଙ୍ଖରେ ପାଣି ତୋଳି ଦେବୁ ନରସାଇଁ ।
ମାୟାରେ ଶ୍ରୀହରି ଚରଣ ବଢ଼ାଇବେ
ଦୁଇପାଦରେ ସ୍ୱର୍ଗ ମର୍ତ୍ତ୍ୟକୁ ଘୋଟିବେ ।
ଆରେକ ପୟର ନାଭିରୁ ଜାତକର
ତୋତେ ପାତାଳକୁ ଚାପିବେ ଶ୍ରୀହରି ।

ଯୋଗବଳେ ସେ କଥା ହେଲା ମୋତେ ଦୃଶ୍ୟ
ବ୍ରାହ୍ମଣ ଘରେ ଜାତ ହୋଇଲେ ପୀତବାସ ।
ଦେବଙ୍କର ଛଳେ ସେ ମାଗିବ ଭୂମି ଦାନ
ତତ୍ତ୍ୱ ନକଲେ ତୁ ତରିବୁ ରାଜନ ।
ଶୁକ୍ରଙ୍କର ତହୁଁ ଏସନ ବାଣୀ ଶୁଣି
ତାଙ୍କୁ କୋପକଲା ବଳି ନୃପମଣି ।
ନୟନ ତରାଟିଣ ଚାହିଁଲା କୋପକରି
ଖଣ୍ଡେ ମାରନ୍ତି ଆଜ ନୋହିଥିଲେ ବ୍ରହ୍ମଚାରୀ ।
ବାସୁଦେବ ଆସିବେ ମାଗିବେ ଯେ ଦାନ
ଏଥିର ଉପରେ କି ଅର୍ଜିବ ପୁଣ୍ୟ ଆନ ।
ଭଗବାନର ପ୍ରୀତିରେ ଥରେ ପକ୍ଷକରି
ସ୍ୱହସ୍ତରେ ଦାନ ଯେବେ ଘେନିବେ ଶ୍ରୀହରି
ତାଙ୍କୁ ମୁହିଁ ନ ଦେବି କେମନ୍ତକଥା କହ
ଜାଣିଲେ ଅହନ୍ତା ବହଇ ତୋର ଦେହ ।
ଯେଉଁ ବାସୁଦେବ ବ୍ରହ୍ମାଣ୍ଡ ଅଧିକାରୀ
ସର୍ଜିବ ସଂହାରିବ ଶୁଭଙ୍କୁ ଜାତ କରି ।
ମୋଠାରୁ ସେ ପ୍ରଭୁ ଘେନିବେ ଯେବେ ଦାନ
କଳପେ ତପ କଲେ ନ ପାଇବି ପୁଣ ।
ଈଶ୍ୱର ମାଗିଣ ପାତାଳପୁର ନେଲେ
ବେଦବର ମୋହଠାରୁ ସ୍ୱର୍ଗ ଘେନି ଗଲେ ।
ନାରାୟଣ ମର୍ତ୍ତ୍ୟ ଯେବେ ନେବେ ଦାନକରି
ଦେବି ମୁହିଁ ନିଶ୍ଚେ ଅନ୍ତର ନବିଚାରି ।
ଏ ବଚନ ଶୁଣି ସୁମନ୍ତ୍ର ଘୁଞ୍ଚିଗଲେ
ଚାରି ପାବଛ ତଳେ ଯାଇଣ ରହିଲେ ।
ଯେବଣ ଗୁରୁର ଶିଷ୍ୟ ବାଳ ଘେନି ପୁଚ୍ଛି
ପ୍ରଣାମ କରିବାରେ କପାଳ ଫଳିଛି ।
ଯାହାର ପ୍ରସନ୍ନରେ ସାଧିଲି ତିନିପୁର
ସତ୍ୟର ଛଳେ ତାଙ୍କୁ କୋପିଲେ ନୃପବର ।
କାଳେଣ ମାଧବ ଘେନିଲେ ତାର ଶିରୀ
ଜାଣୁ ଜାଣୁ ବଳି ଦେଲେ ସତ୍ୟ କରି ।
ସେ କଥା ପୁରାଣରେ ହେଲାଟି ବଖାଣ
ସତ୍ୟବାଦୀ ଦୟା କଲେ ନର ନାରାୟଣ ।
ପାତାଳ ବୈକୁଣ୍ଠରେ ଥୋଇଲେକ ନେଇ
ଶିରରେ ପଦ୍ମପାଦ ଚକ୍ର ଚିହ୍ନ ଦେଇ ।
ପୁଣି ତାଙ୍କୁ ସ୍ୱର୍ଗରେ କରିବେ ନୃପତି
ଅମରବର ଦେଇ ଅମରେ ଜଗିଛନ୍ତି ।

ଯେ ପ୍ରଭାତୁ ସୁମରେ ବଳି ଶିବଦାତା
ସତ୍ୟପ୍ରାଣେ କି ସାହା ପବନ ଦେବତା ।
ସତ୍ୟରେ ପୃଥ୍ୱୀଦେବୀ ନଯାଏ ରସାତଳ
ସତ୍ୟରେ ବାସୁଦେବ ହୁଅନ୍ତି ଅବତାର ।
ସତ୍ୟରେ ଗରଳ ଭକ୍ଷିଲେ ଦେବହର
ସତ୍ୟରେ ମହାଲକ୍ଷ୍ମୀ ଚରଚେ ସବୁ ଘର ।
ସତ୍ୟରେ ଷଡ଼ରତୁ ଆଚ୍ଛାଦେ ପୁଣ ସୃଷ୍ଟି
ସତ୍ୟରେ ମହୁଷଧି ବ୍ୟାଧିକି ଧରି କାଟି ।
ସତ୍ୟରେ ଦିନକର ଉଦୟ ଆକାଶେ
ସତ୍ୟରେ ମେରୁ ଯେ ପୃଥ୍ୱୀର ଐଶାନ୍ୟସେ
ସଂସାରେ ସତ୍ୟ ପୁଣି ହେଉଛି ଉତ୍ପତ୍ତି
ସତ୍ୟରେ ଦୁର୍ଗା ପୁରୁଷ ହତ୍ୟାକୁ କରନ୍ତି ।
ସତ୍ୟରେ ପବନ ସବୁ ଅଙ୍ଗରେ ବହଇ
ସତ୍ୟରେ ହୁତାଶନ ସବୁ ଭସ୍ମ କରଇ ।
ସତ୍ୟରେ ହରିଶ୍ଚନ୍ଦ୍ର ବିକିଲେ ପୁତ୍ର ନାରୀ
ସତ୍ୟରେ ଗରୁଡ଼ ଫଣୀକି ନାଶ କରି ।
ସତ୍ୟରେ ଜୀମୂତ ବାହନ ଦେହ ଦେଲା
ସତ୍ୟରେ ବିଶ୍ୱାମିତ୍ର ନବସୃଷ୍ଟି କଲା ।
ସତ୍ୟରେ ବାସୁକି ମଥାରେ ପୃଥ୍ୱୀ ବହି
ସତ୍ୟରେ ରଖିଲେ କଥା ଚାରିଯୁଗ କହି ।
ତୁମ୍ଭେ ହେ ମହାରାଜା ସତ୍ୟକୁ ଲଘୁଂଛ
ବାଳୁତ ପରାଏ କଥା ନ ବୁଝୁଛ ।
ସତ୍ୟକୁ ଲଘିଲେ ରାଜା କେତେଦିନ ଥିବ
ସତ୍ୟ ପାଳିଲେ ରାଜା ସ୍ୱର୍ଗରେ ବସିବ ।
ସତ୍ୟକୁ ନଲଘ ରାଜାମୋର ବୋଲକର
ସତ୍ୟ ଲଘି କୀରତି ରଖିଛି ଆଜାମିଳ ।
ଶୁଣିଣ ଦଶରଥ ବୋଇଲେ ତୁମ୍ଭେ ବାଇ
କେତେ ପ୍ରକାରେ ତୋତେ କହିଲି ବୁଝାଇ ।
ତୋର ମନ ସନ୍ତୋଷ ନୋହିଲା ରାମଠାରେ
ମୋହର ଶାପ ଘେନ ଯେ ନାରୀରେ ।
ଯେତେ ଦିନ ରାମ ନାମ ସଂସାରରେ ଥିବ
ସେତେ ଦିନ ଯାଏ ତୁମ୍ଭେ ଅକୀର୍ତ୍ତି ପାଇବ ।
ଚାରିପୁତ୍ର ତୋଠାରେ ନପାଇବେ ସୁଖ
ଚିନ୍ତାରେ ମନ ତୋର ହେବ ବଡ଼ ଦୁଃଖ ।
ଆଜୁଁ ବାର ଦିନରେ ତୁ ହୋଇବୁ ବିଧବା
ବେଶ ଭୂଷଣ ତୋର ହୋଇବ ଅଲଗା ।

ଏତେ କହି ଦଶରଥ ମଉନେ ରହିଲେ
ଦଇବ ବିଧାତାକୁ ନିନ୍ଦା ପୁଣ କଲେ
ଏହା ଶୁଣି କୈକୟୀ କ୍ରୋଧରେ କହିଲେ
ମୋହର ବଚନ ଏବେ ଶୁଣ ତୁମ୍ଭେ ଭଲେ
ଆଜିଠାରୁ ଶାପ ଦେଉଅଛି ମୁହିଁ
ପୁତ୍ର ଅଭିଷେକ ଦିନ ଅନ୍ତଃପୁରକୁ ନ ଯାଇ
ଯେବେ ପିତା ଏବେତୋର ହୋଇବେ ଭେଟ
ଅନର୍ଥ ଉପୁଜିବ ନୋହିବ ରାଜଚାଟ ।
ଏତେ କହିଣ ରାଣୀ ବସିଲେ ଦୂର ହୋଇ
ବିସ୍ମୟ ଚିତ୍ତହୋଇ କପାଳେ କର ଦେଇ ।
ନୃପତି ସମସ୍ୟା ନଦେଲେ ତାହା ଶୁଣି
ମନରେ ସନ୍ତାପିତ ହେଲେ ମହାରାଣୀ ।
ବୋଇଲେ ଏ ନଗ୍ରରୁ ବାହାର ହୋଇଯିବ
ଯହିଁରେ ସତ୍ୟ ନାହିଁ ତହିଁରେ କିମ୍ପା ଥିବ ।
ନିଶିପାହି ସୂର୍ଯ୍ୟ ଉଦୟ ହୋଇଲେ
ପାତ୍ର ଅମନାତ୍ୟ ଆସିଣ ମିଳିଲେ ।
ଖୁଣ୍ଟିଆକୁ ପୁଚ୍ଛିଣ ଭିତର ପୁର ଗଲେ
କଇକୟା ରାଣୀ ପୁରେ ଦରଶନ କଲେ ।
ତବଦରେ ବସିଛନ୍ତି ନରପତି ପୁଣି
ଉତ୍ତର ନ ଦିଅନ୍ତି କାହାକୁ ନୃପମଣି ।
କରଯୋଡ଼ି ସୁମନ୍ତ୍ର କହେ ଆଗେ ମିଳି
ଶୁଣହେ ଦେବରାଜା କ୍ଷତ୍ରୀ ଶୁଦ୍ଧଶାଳୀ ।
ଅନୁକୂଳ ବେଳ ଯେ ହେଲା ଦଣ୍ଡଧାରୀ
ସକଳ ସାମଗ୍ରୀ ମୁଁ ଆଣିଲି ସଜକରି ।
ଶୁଣିକରି ନ ପଦ୍ୟର ନ ଦେଲେ ଉତ୍ତର
ପୁଣିହିଁ ଚାରିବେଳ ପୁଚ୍ଛିଲେ ମନ୍ତ୍ରୀବର ।
ଭୋଦେବ ଶୁଭ ଯେ ଲଗ୍ନବେଳ ଏହି
ଅଭିଷେକ ବିଧାନ ଆଣିଛି ଭିଆଇ ।
ବିଳମ୍ବ କରନ୍ତେ ଦେବ ଭାଗିବ ଅନୁକୂଳ
କିମ୍ପାଇଁ ତୁନୀ ହୋଇ ବସିଛ ମହୀପାଳ ।
ଦଶରଥ ରାଜା କଥା ନକହନ୍ତି ଶୁଣି
କୈକୟା ବୋଇଲେ ଶୁଣ ନୃପମଣି ।
ସତ୍ୟଭଗ୍ନ ନୁହ ରାଜା ରାମ ବନ ଯାଉ
ଏ ତୋହର କଟକରେ ଭ୍ରତ ରାଜା ହେଉ ।
କୈକୟା ମୁଖରୁ ପ୍ରକାଶ ହୋନ୍ତେ ବାଣୀ
ବିସ୍ମୟ ହେଲେ ଅମନାତ୍ୟଗୁଣ ଶୁଣି ।

ବଶିଷ୍ଠ ସହିତରେ ହୋଇଲେ ଅଜ୍ଞାନ
ଜାବାଳୀ କଶ୍ୟପ ବାମଦେବ ସର୍ବଜନ ।
ସୁମନ୍ତ ମନ୍ତ୍ରୀ କମ୍ପେ ଥରହର ହୋଇ
କାହାରି ଦେହରେ ଜୀବନ ଆଉ ନାହିଁ ।
ବଶିଷ୍ଟ ଜାଣିଲେ ଯୋଗବଳ ଘେନି
ଆବର ଜାଣିଲେ ବାମଦେବ ମୁନି ।
ଦେବତାଏ ଉପାୟେ କରିଛନ୍ତି ଛନ୍ଦ
ରାମ ବନ ଗଲେ ଛେଦିବେ ଦଶକନ୍ଧ ।
କରଦୁଇ ଯୋଡ଼ିଣ ଅମନାତ୍ୟ ଭଣି
ଶୁଣିବା ହେଉ ମାଏ ଦଶରଥଙ୍କ ପାଟରାଣୀ ।
ରାମଚନ୍ଦ୍ର ଅଯୋଧ୍ୟାରେ ହୁଅନ୍ତୁ ରାଜନ
କିମ୍ପାଇଁ ମାତା ତାଙ୍କୁ ପେଷୁଅଛ ବନ ।
ଏବେ ଅପଖ୍ୟାତି ପାଇବ ଗୋ ମାତା
ଏକଥା ନଶୁଣି କିମ୍ପା କରୁଛ ଅହନ୍ତା ।
ମନ୍ତ୍ରୀଙ୍କି ବୋଇଲେ ରାଣୀ ତୁମ୍ଭେ ନଜାଣ କିଛି
ପୂର୍ବରୁ ରାଜା ଯାହା ସତ୍ୟ କରିଅଛି ।
ରାମ ବନ ଯିବେ ଭ୍ରତ ହେଲେ ଦଣ୍ଡଧାରୀ
କିଏ ସେ କହିଲ ଏକଥା ସତ୍ୟ କରି ।
ଏବେ ସେ ତୁନି ହୋଇ କିଛି ନ କହନ୍ତି
ସତ୍ୟ ଲଙ୍ଘିବାକୁ ମନ କରୁଛନ୍ତି ।
କୈକୟା ବଚନ ଶୁଣି ବୋଇଲେ ଦଶରଥ
ବଜ୍ର ପଡଇ କିନା ଏ ମୋହର ମାଥା ।
ରାମକୁ କେମନ୍ତେ ମୁଁ ଛାଡିବି ଉତ୍ପ୍ରୋଧ
କେମନ୍ତେ କହିବି ରାମ ଯାଉ ବନ ମଧ୍ୟ ।
ରାମଙ୍କୁ ଡକାଇ କହିଲେକ ରାଣୀ
ଏତେ କହି ମଉନ ହୋଇଲେ ନୃପମଣି ।
ଏଥୁଅନନ୍ତରେ ଶୁଣ ଭଗବତୀ ତୁମ୍ଭେ
ଏହି ରଜନୀରେ ସ୍ୱପନ ଦେଖେ ହାଦେ ।
ରାମଚନ୍ଦ୍ର ଉତ୍ତରକୁ ମସ୍ତକ କରି ଶୋଇ ।
ରଙ୍ଗପୁଷ୍ପ ଗଳାରେ ଆଭରଣ ହୋଇ ।
ବିଧବା ସ୍ତିରୀମାନେ ଚାପନ୍ତି ଚରଣ
ଉଲୁକା ପେଚା ଶୃଗାଳ କରନ୍ତି ଘୋର ସ୍ୱନ ।
ଦେବତାଙ୍କ ମନ୍ଦିର ପ୍ରାୟେକ ଦିଶଇ
ଶଙ୍ଖର ପ୍ରାୟେ ପବନ ନାଶାରେ ବାହାରଇ
ଉଲଗ୍ନ ହୋଇ ଶୋଇଛନ୍ତି ରାମ ପୁଣି
ଜାନକୀ ସ୍ୱପ୍ନ ଦେଖିଲେ ରାତ୍ର ଶେଷ ଜାଣି ।

ରାମଙ୍କ ନିଦ୍ରା ଭାଙ୍ଗିବାରୁ ଏମାନ ସବୁ କହି
ଶୁଣିକରି ଶ୍ରୀରାମ ମନରେ ଦୁଃଖ ପାଇ ।
ବିଚାରିଲେ ଆଜି ମୋତେ ପଡିଲା ପ୍ରମାଦ
ଶୁଭ ନଦେଖଇ ମୁଁ ଦଇବ କଲା ଛନ୍ଦ ।
ରାଜ ଶୁଭଲକ୍ଷଣ ନଦିଶେ ମୋତେ ପୁଣି
ବିଧାତା କେଉଁକଥା ଭିଆଇ ଅଛି ଜାଣି ।
ଏମନ୍ତ ସମୟରେ ରାତ୍ର ଗଲା ପାହି
ସୂର୍ଯ୍ୟ ଉଦୟ ହୋଇଲେ ଘଡିଏ ବେଳହୋଇ
ଖୁଣ୍ଟିଆକୁ ରାଇଣ କହନ୍ତି କୈକୟା
ରାମଙ୍କୁ ଡାକି ଆଣିବ ନକହିବ ଏହା ।
ଶୁଣିଣ ଦ୍ୱାରପାଳ ଗଲେ ଖର କରି
ରଘୁନାଥଙ୍କୁ ଭେଟିଲା ବିରସ ମନ ଧରି ।
କରଯୋଡ଼ି କହେ ରାଜାଙ୍କ ଆଜ୍ଞା ଆସ
ଶୁଣିକରି ଶ୍ରୀରାମ ହୋଇଲେ ହରଷ ।
ତକ୍ଷଣେ ପଦ୍ମପାଦେ କଲେକ ଗମନ
ସଙ୍ଗତରେ ଅଛନ୍ତି ବହୁତ ବିଦ୍ୱଜନ ।
ଚଳିଯାନ୍ତେ ରାମଙ୍କ ପଛେ ବହୁତ ଲୋକ
ବୋଲନ୍ତି ଏହିକ୍ଷଣି ହେବେ ଅଭିଷେକ ।
ରାଜ୍ୟରୁ ପରଜାମାନେ ଆସନ୍ତି ଯେ ଶୁଣି
ବାଟରେ ଯାଉ ଯାଉ ଦେଖିଲେ ରଘୁମଣି ।
ଉଚ୍ଚେ ଡାକି ଦିଅନ୍ତି ବେଗେ ହୁଅ ରାଜା
ତେବେ ଆମ୍ଭେ ସବୁଟି ହୋଇବୁ ପରଜା ।
ନଟଭାଟେ ଜଉତିଷେ ସନ୍ନ୍ୟାସୀମାନେ ଛନ୍ତି
ନଗ୍ରରେ ନରନାରୀ ଦେଖିଣ ଆସନ୍ତି ।
ବେ ବୋଲଇ ରାଜା ହେବେ ନିଶ୍ଚୟେ ଶ୍ରୀରାମ
କେ ବୋଲଇ ତୁମ୍ଭେ ହେ କ୍ଷଣେକ ବିଶ୍ରାମ ।
ଏହିକ୍ଷଣି ଅଭିଷେକ ହେବେ ରଘୁନାଥ
ହସ୍ତୀ ଚଢ଼ି ଆସିବେ ଦେଖିବା ସମସ୍ତ ।
ଆଜ ତ ଶ୍ୱେତଛତ୍ର ଉଡିବ ରାମଶିରେ
ହେଲେ ନଗ୍ର ବୁଲିବେ ଏକ୍ଷଣି ରଘୁବୀରେ ।
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ଗଲେ
ରାଜାଙ୍କର ପାଶରେ ପ୍ରବେଶ ହୋଇଲେ ।
କୈକୟାର ପୁରେ ଅଛନ୍ତି ଦଶରଥ
କୈକୟାଙ୍କୁ ଚାହିଁଣ ହୁଅନ୍ତି କଥାନ୍ତ ।
ପିତାଙ୍କୁ ଦର୍ଶନ କଲେ ରଘୁନାଥ
ପ୍ରଣମି ଉଭାହେଲେ ଯୋଡ଼ି କରପତ୍ର ।
ଦଶରଥ ରାଜା ଯେ ସମସ୍ୟା ନଦେଇ
ମୁଖପୋତି ମଉନେ ବସିଛନ୍ତି ତହିଁ ।
ସକଳ ଅମନାତ୍ୟେ ତବଦ ହୋଇଛନ୍ତି
କୈକୟାଙ୍କୁ ନମି ଶ୍ରୀରାମ ପୁଛନ୍ତି ।
ଭୋ ମାତ ନୃପତି ମୋତେ ଡକାଇଲେ
ତୁନୀ ହୋଇ ବସିଛନ୍ତି କିଛି ନ କହିଲେ ।
ଶରୀରେ ତ ରୋଗ ବ୍ୟାଧି ପୁଣ ନାହିଁ କିଛି
ଅଜ୍ଞାନ ହୋଇଣ କିମ୍ପା ଅଛନ୍ତି ସେ ବସି ।
ଏ ବଚନ ଶୁଣିକରି କୈକୟୀ କହିଲେ
ପିତା ତୁମ୍ଭର ମୋତେ ଦୁଇ ବର ଦେଲେ ।
ଭରତ ରାଜା ହୋଇ ପାଳିବ ଏ ଦେଶ
ଚଉଦ ବରଷଂତୁ ବାବୁ ଯିବୁ ବନବାସ ।
ତୋତେ ଦେଖିବାରୁ ପିତା ନଦେଲେ ଉତ୍ତର
ଉପ୍ରୋଧେ ତୁନୀ ହୋଇ ରହିଲେ ନୃପବର ।
ଶ୍ରୀରାମ ଚାହିଁଲେ ପିତାଙ୍କର ମୁଖ
କିମ୍ପାଇ ଭୋ ପିତା ମନେକର ଦୁଃଖ ।
ଭ୍ରତର ମୋହର ଅଟେ ଏକ ଦେହ
ଏକଥା ପିତା ତୁମ୍ଭେ ନକର ସନ୍ଦେହ ।
ଯିବି ମୁଁ ବନବାସ ଖାଇବି କନ୍ଦମୂଳ
ପହରଣ କରିବି ବୃକ୍ଷର ବକଳ ।
ଭରତ ରାଜା ହୋଇ ପାଳୁ ଜନପ୍ରଜା
ଏକଥାକୁ କିମ୍ପା ତୁମ୍ଭେ ଭାଳୁଛ ମହାରାଜା ।
ଶୁଣିକରି ଦଶରଥ ରାମକୁ କହେ ବାଣୀ
ମୋତେ ତୁ ନ ଦେଖିବୁ ଲେଉଟି ଆସି ପୁଣି ।
ଅଳ୍ପଦିନେ ମୃତ୍ୟୁ ହୋଇବ ମୋହର
ତୋତେ ମୁଁ ନଦେଖି କି ଧରିବି ଶରୀର ।
ଶୁଣିଣ ଶ୍ରୀରାମଚନ୍ଦ୍ର ଖରେ ଚଳିଗଲେ
କଉଶଲ୍ୟାଙ୍କ ପୁରେ ପ୍ରବେଶ ହୋଇଲେ ।
ମାତାଙ୍କ ଚରଣରେ ନମସ୍କାର କରି
ବୋଲନ୍ତି ରାମଚନ୍ଦ୍ର ଶୁଣ ଗର୍ଭଧାରୀ ।
ଏହିକ୍ଷଣି ପିତା ମୋତେ ଡକାଇ ଆଜ୍ଞାଦେଲେ
ଚଉଦ ବରଷ ବନକୁ ଯିବାକୁ କହିଲେ ।
ଅଯୋଧାରେ ଭରତ ହୋଇବ ଯେ ରାଏ
କୈକୟା ଜନନୀ ଏହା କଲେକ ଉପାଏ ।
ରାଜାଙ୍କୁ ସତ୍ୟ କରାଇ ମାଗିଲେ ସେ ବର
କଉଶଲ୍ୟା ରାଣୀଙ୍କର କମ୍ପଇ ଶରୀର ।

ଅଚେତନ ହୋଇଣ ପଡିଲେ ରାଣୀ ଢ଼ଳି
ଦାସୀ ପରିବାରୀ ଧଇଲେକ ତୋଳି ।
ଶ୍ରୀରାମଙ୍କ ମୁଖ ଚାହିଁ ବୋଇଲେକ ମାତା
କପାଳରେ କର ମାରି ସୁମରେ ବିଧାତା ।
ଭୋ ବିହି ବିଧାତା କଲୁ ଏହା ଆଣି
ରାଜନ ବିଚାରିଲେ କରିବେ ନୃପମଣି ।
କୈକୟୀ କିମ୍ପାଇଁ କଲେ ଏସନକ ରୀତି
ଶ୍ରୀରାମ ଭ୍ରତରେ ତ ବିଗଳ ନୁହନ୍ତି ।
କ୍ଷୀରରେ ଖାର କିମ୍ପା ମିଶାଇଲା ସେହି
ପାଣିକି ପିଟିଲେ କି ଦିଭାଗ ହୁଅଇ ।
ଭ୍ରତ ରାଜା ହେଲେତ ଶ୍ରୀରାମ ଆନନ୍ଦ
କିମ୍ପାଇଁ ଭିଆଇଲୁ ବନବାସ ଦ୍ୱନ୍ଦ୍ୱ ।
ବେଳକାଳ ଜାଣିଣ ଶ୍ରୀରାମ ଭୁଞ୍ଜେ ଅନ୍ନ
ବନସ୍ତରେ ବୁଲି ବୁଲି ମରିବ ନିଷ୍ଟେ ଜାଣ ।
ତୁ ବାବୁ ଶ୍ରୀରାମରେ ଅରଣ୍ୟକୁ ନ ଯା
ଅଯୋଧ୍ୟା କଟକରେ ନୁହ ପଛେ ରାଜା ।
ପିତାଙ୍କର ଚରଣେ ଖଟିଣ ଥାଅ ତ
ରାଜ୍ୟର ଭୋଗ ଛାଡି ହୁଅ ଉଦାସ ମତ ।
ପୂର୍ବର କଥା ବାବୁ କହଇ ମୁଁ ତୋତେ
ଶୁଣନ୍ତି ରଘୁନାଥ କୌଶଲ୍ୟା କହନ୍ତେ ।
ଯେବଣ କାଳେ ବ୍ରହ୍ମା ବିଷ୍ଣୁ ସୃଷ୍ଟିକି ସର୍ଜିଲେ
ଗାୟତ୍ରୀଠାରୁ ଏକ ପୁତ୍ର ଜାତ କଲେ ।
ତାହାର ନାମ ଦେଲେ ଦକ୍ଷ ପ୍ରଜାପତି
ତାହାଙ୍କୁ ବିଧାତା ରାଇଲେକ କତି ।
ବୋଇଲେ ଭୋ ପୁତ୍ରରେ ସୃଷ୍ଟି ତୁହି କର
କୀଟ ପତଙ୍ଗ ଯେ ଜଙ୍ଗମ ସ୍ଥାବର ।
ଶୁଣିଣ ପ୍ରଜାପତି ହୋଇଲେ ସନ୍ତୋଷ
ଶରୀରୁ ଜାତ କଲେ ପାଞ୍ଚ ସାତ ପୁରୁଷ ।
ତାହାଙ୍କୁ ବୋଇଲେ ସଂସାର ତୁମ୍ଭେ କର
ବିପିନ ବନଗିରି ପର୍ବତରେ ସାର ।
ଯେ ଯହିଁରେ ବଞ୍ଚିବ ତହିଁରେ ତାକୁ ଥୁଅ
ଶୁଣିଣ ଭୟକଲେ ପ୍ରଜାପତିଙ୍କ ପୁଅ ।
କେମନ୍ତେ ସୃଷ୍ଟିକି କରିବ ପାଳଣା
ଏମନ୍ତେ ପୁଅମାନେ କରନ୍ତି ଭାଳଣା ।
ଅଦଭୁତେ ନାରଦ ମିଳିଲେକ ଆସି
ବୋଇଲେ କିମ୍ପା ହୋ ଭାଳୁଅଛ ବସି ।

ଏବେ ସୃଷ୍ଟି ବୁଲିଣ ପ୍ରଜାଙ୍କୁ ସୁଷ୍ଠକର
ସୃଷ୍ଟି ସୁଷ୍ଠ କରିବାକୁ ଗଲେକ କୁମର ।
ଜଗତ ବୁଲି ବୁଲି ବଣା ହୋଇ ମଲେ
କେହି ତହିଁ ସୃଷ୍ଟିକି ସର୍ଜିନ ପାରିଲେ ।
କଶ୍ୟପଙ୍କୁ ବୋଇଲେ ତାଙ୍କର ତରୁଣୀ
ମୋ ପୁତ୍ର ନୋହିଲେ ରାଜ୍ୟକୁ କାରେଣୀ ।
ତୁମ୍ଭେ ମୋତେ ପ୍ରାଣନାଥ ପ୍ରତିକାର କର
ଇନ୍ଦ୍ରଙ୍କୁ ବଳିଲା ଭାଳି ଦିଅ ହେ କୁମର ।
ସୁରଗଣେ ତା ସଙ୍ଗେ ନୋହିବେ ସମସରି
ସପତ ଦ୍ୱୀପେ ବୁଲିବ କୁମର ମୋହରି ।
ଅମୃତ ପାନରେ ପୁଣ ରଖିବ ପରାଣ
ବନରେ ଅଗୋଚର ରୂପେ କାମ ଛାଣ ।
ଏସନକ କରିଣ ଦିଅ ଏକପୁତ୍ର
ତେବେ ମୋର ହୃଦୟ ହୋଇବ ପବିତ୍ର
କଶ୍ୟପ ବୋଲନ୍ତି ଶୁଣ ଗୋ କାମିନୀ
ହେଉ ଏକ ପୁତ୍ର ତୋର ଯିବ ପୁର ତିନି ।
ଅକ୍ରିୟାବନ୍ତ ମାତ୍ର ନୋହିବୁ ସୁକୁମାରୀ
ତେବେ ସେ ପୁତ୍ର ତୋର ହେବ ମହାବଳୀ ।
ସତ୍ୟ ମନାଇ ଋଷି ତାକୁ ଦେଲେ ବର
ଦିତିର ଗର୍ଭରେ ରହିଲେ କୁମର ।
ସ୍ୱର୍ଗରେ ଇନ୍ଦ୍ରଜାଣି କଲେ ମହାଭୟେ
ମାୟାରୂପ ଧରିଣ ଆସେ ସୁରରାଏ ।
ଦେଖିଲା ସୁନ୍ଦରୀ ଅସକତ ହୋଇ
ସୀମସ୍ଥାନ ଗୋଡକୁ ଗୋଡକରି ଶୋଇ ।
ଅବେଭାର ବେଳ ଯେ ଜାଣିଲେ ଶଚୀନାଥ
ଗର୍ଭରେ ପଶିକରି ପୁତ୍ର କଲେ ହତ ।
ସାତଖଣ୍ଡ କରିଣ କାଟି ପକାଇଲେ
ପୁଣିହିଁ ଖଣ୍ଡକ ସାତଖଣ୍ଡ କଲେ ।
ଏମନ୍ତେ କଲେ ତାକୁ ଅଣଚାଶ ମୂର୍ତ୍ତି
ପେଟେ ଥାଇ ପୁଏ ରୋଦନ କରନ୍ତି ।
ଜାଣିଣ ଦିତି ଇନ୍ଦ୍ରେ ଶାପ ଦେଲେ
ତକ୍ଷଣେ ଶଚୀନାଥ ଛାମୁରେ ମିଳିଲେ ।
ବେନିକର ଯୋଡିଣ ବୋଲନ୍ତି ବଜ୍ରଧର
ଭୋ ମାତ ମୋହର ଦୋଷ କ୍ଷମାକର ।
ଦିତି ବୋଇଲେ ତୁ ଯେ ସୋଦର ବଧ କଲୁ
ଗର୍ଭରେ ପଶି ମୋର ପୁତ୍ରକୁ ନାଶକଲୁ ।

ଅମୃତ ଯେବେ ତୁହି ସ୍ୱର୍ଗରୁ ଦେବୁ ଆଣି
ତେବେ ତୋତେ ଶାପ ନ ଦେବି ସୁରମଣି ।
ସନମତ କରିଣ ଗଲେ ଶଚୀକାନ୍ତ
ସ୍ୱର୍ଗରୁ ଅମୃତ ଆଣି ଦେଲେ ଦିତି ହସ୍ତ ।
ତକ୍ଷଣେ ଅମୃତ ଭକ୍ଷିଲାକ ବାଳୀ
ଅଣଚାଶ ମୂର୍ତ୍ତି ବହିଲେ ମହୀଆଳି ।
ସେଠାବରେ ହେଲେ ଅଣଚାଶ ଅବତାର
ଦେବଙ୍କର ସମାନେ ଅତିଅନ୍ତ ବଳକର ।
ଯେଉଁ ପୁତ୍ର ଲାଗି ଲାଗେ ଏତେ ବ୍ୟଥା
ଅଷ୍ଟାଦଶ ପୁରାଣରେ ରହିବ ତୋର କଥା ।
ତୁ ଯେବେ ବନସ୍ତକୁ ଯିବୁ ରଘୁନାଥ
ମୁହିଁ ସିନା ବାବୁରେ ହୋଇବି ଅନାଥ ।
କୈକୟା ପୁତ୍ର ନୃପତି ପଣେ ଥିବ
ଶରତ୍‌ଚନ୍ଦ୍ର ପ୍ରାୟେ ତା ମୁଖ ପ୍ରକାଶିବ ।
ତୁ ବାବୁ ବନସ୍ତକୁ ନଯା ଦାଶରଥି
ଅନେକ ପ୍ରକାରେ ତୋତେ ପୋଷିବିରେ ବସି
ମୋହର ଏକଇର ଅଟୁ ତୁରେ ବଳା
ନିରେଖ କରିଣ ମୋତେ ଛାଡିଣ ନପଳା ।
ମୁହିଁ ଉଦ୍ଧାରୁଣୀ ତୁ ମୋ ଥାଳପାତ୍ର ଗୋଟି
ଅପନ୍ତରା ବାଟେ ରାମ ନକାଟ ମୋ ତୋଟି ।
ଦୁଃଖୀର ଧନ ତୁରେ ଅଟୁ ମୋର ବାବୁ
ଅନାଥ କରି ମୋତେ କିପରି ଛାଡି ଯିବୁ ।
ଦରିଦ୍ରର ଧନ ମୁଁ ପାଇଛିରେ ବଳା
ସମୁଦ୍ର ମଧରେ ବାବୁ ନକାଟ ମୋ ଗଳା ।
ଅନ୍ଧ ହୋଇ ଲହଡ଼ି ଛାଡ଼ିଲେ ମରିବି
ତୋତେ ନ ଦେଖିଲେ ଦେହ କେମନ୍ତେ ଧରିବି
ନ ଯାରେ ବନବାସ ମୋର ବୋଲକର
ଶୁଣିକରି ରାମଚନ୍ଦ୍ର କହନ୍ତି ଉତ୍ତର ।
ତୁ ମୋର ଜନନୀ ନ ଜାଣୁ ଯେ କିଛି
ପିତାଙ୍କର ବୋଲ ମୁଁ ଭାଙ୍ଗି ନ ପାରେଟି ।
ମୋ ପିଣ୍ଡକୁ ପିତା ଅଟନ୍ତି କାରେଣୀ
ପର୍ଶୁରାମ ପିତାଙ୍କ କଥା ନାହୁଁ ମାତା ଶୁଣି ।
ଯମଦଗ୍ନି ଋଷିଙ୍କର ରେଣୁକା ଘରଣୀ
ପାଞ୍ଚ ପୁତ୍ର ଘେନି ମଢ଼ିଆରେ ଥାନ୍ତି ପୁଣି ।
ଜପ ତପ କରିଣ ଧାରଣା କରନ୍ତି
ଅତି ନିଷ୍ପାପର ଅଟନ୍ତି ମହାମତି ।

ଦିନେ ତର୍ପଣ କରନ୍ତେ ଯମଦଗ୍ନି ପୁଣ
ପାଣି ତୋଳି ଦିଅନ୍ତି ରେଣୁକା ଯେ ଜାଣ ।
ଚିତ୍ରସେନ ଗନ୍ଧର୍ବ ଆକାଶେ ଯାଉଥିଲା
ତର୍ପଣ ବେଳେ ତାର ଛାୟାଟି ଦିଶିଲା ।
ଚିତ୍ତରେ ଭ୍ରାନ୍ତି ଯହୁଁ ପାଇଲେ ସେ ନାରୀ
ମୁନିଙ୍କର କରପତ୍ରେ ନ ପଡ଼ିଲା ବାରି ।
ଯୋଗରେ ଜାଣି ଋଷି ପତ୍ନୀଙ୍କ କୋପକଲେ
ଚାରି କୁମରଙ୍କୁ ଚାହିଁଣ ଆଜ୍ଞାଦେଲେ ।
ତୁମ୍ଭର ଜନନୀ ଅଟେ ଦୋଚାରୁଣୀ
ଶିର କମଳ ତାର କାଟ ଏହିକ୍ଷଣି ।
ପୁତ୍ର ବୋଇଲେ ପିତା ଏ ଧର୍ମ ନୁହେ ଜାଣ
ସ୍ତିରୀକୁ ପ୍ରହାର କରିବା ଅନୀତିଟି ଜାଣ ।
ବିଶେଷେ ଜନନୀ ଅଟନ୍ତି ମହାଗୁରୁ
ଏତେ ଅଧର୍ମ କଥା କିମ୍ପା ମନେ ଧରୁ ।
ଶୁଣି ମୁନିବର ପର୍ଶୁରାମଙ୍କୁ ବେଗେ ରାଇ
ଜନନୀର ଦୋଷ ତାହାର ଆଗେ କହି ।
ତୋ ଭାଇମାନେ ବୋଲ ନ କଲେ ମୋହର
ପିତାରେ ଭକତି ଭାବ ଅଛି କି ତୋହର ।
ମୋର ଆଜ୍ଞାରେ ଜନନୀ ଶିର ବେଗେ ଛେଦ
ଏ ଚାରିଭାଇଙ୍କୁ ଖଡ଼ଗେ କର ବଧ ।
ପିତାର ବଚନ ଶୁଣି ପର୍ଶୁଧର
କାଟି ପକାଇଲେ ଜନନୀର ଶିର ।
ପୁଣି ଚାରି ଭାଇଙ୍କର କାଟିଲେ ମୁର୍ଦ୍ଧନି
ଦେଖିଣ ସନ୍ତୋଷ ହେଲେ ଯମଦଗ୍ନି ।
ପର୍ଶୁରାମକୁ କୋଳେ ବସାଇ ଦେଲେ ବର
ତୁହି ଚାରିଯୁଗରେ ହେବୁଟି ଅମର ।
ଆହୁରି ବର ତୁହି ମାଗିବୁ ବଳା ଯାହା
ସତ୍ୟ ସତ୍ୟ ପୁତ୍ରରେ ଦେବଇଁ ମୁଁ ତାହା ।
ପର୍ଶୁରାମ ବୋଇଲେ ଦିଅନ୍ତୁ ମୋର ଆଇ
ଆବର ବଞ୍ଚନ୍ତୁ ମୋର ଚାରିଭାଇ ।
ହସି ଯମ ଦଗ୍ନି ଅସ୍ତୁ ଅସ୍ତୁ କଲେ
ତତକ୍ଷଣେ ପାଞ୍ଚଜଣ ବଞ୍ଚିଣ ଉଠିଲେ ।
ସ୍ୱର୍ଗରେ ସାଧୁ ସାଧୁ କଲେ ଦେବଗଣ
ଧନ୍ୟ ଧନ୍ୟ ପର୍ଶୁର ପିତା ଭକ୍ତି ଜାଣ ।
ପିତାଙ୍କର ବଚନେ ମାଇଲୁ ମାତୃ ଭାଇ
ପୁଣି ଜିଆଇଲୁ ଭକତି ଦେଖାଇ ।

ଆପଣେ ଅମର ତୁ ହୋଇଲୁ ଯେ ପୁଣ
ଏସନେକ ପ୍ରଶଂସା କଲେ ସୁରଗଣ ।
ପିତାର ଭକତି ପଣେ ଏବେ ଜିଆଇଲୁ
ତେଣୁ ସେ ଧାର୍ମିକ ପଣରେ ସିଦ୍ଧ ହେଲୁ ।
ମୁଁ କିମ୍ପା ନୋହିବି ପିତାରେ ଭକତ
ପିତାଙ୍କର ଆଜ୍ଞା ପାଳିବା ଉଚିତ ।
ଚଉଦ ବରଷ ବନକୁ ମୁଁ ଯିବି
କନ୍ଦମୂଳ ଖାଇଣ ଉଦର ପୋଷିବି ।
ପିତା ସତ୍ୟ ଭାଙ୍ଗିଲେ ପୁତ୍ରକୁ ଗତି ନାହିଁ
ଯୋଗ୍ୟ ହୋଇ ଅଯୋଗ୍ୟ ହୋଇବି କିମ୍ପାଇ
ଦେବକାର୍ଯ୍ୟ ହୋଇବ ମୁହିଁ ବନ ଗଲେ
ଦେବତାଏ ବିଚାରି ଏକଥା ଭିଆଇଲେ ।
ନୋହିଲେ କୈକେୟୀ ମାତା କହନ୍ତେ କି ଏହା
ଖଳ ଦଇବ ପ୍ରବେଶ ହେଲା ତାର ଦେହା ।
ଚଉଦ ବରଷେ ମୁଁ ଲେଉଟି ଆସିବି
ପିତାଙ୍କୁ ନ ଦେଖିବି ସବୁଙ୍କୁ ପାଇବି ।
କିଛି ଚିନ୍ତା ମନରେ ନକର ତୁ ମାତ
ପିତାଙ୍କର ଚରଣେ ମୋ ଭକତି ଯେମନ୍ତ ।
ପିତା ଆଜ୍ଞା ଭାଙ୍ଗି ଯେବେ ବନକୁ ନ ଯିବି
ରାଜ୍ୟରେ ଅପକୀର୍ତ୍ତି ବହୁତ ପାଇବି ।
କିଛି ଚିନ୍ତା ମନରେ ନକର ମାତା ପୁଣି
ଦେଖିବୁ ଅଇଲେ ମୋ ସମ୍ପତ୍ତି ପୁଣି ।
ତିନିପୁର ମଧରେ ଶୁଭିବ ମୋର ବାଣୀ
ସମସ୍ତେ କୈକେୟୀଙ୍କୁ ନିନ୍ଦିବେ ଯେ ପୁଣି ।
ଚିନ୍ତାଜଳେ ବୁଡିବ ଯେତେ ଦିନ ଥିବ
କାହାରି ମୁଖରେ ସେ ପ୍ରଶଂସା ନ ପାଇବ ।
ବିଷ ବୃକ୍ଷ ହେଲାଣି ତିନିପୁରେ ଜାଣ
ସୁର ଅସୁର ନର ଅଛନ୍ତି ଯେତେ ଜନ ।
ଶୁଣି ମଉନେ ବସିଲେ କଉଶଲ୍ୟା ରାଣୀ
ବିଚାରିଲେ ନିଷ୍ଟେ ବନେ ଯିବ ରଘୁମଣି ।
ଏହି ସମୟରେ ସୁମିତ୍ରା ରାଣୀ ଆସି
ଦେଖିଣ ନମସ୍କାର କଲେ ରଘୁବଂଶି ।
ଶ୍ରୀରାମ ବୋଇଲେ ମାତା ମୁଁ ଯାଉଛି ବନ
ଚଉଦ ବରଷ ପୂରିଲେ ଆସିବି ଯେ ପୁଣ ।
ପିତା ମୋତେ ଆଜ୍ଞା ଦେଲେ ଏସନକ କରି
ଏହିକ୍ଷଣି ଯିବି ମୁହିଁ ଅନୁକୂଳ କରି ।

ରାଜାଙ୍କୁ ସେବା କରୁଥିବ ତୁମ୍ଭେ ଭଲେ
କେହି କଳି ନକରିବ ନୃପତିଙ୍କ ତୁଲେ ।
ପୁଅଙ୍କୁ ପାଳିଣ ସୁଖେ ରଖିଥିବୁ
ଦାସୀଗଣଙ୍କ ସାଙ୍ଗରେ ଅପ୍ରୀତି ନୋହିବୁ ।
ସୁମିତ୍ରା ବୋଇଲେ ରାମ ମୋର କଥା ଶୁଣ
କାହୁଁ ବିଧାତା ଏହା ସମ୍ପାଦି ଥିଲା ପୁଣ ।
ଭଲ ଗତି ଆମ୍ଭର ଏଣିକି ଦିଶୁନାହିଁ
ଶ୍ରୀରାମ ପରା ପୁତ୍ର ବନସ୍ତକୁ ଯାଇ ।
କଇକେୟା ମହରାଣୀ କଲା ଏତେ କୃତ୍ୟ
ତାହାକୁ କିସ ପୁଣି ବୋଲିବେ ଜଗତ ।
ଯାଅ ବାପ ବନସ୍ତକୁ ଧର୍ମ ତୋତେ ରଖୁ
ବାଟରେ ଦେବୀତୋତେ ଅମୃତଦୃଷ୍ଟିରେ ଦେଖୁ
ଅପ୍ରମାଦ ନବିଚାର ପିତାର ସତ୍ୟ ପାଳ
ଆସିଣ ଭୋଗକର ଏ ଅଯୋଧ୍ୟାପୁର ।
ଏତେ କହି ସୁମିତ୍ରା ଶୋକଭର ହୋଇ
ଗୋଳ ଶୁଣି ସର୍ବରାଣୀ ସେଠାବକୁ ଯାଇ ।
ଶୁଣିଣ ସର୍ବମାତା ଶୋକଭର ହେଲେ
କୈକେୟା ରାଣୀଙ୍କି ବହୁତ ନିନ୍ଦା କଲେ ।
ଶୋକଭର ହୋଇଣ ଚଳିଲେ ସର୍ବମାତ
ଦାସୀ ପରିବାରୀଙ୍କି ଘେନିଣ ବିଚାରି ତ ।
ସୁମିତ୍ରା ଚଳିଗଲେ ନିଜ ମନ୍ଦିରକୁ
ସଙ୍ଗତରେ ଘେନିଗଲେ ସେ ଦାସୀମାନଙ୍କୁ ।
ଲକ୍ଷ୍ମଣକୁ ରାଇଣ ବସାଇ ଦେବୀ କତି
କହିଲେ ବନକୁ ଯାଉଛି ରଘୁପତି ।
କୈକେୟା ମାତା ତୋର ମନ୍ଥଡୀ ବୋଲ କଲା
ରାମ ବନ ଯିବାକୁ ରାଜାଙ୍କୁ ସତ୍ୟ କରାଇଲା ।
ତୁହି ଶ୍ରୀରାମ ସଙ୍ଗରେ ଯାଅରେ ଲକ୍ଷ୍ମଣ
ସେବୁଥିବୁ ବାବୁ ତୁ ଶ୍ରୀରାମ ଚରଣ ।
ଶୁଣି ଲକ୍ଷ୍ମଣର ବୁଦ୍ଧି ନ ସ୍ଫୁରଇ କିଛି
ଯାଇଣ ମିଳିଲେ ଯହିଁ ଅଛନ୍ତି ରଘୁବଂଶି ।
ନମସ୍କାର କରିଣ ବସିଲେ କରଯୋଡ଼ି
କିମ୍ପାଇ ବନକୁ ଯିବୁ ଦୁଃଖେ ପଡି ।
ସାବତ ମାତା ଯେ ବଇରୀ ସମାନ
ସାକ୍ଷାତେ ତୁମ୍ଭଙ୍କୁ କି କହିଲେ ରାଜନ ।
ସ୍ତିରୀ ବଶ ହୋଇଣ ମିଛେ କଲା ସତ୍ୟ
ତୁମ୍ଭର ମନ ପ୍ରଭୁ ବଳିଲା କେମନ୍ତ ।

ଲକ୍ଷ୍ମଣ ବୋଇଲେ କିମ୍ପା ବନ ଯିବା
ଆସ ଆମ୍ଭେ ଏହିକ୍ଷଣି ଅଭିଷେକ ହେବା ।
ଯେହୁ ଅବା ନିରୋଧ କରିବ ଆଗେ ମିଳି
ତାହାର ମାଂସ କାଟି ଦେବି ବିଶାବଳି ।
ଏ ଦୁଇ ବାହା କିମ୍ପା ଅଛଇ ମୁଁ ଧରି
ମୁହିଁ ଥିଲେ ତୁମ୍ଭେ କି ହେବ ବନଚାରୀ ।
ଏମନ୍ତ ଶୁଣିଲେ କି ରହିବ ମୋର କାୟେ
ଏହିକ୍ଷଣି ମାରିବି ମୁଁ ଦଶରଥ ରାଏ ।
କୈକେୟାର ଶିର ପକାଇବି କାଟି
ପାତ୍ର ଅମନାତ୍ୟଙ୍କୁ କରିବ ନାଶଟି ।
ଯୁଦ୍ଧ ଯେବେ କରିବେ ଭ୍ରତ ଶତ୍ରୁଘନ
ମୋହର ନାରାଚରେ ହେବେ ସେ ନିଧନ ।
ନୋହିଲେ ନୃପତି ରାଜ୍ୟ ବାଣ୍ଟ ଦେଉ
ପିତାଗୁଣ ତାଙ୍କର ଯୁଗେ ଯୁଗେ ଥାଉ ।
ନୋହିଲେ ଅଯୋଧ୍ୟା ପୁର ଦହିବି ଅନଳେ
ଦଶରଥ ପ୍ରାଣକୁ ପେଷିବି ଯମଆଳେ ।
ଅସତ୍ୟ ପୁରୁଷ ଅଟଇ ମୋର ପିତା
ସତ୍ୟବନ୍ତ ଲୋକ ସିନା ଅଟନ୍ତି ଦେବତା ।
ଆଗେ ଆପେ ଶ୍ରୀରାମକୁ ରାଜ୍ୟ ଦେବା କଲା
ପୁଣି ବନବାସକୁ ଯାଅ ଯା ବୋଇଲା ।
ମାୟା କଥା କହି ଯହୁଁ ମୋହିଲା ଯୁବତୀ
ଅଜ୍ଞାନ ହୋଇଣ ସତ୍ୟ ଛାଡିଲେ ନୃପତି ।
ଅସତ୍ୟ ପ୍ରାଣୀକି ମାଇଲେ ଦୋଷନାହିଁ
ଅଷ୍ଟାଦଶ ପୁରାଣରେ ଆଗହୁଁ ଅଛି କହି ।
ଲକ୍ଷ୍ମଣର ଦୁଷ୍ଟପଣ ଦେଖିଣ ରଘୁନାଥ
ସଧୀରେ ବୋଲନ୍ତି ଶୁଣ ମୋର ଭ୍ରାତ ।
ପିତାଙ୍କୁ କୋପ ବାବୁ କରି ନ ଯୋଗାଇ
ଏ ପିଣ୍ଡ ପ୍ରାଣରେ ପିତା ଅଟନ୍ତି ଗୁଣଗ୍ରାହୀ ।
ମିଛ ସତ୍ୟରେ ପୁଣି କରନ୍ତି ନିୟମ
ତାଙ୍କ ସତ୍ୟ ଭାଙ୍ଗିବାରେ କେବେ ନୁହେ ଧର୍ମ
ତୁହି ବାବୁ କୋପକୁ କରିଦେଲେ ଶାନ୍ତି
ନୃପତିଙ୍କ ଚରଣେ ସେବା ଆମ୍ଭରଟି ।
ଯଦ୍ୟପି ଭ୍ରତ ଏଥିରେ ନିଶ୍ଚେ ହେବ ରାଜା
ଅହନ୍ତା ଛାଡିଣ ପିତାଙ୍କୁ କରେ ପୂଜା ।
ଏକହିଁ ପିଣ୍ଡରୁ ଆମ୍ଭେ ଚାରିହେଁ ଜାତ
ଭରତର ଆମ୍ଭର ବେଗଳ ନୁହେ ଭ୍ରାତ ।

ଲକ୍ଷ୍ମଣ ବୋଇଲେ ଶୁଣ ଚାପଧାରୀ
ତୁମ୍ଭେ ଯେବେ ବିପିନକୁ ଯିବ ହେ ବିହରି ।
ଏ ରାଜ୍ୟରେ ଥାଇ ମୁଁ କରିବଇଁ କିସ
ତୁମ୍ଭର ସଙ୍ଗରେ ମୁଁ କରିବି ବନବାସ ।
ତୁମ୍ଭେ ଯେବେ ବନରେ ଭୁଞ୍ଜିବ କନ୍ଦମୂଳ
ଅଯୋଧ୍ୟାରେ ଥାଇ ମୁଁ କରିବି କିସ ଫଳ ।
ଏକଥା କିମ୍ପା ସ୍ୱାମୀ ମନରେ ନ ବିଚାର
ଜନ୍ମଜନ୍ମାନ୍ତରେ ମୁଁ ତୁମ୍ଭର କିଙ୍କର ।
ଶ୍ରୀରାମ ବୋଲନ୍ତି ଦୁଃଖ ପାଇବୁ ଅରଣ୍ୟେ
ସୁକୁମାର ଦେହଗୋଟି ସହିବୁ କେସନେ ।
ଆହାର ବିହୁନେ ତୁଟିବ ତୋର ପ୍ରାଣ
ମୋ ବୋଲ କର ବନେ ନଯାରେ ଲକ୍ଷ୍ମଣ ।
ରଘୁନାଥ ବଚନ ସଉମିତ୍ରି ନ ଶୁଣିଲେ
ମୁହିଁ ନିଶ୍ଚେ ଯିବି ବୋଲି ସତ୍ୟ ଉଚ୍ଚାରିଲେ ।
ଦୃଢ଼ବ୍ରତ କଥା ତାର ଶୁଣିଲେ ରାମ ଯହୁଁ
ଲକ୍ଷ୍ମଣ ଭୁଜଧରି ଚଳିଲେକ ତହୁଁ ।
ସୀତାଙ୍କର ପୁରେ ରାମ ପ୍ରବେଶିଲେ
ଦେଖିଣ ଜାନକୀ ଉଠିଣ ଉଭା ହେଲେ ।
ରଘୁନାଥ ବୋଲନ୍ତି ବଇଦେହୀ ଶୁଣ
ପିତା ମୋର ବନକୁ ପେଷିଲେ ଏହିକ୍ଷଣ ।
ଚଉଦବରଷ ମୁଁ ଅରଣ୍ୟେ ରହିବି
ଅନ୍ନହିଁ ନ ଭୁଞ୍ଜିବି ଦେଶ ନ ମାଡ଼ିବି ।
ଭ୍ରତ ରାଜା ହୋଇବ ଏ ଅଯୋଧ୍ୟା ପୁରୀ
କୈକେୟା ଜନନୀ ଉପାୟ ଏହାକରି ।
ତୁମ୍ଭେ ଜାନକୀ ଗୋ ଶାଶୁଙ୍କୁ ସେବା କରୁଥିବ
ମୋତେ ନ ଦେଖିଣ ବିରହୀ ନହୋଇବ ।
ନୀଚଜନ ତୁଲେ ସମସ୍ୟା ନକରିବୁ
ମୃଦୁସୁଲୀ କି ଆପଣାର କରିଥିବୁ ।
ଆମ୍ଭ ଶୁଭ ମନାସିବୁ ଜନକ କୁମାରୀ
ଆମ୍ଭେ ଆଜିଠାରୁ ହେବୁ ବନଚାରୀ ।
ସୀତା ବୋଇଲେ ମୁଁ ଏଥି ରହିବି କିମ୍ପାଇ
ତୁମ୍ଭଙ୍କୁ ନ ଦେଖି କି ପ୍ରାଣ ମୋର ରହି ।
ମୂର୍ତ୍ତିଏକ ହେଲେ ନାମେକ ବହଇ
ତୁମ୍ଭର ଅଙ୍ଗରେ ସିନା ଅଟେ ମୁହିଁ ଗୃହୀ ।
ନିୟମ କରିଲି ଏକ ସ୍ତିରୀରେ ଯିବ ଦିନ
ତୁମ୍ଭର କେତେ ସୁଖ ଭାଙ୍ଗିଲି ମୁଁ ପୁଣ ।

ରାଜା ଗୋଟିକେ ଶତକୋଟି ଅଟନ୍ତି ପାଟରାଣୀ
ମୁହିଁ ତାହା ଭାଙ୍ଗି ମୂଢ଼ ପଣରେ ପୁଣି ।
ମୋତେ କିପରି ଛାଡ଼ିଣ ଯିବ ବନବାସ
ଭ୍ରତକୁ ଦେଖିଲେ ମୋର ମନରେ ବିରସ ।
ଭୋ ସ୍ୱାମୀ ମୋତେ ଯେବେ ଯିବ ତୁମ୍ଭେ ଛାଡ଼ି
ଆତ୍ମା ବିସର୍ଜିବି ମୁଁ ହୁତାଶନେ ପଡ଼ି ।
ଯେଉଁ ଦିନ ତୁମ୍ଭେ ମିଥିଳାକୁ ଗଲ
ଲକ୍ଷେରାଜା ସଭାରେ ଧନୁ ଭଗ୍ନ କଲ ।
ସେହିଦିନୁଁ ମୋର ପ୍ରାଣ ତୁମ୍ଭ ଦେହେ ଅଛି
ଅନୁକ୍ଷଣେ ଦେଖୁଛି ତୁମ୍ଭ ବଦନଟି ।
ଯେବେ ତୁମ୍ଭେ ବନସ୍ତେ ଯାଇ ପାଇବ ଦୁଃଖ
ମୁହିଁ ଏଠାରେ ରହି ଚାହିଁବି କାହା ମୁଖ ।
ଶ୍ରୀରାମ ବୋଇଲେ ନଜାଣ ଗୋ ସଖି
ବନକୁ ଗଲେ ତୁମ୍ଭେ ହେବ ବଡ଼ ଦୁଃଖୀ ।
ବନ ପର୍ବତ ଲତା ନିର୍ଜନ ଭୟଙ୍କର
ଜୀବ ଜନ୍ତୁମାନେ ସେଥିରେ ଅପାର ।
ଦିନେ ଓଳିଏ ନୁହେ ଯାଇଣ ଆସିବା
ଚଉଦ ବରଷ ଅରଣ୍ୟେ ଦିନ ନେବା ।
ଏ ବଚନ ଶୁଣିଣ ବୋଲୁଛନ୍ତି ସୀତା
କିମ୍ପା ତୁମ୍ଭେ ଅନ୍ୟାୟ କହ ହେ ଜଗଜ୍ଜିତା
ପିତା ମୋର ତୋଷମନେ ତୁମ୍ଭଙ୍କୁ ସମର୍ପିଲେ
ମୋତେ କିମ୍ପା ନିରାଶ କରୁଛ ଏ ବେଳେ ।
ଜନ୍ମେ ଜନ୍ମେ ମୁହିଁ ଅଟେ ତୁମ୍ଭ ଦାସୀ
ତୁମ୍ଭେ ସ୍ୱାମୀ ଯେବେ ହେବ ବନବାସୀ ।
ମୁହିଁ ଏଥିରେ ରହି କରିବଇଁ କିସ
ମୋତେ ତୁମ୍ଭର ସଙ୍ଗରେ ନିଅ ପ୍ରାଣଈଶ ।
ମୁଁ କେମନ୍ତେ ରହିବି ଛାଡ଼ିଗଲେ ମୋତେ
ଘରେ ବସି ଦିନ ମୁଁ ସାରିବି କେମନ୍ତେ ।
ନିଶ୍ଚୟେ ସ୍ତିରୀ ହତ୍ୟା ଘେନିବ ରଘୁନାଥ
ତୁମ୍ଭର ସଙ୍ଗେ ନିଶ୍ଚେ ଯିବାର ମୁଁ ସତ୍ୟ ।
ସୀତାଙ୍କ ବଚନ ନିରାଧାର ଶୁଣି
ଶ୍ରୀକରେ ସମାର୍ଜନା କରନ୍ତି ରଘୁମଣି ।
ନୁହ ଗୋ ବିମୁଖ ମୋର ପ୍ରାଣସହୀ
ତୋତେ ଛାଡ଼ିଗଲେ ନିକି ମୋର ପ୍ରାଣ ରହି ।
ଜନକ ରଷି ଦେଇଅଛନ୍ତି ଶୁଦ୍ଧମନେ
ନିଶ୍ଚୟ ସଖୀ ତୋତେ ସଙ୍ଗେ ନେବି ବନେ ।
ରାମଙ୍କ ବଚନ ଶୁଣି ଉଦ୍‌ବେଗି ଶୁଭ୍ରକେଶୀ
ତିନିଜଣ ଏକମନ ହେଲେ ତହୁଁ ମିଶି ।
କଉଶଲ୍ୟାଙ୍କ ପୁରେ ହେଲେ ପରବେଶ
ନମସ୍କାର କରିଣ ବୋଲନ୍ତି ରଘୁଶିଷ୍ୟ ।
ବନକୁ ଯିବି ସୀତା ଲକ୍ଷ୍ମଣଙ୍କୁ ଘେନି
ସୀତାଙ୍କୁକୋଳେଧରି ଶୋକେ କୌଶଲ୍ୟାରାଣୀ
ଶରୀର ଆଉଁଷିଣ ଅନେକ ତିଆରି
ବନ କନ୍ଦରେ କେତେ ବୁଲିବୁ ମହୀସ୍ଥଳୀ ।
ତୁ ଯେବେ ଜାନକୀ ଗୋ ରାମ ସଙ୍ଗେ ଯିବୁ
ଅପୂର୍ବ ପଦାର୍ଥ ଦେଖିଲେ ନ ମାଗିବୁ ।
ସ୍ୱାମୀକି ଛାଡ଼ିଣ ନ ଯିବୁ ତୁ କାହିଁ
ସେବା କରୁଥିବୁ ବିନୟ ଭାବ ହୋଇ ।
ଫଳ ମୂଳ ଯାହା ପାଇବୁ ସୁକୁମାରୀ
ଆର ଦିନକୁ କିଛି ରଖିବୁ ସାଇତିକରି ।
ନପାଇଲା ଦିନ ତୁମ୍ଭର ସେ ରଖିବ ଯେ ପ୍ରାଣ
ଏକଥା ସୀତୟା ଗୋ ତଥ୍ୟ କରି ଜାଣ ।
ପ୍ରଭୁଠାରେ ବିମୁଖ ନୋହିବୁ ତୁ ଗୋ ମାଏ
ଯେମନ୍ତେ ଭଲ ହୋଇଣ ଥିବଟି ସଭିଏଁ ।
ସେକଥା ଜାଣିଣ ତୁ ଥିବୁ ସେବାକରି
ସେ ତୋହର ଅଟେ ପ୍ରାଣର ଅଧିକାରୀ ।
ତୁ ତାହାର ମନ ଜାଣୁରେ ଚନ୍ଦ୍ରମୁଖୀ
ଯେସନେକ ପୁତ୍ର ମୋର ହୋଇଥିବ ସୁଖୀ ।
ତୁ ତାହାତ ପ୍ରତ୍ୟକ୍ଷରେ ଜାଣୁ ବଇଦେହୀ
ତୋର ତହୁଁ ତାହାର ଆନ କେହି ନାହିଁ ।
ତୁ ତାହାର ଘରଣୀ ସେ ତୋହର ସାଇଁ
ଏଥିରେ କିଛି ମାତ୍ର ବେଗଳ ଯେ ନାହିଁ ।
ମୁଁ ନୋହିଲି ସିନା ତ ଦୁଃଖକୁ ଆରେଣୀ
ମିଛେହେଁ ରାଜାର ଅଟଇ ଯେ ରାଣୀ ।
କାହିଁକି ଯିବି ମୁଁ ଯେ କରିବି ବା କିସ
ବାବୁ ଦଇବ ତୁ ରେ କଲୁ ଏଡ଼େ ଦୋଷ ।
ବୃଦ୍ଧାକାଳେ ଏକଇ ପୁତ୍ର ପାଇଥିଲି
ଦଇବର ଦୁର୍ବଳରେ ତାହାକୁ ହରାଇଲି ।
ବାଳୁତ କାଳରୁ ପୁତ୍ର ମୋର କୋଳେ ଥିଲା
ଏବେ ରାମ ବନ ଯିବ ବିଧାତା ଏହାକଲା ।
ଯାଅ ଯାଅ ମାଗୋ ଜନକ କୁମାରୀ
ଯାଅ ଗୋ ବନସ୍ତେ ସ୍ୱାମୀକି ସେବାକରି ।

ପତିବ୍ରତା ଶ୍ରେଣୀରେ ତୁ ହେବୁଲୋ ଗଣିତା
ତୋର ନାମ ପ୍ରଭାତୁ ସର୍ବେ ସୁମରିବେ ସୀତା।
ସତୀ ସାଧବୀ ତୁ ଗୋ ଅଟୁ ମହୀସ୍ଥଳୀ
ତୋତେ କଲ୍ୟାଣ ହେଉ ଜନକ ଦୁଲାଳି।
ବୋଲନ୍ତି କଉଶଲ୍ୟା ଶୁଣ ମହାସତୀ
ସନ୍ତୋଷରେ ବର ମୁଁ ଦେଉଅଛି ଯାଚି।
ତୋହର ହସ୍ତରେ ଅମୃତ ପୂରିଥାଉ
ଯେଉଁ ଦ୍ରବ୍ୟ ରାନ୍ଧିବୁ ସବୁ ସ୍ୱାଦୁ ହେଉ।
ଅଳପ ଆହାରରେ ତୋଷ ହେବମନ
ଯେତେ ଦ୍ରବ୍ୟ ରାନ୍ଧିବୁ ହେବ ଅମୃତ ସମାନ।
ଏତେ କହି ସନ୍ତୋଷ କଉଶଲ୍ୟା ହେଲେ
ଲକ୍ଷ୍ମଣଙ୍କୁ ଚାହିଁଣ ଅନେକ ବୋଧିଲେ।
ଯାଅ ବାବୁ ଭାଇଙ୍କୁ ସେବା ତୁ କରସି
ଦୁଃଖବେଳେ ଭାଇକି ସାହା ତୁ ହୁଅସି।
ଶ୍ରୀରାମ କ୍ରୋଧ ଯେ ରାଗରେ କ୍ଷଣକ୍ଷଣ
ସେ ଦୋଷ ନ ଘେନିବୁ ଶୁଣରେ ଲକ୍ଷ୍ମଣ।
ଏତେବୋଲି କଉଶଲ୍ୟା ଶ୍ରୀରାମ ଭୁଜଧରି
ତିନିଜଣଙ୍କ କରଧରି କହେ ବୁଝାଇକରି।
ଶୁଭଯୋଗରେ ଯାଇଣ ପିତାର ସତ୍ୟ ରଖ
ବାହୁଡ଼ି ଆସି ପୁଣି ମୋର ଦୁଃଖ ଦେଖ।
କଉଶଲ୍ୟା ନୟନରୁ ବହେ ଅଶ୍ରୁଜଳ
ଆବର ସର୍ବମାତା ହୁଅନ୍ତି ବିକଳ।
ମନ୍ଥରାର ମନରେ ବହୁତ ହରଷ
ମୋତେ ଯେ ମାଇଲା ଯେ ଯାଉଛି ବନବାସ।
ସ୍ୱର୍ଗରେ ସୁରଗଣେ ବିଚାରନ୍ତି ବସି
ଆଜୁଁ ଚଉଦ ବରଷେ ରାବଣ ଯିବନାଶି।
ତହୁଁ ଶ୍ରୀରାମ ଲକ୍ଷ୍ମଣ ସୀତା ଘେନି
କଉଶଲ୍ୟା ପୁରରୁ ବାହାର ଜଣ ତିନି।
ଶ୍ରୀରାମ ବୋଇଲେ ଜାନକୀ ଗୋ ଶୁଣ
ଲକ୍ଷ୍ମଣଙ୍କ ସଙ୍ଗରେ ଚଳ ତୁମ୍ଭେ ପୁଣ।
ସୁମିତ୍ରାକୁ କହିଣ ଅନ୍ତଃପୁରକୁ ଯିବ
ଆମ୍ଭର ସାନ ବଧୂଙ୍କୁ କହିଣ ଆସିବ।
ଶୁଣିକରି ଜାନକୀ ଲକ୍ଷ୍ମଣ ଚଳିଗଲେ
ମାତାଙ୍କୁ ଶୀଘ୍ରରେ ଦରଶନ କଲେ।
ନମସ୍କାର କରିଣ ହେଲେ ଦୁହେଁ ଛିଡ଼ା
ବୋଇଲେ ଜାନକୀ ଗୋ ଘେନ ଆମ୍ଭ ପୀଡ଼ା।
ଦେଖିଣ ସୁମିତ୍ରା ଅନେକ ଶୋକକଲେ
କୋଳେ ବସାଇ ବଧୂ ମୁଖେ ଚୁମ୍ବ ଦେଲେ।
ବୋଇଲେ ମାଏ ଗୋ କୁଳକୁ ଉଦ୍ଧାରଣ
ମୋର ଶ୍ରୀରାମକୁ ମାନ ନକରିବୁ ପୁଣ।
ଲକ୍ଷ୍ମଣକୁ ସବୁ କହିବୁ କୁଶଳରେ
ଯାହା ତୁ ମାଗିବୁ ଦେବ ମୋହର କୁମରେ।
ଶ୍ରୀରାମକୁ କିଛି ନମାଗିବୁ ବଇଦେହୀ
ମାଗିଲେ ପ୍ରମାଦ ପଡ଼ିବ ତୋର ଦେହୀ।
ଏତେ କହି ପୁତ୍ରକୁ ବଧୂ ନେଲେ ଘର
ବସାଇ ଆଣିଲେ ଉର୍ମିଳା ଛାମୁର।
ଉର୍ମିଳା ଆସିଣ ନମସ୍କାର କଲେ
ଚରଣରେ ଗଡ଼ଘାଲି ଶୋଇଣ ଉଠିଲେ।
ଶୋକଭର ହୋଇଣ ବୋଇଲେ ଆରେ ବିହି
ଯୁବାକାଳେ ଏହାଙ୍କୁ ବନକୁ ଦେଲୁ କହି।
ନିର୍ଦ୍ଦୟ ଜନକୁ ତୁ ଏଥିରେ ରଖିଲୁ
ଭଲମନ୍ଦ କଥାକୁ ବିଚାର ନ କଲୁ।
ବୋଇଲେ ଠାକୁରାଣୀ ଯାଉଛ ବନ ପୁଣ
ଠାକୁରଙ୍କ ସଙ୍ଗରେ ନୋହିବ ବିମନ।
ମାତାପିତା ରାଣ ଯେ ଦେଉଅଛି ମୁହିଁ
କିଛି ନବୋଲିବ ଶ୍ରୀରାମଙ୍କୁ ତହିଁ।
ସୀତୟା ବୋଇଲେ ତୁହି ମୋର ବୋଲଶୁଣ
ତୋହର ସ୍ୱାମୀ ମୋ ସଙ୍ଗେ ଯାଉଛନ୍ତି ପୁଣ।
ତୁ ଯେବେ ମନଦୁଃଖ କରିବୁ ଉର୍ମିଳା
ତେବେ ଆମ୍ଭେ ନନେବୁ ଲକ୍ଷ୍ମଣଙ୍କୁ ପରା।
ଶୁଣି ଉର୍ମିଳା କହନ୍ତି ବଚନ
ତ୍ରୈଲୋକ୍ୟ ଠାକୁରାଣୀ କି କହୁଛ ପୁଣ।
ସେ ତୁମ୍ଭର ଦାସ ମୁଁ ତୁମ୍ଭର ଦାସୀ ପୁଣି
ଆମ୍ଭଠାରେ ଦୟାକର ତ୍ରୈଲୋକ୍ୟ ଠାକୁରାଣୀ
ଆମ୍ଭେ ଦୁଇଜଣ ତୁମ୍ଭ ଚରଣେ ଶରଣ
ଯେଣେ ଯିବ ତୁମ୍ଭେ ଆମ୍ଭେ ପଛଲୋକ ଜାଣ
ଶୁଣିକରି ଜାନକୀ ସନ୍ତୋଷ ହୋଇଲେ
କି ବର ମାଗୁଛ ମାଗ ମୋତେ ଭଲେ।
ଉର୍ମିଳା ବୋଇଲେ ମୁଁ ମାଗୁଛି ଦୁଇ ବର
ହେବି ଅପୁଷ୍ପକ ଯେ ଚଉଦ ବଷର।
ସ୍ୱାମିଙ୍କି ଦେଖିଲେ ମୁଁ ପୁଷ୍ପବତୀ ହେବି
ଶଉଚ ହୋଇଣ ସ୍ୱାମୀ ପାଶେ ଯିବି।

ଅପୁଷ୍ପକ ହୋଇଣ ମୁଁ ଶାଶୁଙ୍କ ପାଶେ ଥିବି
ଶାଶୁଙ୍କ ସେବାକରି ତୁମ୍ଭଙ୍କୁ ସୁମରିବି ।
ଆବର କଥାଏ ଯେ ମାଗୁଅଛି ମୁହିଁ
ମୋ ସ୍ୱାମୀଙ୍କି ସୁଦୟା କରିଥିବୁ ତୁହି ।
ସୁକୁମାର ପୁରୁଷ ଦିଅର ତୁମ୍ଭର
କ୍ଷମା କରୁଥିବ ସବୁ ଦୋଷକୁ ଆମ୍ଭର ।
ଏତେକହି ଉର୍ମିଳା ଚରଣେ ଶୋଇଲେ
ଲକ୍ଷ୍ମଣ ଆଜ୍ଞାଦେଲେ ରହ ତୁମ୍ଭେ ଭଲେ ।
ମାତାଙ୍କୁ ମୋହର ସେବା କରୁଥିବ
ସେ ଶୋକକଲେ ତାଙ୍କୁ ପ୍ରବୋଧି କହିବ ।
ଏତେ ବୋଲି ସୀତା ଧରି ଉର୍ମିଳାଙ୍କ କର
ଘେନିଣ ଚଳିଲେ କଉଶଲ୍ୟା ପୁର ।
ଉର୍ମିଳାଙ୍କୁ ଦେଲେ ସେ ଶାଶୁଙ୍କର କୋଳେ
ବୋଇଲେ ଏହାଙ୍କୁ ସେବାକରୁଥାଅ ଭଲେ ।
ମାତାମାନେ ଚାହିଁଲେ ତାହାଙ୍କର ମୁଖ
ଆହା ଦଇବ ଏହାଙ୍କୁ ଦେଲୁ ଏତେ ଦୁଃଖ ।
ଶ୍ରୀରାମଙ୍କ ପଛରେ ଲକ୍ଷ୍ମଣଙ୍କୁ ଦେଖି
ତାଙ୍କ ପଛେ ଦେଖିଲେ ସୀତା ଶଶୀମୁଖୀ ।
ମନେ ବିଚାରିଲେ ତିନି ଜଣ ବନେ ଯିବେ
ଅବିଚାର ପୁରରେ ଆଉ କିମ୍ପା ଥିବେ ।
ଶ୍ରୀରାମ କହନ୍ତି ବେନିକର ଯୋଡ଼ି
ଦିଅ ମୋତେ ପିତା ହେ ତପୋଧନ ଶାଢ଼ୀ ।
ଶୁଣିଣ ଦଶରଥ ତବଦ ହୋଇଲେ
ଭଣ୍ଡାରୁ କେକୟୀ ବସ୍ତ୍ର ବାଛିଣ ଆଣିଲେ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦୁଇ ଦୁଇ ଦେଇ
ସୀତାଙ୍କୁ ବେନି ବସ୍ତ୍ର ଦେଲେ ରାଣୀ ନେଇ ।
ରୁଦ୍ରାକ୍ଷର କୁଣ୍ଡଳ ତୁଳସୀ କାଠମାଳ
ଦେଖିଣ କୋପରେ ବୋଲେ ମହୀପାଳ ।
କିଲୋ କିଲୋ ପାମରୀ ତୋ ପାଷାଣରେ ହିୟା
ଏବେଳେ କେମନ୍ତେ ଦେଉଛୁ ଆଣି ଏହା ।
ଶ୍ରୀରାମ ବନଯାଉ ବୋଲିଣ ବୋଇଲୁ
ସୀତାଲକ୍ଷ୍ମଣଙ୍କୁମୋର କେମନ୍ତେ ଶାଢ଼ୀଦେଲୁ ।
ପୁଷ୍ପ ଅଳଙ୍କାର ପୁଛିଁଚାଦିଆ ମାଳ
ଏହା ଦେବାର ତୋର ଅଟେ ଅବେଭାର ।
ଶ୍ରୀରାମ ହେଲା ସିନା ତୋ ପୁତ୍ର ବଇରୀ
ସୀତା ତ ବୋଲୁନାହିଁ ହେବି ଦଣ୍ଡଧାରୀ ।

ଲକ୍ଷ୍ମଣ ତ ଅଲିଅଳ ଅଟେ ମୋର ସାନ
ରାଜା ହେବାକୁ ତାର କେବେହେଁ ନାହିଁମନ ।
ଏ ଦୁହେଁ ନଯାନ୍ତୁ ବନ ନ ବୋଇଲୁ ତୁହି
ଶ୍ରୀରାମଠାରେ ତୋର ଅହନ୍ତା ପରା ନାହିଁ ।
ଶ୍ରୀରାମକୁ ସିନା ଅଳଙ୍କାର ଦେଲୁ
ସୀତା ଲକ୍ଷ୍ମଣଙ୍କୁ ମୋର କିମ୍ପା ଏହା କଲୁ ।
ତିନିପୁରେ ଅକୀର୍ତ୍ତି ବିଚାର ତୋର ନାହିଁ
ମୋର ପ୍ରାଣ ନେବୁବୋଲି ବାଟ ଚାହିଁ ।
ସ୍ୱାମୀ ନାଶ କରିବାର ଦୋଷ ତୋତେ ହେବ
ଜୀବନ ଥିବାଯାକ ଦୁଃଖରେ ଦିନ ଯିବ ।
ମଲେ ତୋତେ ଅପଖ୍ୟାତି ନର୍କରେ ପଡ଼ିବୁ
ଶ୍ରୀରାମଚନ୍ଦ୍ର ଆସିଲେ ତୁ ସୁଖ ଲଭିବୁ ।
ଏ ତିନିଙ୍କି ନଦେଖିଲେ ମରିବି ନିଶ୍ଚେ ମୁହିଁ
ଶ୍ରୀରାମଙ୍କୁ ଚାହିଁଣ ବୋଲନ୍ତି ନୃପସାଇଁ ।
ତୁହି ହୋ ରଘୁନାଥ ନଯାଅ ବନଘୋର
ମୋହର ସତ୍ୟ ଗଲେ କି ଯାଏ ତୋହର ।
ଶ୍ରୀରାମଚନ୍ଦ୍ର ବୋଲନ୍ତି ପିତାଙ୍କ ବାଣୀ ଶୁଣି
ଏସନ କଥା କିମ୍ପା କହୁଛ ନୃପମଣି ।
ସତ୍ୟ ଯେବେ କଲ ପ୍ରଭୁ ମୋତେ ଭଲହୋଇ
ପିତାର ପାପରେ ତ ପୁତ୍ର ନାଶ ଯାଇ ।
ଋଣ କରିଥିଲେ ତ ପୁତ୍ରହିଁ ଶୁଝଇ
ପିତୃଋଣ ନଶୁଝିଲେ ନରକେ ପଡ଼ଇ ।
ସଗର ରାଜାର ପୁତ୍ର ପିତାର ବୋଲକଲେ
ସପତ ସାଗର ଖୋଳି କୂଳରେ ଉଭାହେଲେ ।
କପିଳଋଷିରେ ଦୋଷ ହେଲେ ସେହି ପୁଣ
ଦଗଧି ହେଲେ ଷାଠିଏ ସହସ୍ର ନନ୍ଦନ ।
ସେ ରାଜାର ଜ୍ୟେଷ୍ଠପୁତ୍ର ଗୋବିନ୍ଦ ନାମ ତାର
ତାର କୋଳେ ଜାତ ହେଲେ ଭଗୀରଥ ବୀର
ଗଙ୍ଗାକୁ ଆଣିଣ ପିତୃଙ୍କୁ ଉଦ୍ଧାରିଲେ
ଶୁଖିଲା ସାଗରକୁ ଜଳ ପୂର୍ଣ୍ଣ କଲେ ।
ଶିବରାଜା ଦାତା ହୋଇ ମାଂସ କାଟିଦେଲା
ସ୍ୱଦେହ ଘେନିଣ ସେ ସ୍ୱର୍ଗରେ ବସିଲା ।
ହରିଚନ୍ଦନ ଦାତାପଣ ସ୍ୱର୍ଗରେ ବିଖ୍ୟାତ
ଯାଗ କରି ଦକ୍ଷିଣା ଦେଲେ ବିଶ୍ୱାମିତ୍ର ।
ରାଜ୍ୟ ଧନ ଭଣ୍ଡାର ସକଳ ଛାଡ଼ିଲା
ପୁତ୍ର ଭାରିଯାକୁ ନେଇ ବିକ୍ରୟ କରିଦେଲା ।

ସ୍ୱଦେହ ଘେନିଣ ସେ ସ୍ୱର୍ଗକୁ ଚଳିଗଲେ
ପର୍ଶୁରାମ ପିତୃଋଣ ପୁଣିହିଁ ଶୁଝିଲେ ।
ଜନକ ସତ୍ୟକରି ଧନୁଯଜ୍ଞ କଲେ
ବଳିରାଜା ସତ୍ୟକରି ପାତାଳକୁ ଗଲେ ।
ମୁହିଁ କିମ୍ପା ନ ପାଳିବି ତୁମ୍ଭର ସତ୍ୟ ବ୍ରତ
ରାଜା ହେଲେ ମୋତେ ହେବ କି ଯଶ ତ ।
ଜାତ କଲା ଜନନୀ କିମ୍ପା ଅସନ୍ତୋଷ ହେବ
କାଳକୁ ଏ କଥା କିମ୍ପା ଅପଖ୍ୟାତି ହେବ ।
ମାତା ପିତା ସତ୍ୟ ପାଳିବି ପ୍ରମାଣ
ଏହି ସୂର୍ଯ୍ୟବଂଶର ମହିମା ବିଖ୍ୟାତେଣ ।
ଚଉଦ ବରଷ ମୁଁ ଯିବି ବନଘୋର
ଶାକ କନ୍ଦମୂଳ କରିବି ଆହାର ।
ଗିରି କନ୍ଦରେ ମୁଁ ରହିବି ଅପ୍ରମାଦେ
ଏ ତୁମ୍ଭ ଚରଣରେଣୁର ପରସାଦେ ।
ବହୁତ ଯଶ ମୋତେ ଅରଣ୍ୟରେ ହେବ
ଦୁଷ୍ଟଜନଙ୍କର ମୃତ୍ୟୁ ମୋ ହାତରେ ହେବ ।
ତୁମ୍ଭର ହସ୍ତେ ନାହିଁ ଦଇବ ଅଛି ଭ୍ୟାଇ
ମୋ ସଙ୍ଗେ କିମ୍ପା ଲକ୍ଷ୍ମଣ ଯାଉଛି ଗୋସାଇଁ ।
ମୁଁ ଅଇଲେ ଶୁଣିବ ଭଲ ମନ୍ଦ ପୁଣ
କିମ୍ପାଇଁ କାତର ହେଉଛ ନରରାଣ ।
ବାହୁଡ଼ି ଆସିଣ ତୁମ୍ଭଙ୍କୁ କରିବି ସେବା
କୁଶଳେ ଭୋ ତାତ ତୁମ୍ଭେ ରାଜ୍ୟ କରୁଥିବା ।
ଶୁଣିଣ ଦଶରଥ ସୁମନ୍ତ୍ରକୁ ଚାହିଁ
ରତ୍ନ ଅଳଙ୍କାର ଭଣ୍ଡାରୁ ଅଣାଇଁ ।
ବିବିଧ ଦେବାଙ୍ଗ ଚିତ୍ର ପାଟଶାଢ଼ୀ
ଘେନିଆସ ବୋଲିଣ ବୋଇଲେ ଦଣ୍ଡଧାରୀ ।
ଭ୍ରତ ରାଜା ହେଲେ ସିନା ହେବ ତା ଭଣ୍ଡାର
ରାଜା ଯେହୁ ଅଛି ନାହିଁକି ତା ଅଧିକାର ।
ଆଜ୍ଞା ପରମାଣରେ ଆଣିଲା ସୁମନ୍ତ
ଭଣ୍ଡାରରୁ ବାଛିଣ ଉତ୍ତମ ପାଟବସ୍ତ୍ର ।
ନୃପତିଙ୍କ ବଚନେ ସୀତୟାଙ୍କୁ ଦେଲା
ତତକ୍ଷଣେ ଦେବୀ ନେଇ ଆଭରଣ ହେଲା ।
ବାହାରେ ରତ୍ନ ଚୁଡ଼ି କରରେ କଙ୍କଣ
ଅଙ୍ଗୁଷ୍ଠିରେ ମୁଦ୍ରିକା ସୂର୍ଯ୍ୟର କିରଣ ।
ଭୁଜରେ ତାଡ଼ ଯେ ଶିକୁଳି ବିଦ ମୁଦି
କର୍ଣ୍ଣରେ ରତ୍ନକାପ କଟିରେ ମେଖଳାଟି ।

କଣ୍ଠରେ ରତ୍ନହାର ପଦରେ ପଦକ
ଶିରରେ ମୋତିମାଳି ବସଣୀଟି ନାକ ।
ଶ୍ରବଣ ଶିଖରେ ବେଗୁଲା ଚାରିଗୋଟି
ପୟରେ ପାହୁଡ଼ ନୁପୁର ପ୍ରବର୍ତ୍ତୀ ।
ଚରଣ ଅଙ୍ଗୁଳିରେ ଦିବ୍ୟ ରତ୍ନ ମୁଦି
କି ଜାଣି କିରଣ ବିଜୁଳି ଆଚ୍ଛାଦି ।
ଶୋଭାରେ ତ୍ରୈଲୋକ୍ୟ ମୋହିନୀ ସୀତାରୂପ
ଅଳଙ୍କାର ଲଗାନ୍ତେ ମୋହିଲେ ତିନି ରୂପ ।
କେ ତାକୁ ଶୋଭାପଣେ ପଟାନ୍ତର ହେବ
କୋଟିଚନ୍ଦ୍ରମା ଅସମରୂପକୁ ଅଭାବ ।
ସୀତାଙ୍କ ସ୍ୱରୂପ ଦେଖିଣ ଦଶରଥ
କପାଳରେ ନେଇଣ ମାରନ୍ତି ବେନି ହାତ ।
ବାବୁ ବିଧାତାରେ ସୀତାକୁ ଏହା କଲୁ
ମୋହର କୁଳବଧୂକୁ ବନରେ ବୁଲାଇଲୁ ।
ସୁମନ୍ତ୍ରଙ୍କୁ କହିଲେ ପାଟଶାଢ଼ୀ ଆଣ
ଶ୍ରେଷ୍ଠ କରି ଖଣ୍ଡିଏ ଦେଲାକ ନେଇ ପୁଣ ।
ଦଶରଥବୋଇଲେ ପତ୍ରଖଣ୍ଡେ ଦିଅ ଲେଖିକରି
ଲାଉଥାଳ ଗୋଟିକେ ସବୁ ବସ୍ତ୍ର ଭରି ।
ଦୁଇ ପୁଏ ପଛେ ମୋର ପିନ୍ଧନ୍ତୁ ବକଳ
କେମନ୍ତ ବଧୂ ଦେହ ହୋଇବ ମୁକୁଳ ।
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ଭଣ୍ଡାରକୁ ଗଲା
ଚଉଦ ବରଷକୁ ଲେଖିଣ ଶାଢ଼ୀଦେଲା ।
ତିନିଶ ଛତିଶ ଶାଢ଼ୀ ବାଛିକରି ନେଲା
ଲାଉଥାଳ ଗୋଟିକେ ସବୁ ପୂର୍ଣ୍ଣ କଲା ।
ଲକ୍ଷ୍ମଣଙ୍କ ହସ୍ତରେ ଦେଲେ ମନ୍ତ୍ରୀବର
ଦୁଇ ଭାଇଙ୍କି ଦେଲେ ରୁଦ୍ରାକ୍ଷର ମାଳ ।
କଷା ବସ୍ତ୍ର ଆଣି ଦୁଇ ଭାଇଙ୍କି ପୁଣ ଦେଲେ
ତୁଳସୀ କାଷ୍ଠମାଳା ଗଳାରେ ଲମ୍ବାଇଲେ ।
ପଦ୍ମ ପୁଷ୍ପରେ ମାଳ ଶୋଭେ ଗଣ୍ଡସ୍ଥଳେ
ଅଏଁଳା ଯେ ଲମ୍ବାଇ ତହିଁ ତଳେ ।
ହୃଦରେ ଲମ୍ବାଇଲେ ଯେମନ୍ତେ ଦୁଇଭାଇ
ରାଜପୁତ୍ର ବେଶ ତାଙ୍କ ହୃଦୟରୁ ଯାଇ ।
ବଶିଷ୍ଠଙ୍କ ବିଭୂତି କପାଳେ ଘେନି ଚିତା
ଯେମନ୍ତେ ଦିଶନ୍ତି ବ୍ରହ୍ମମୁନି ବେଟା ।
ରାଜବେଶ ଅଳଙ୍କାର ଅଙ୍ଗରେ ନାହିଁ କିଛି
ଶ୍ରୀରାମଙ୍କ ହସ୍ତରେ ବସା ମୁଦି ଅଛି ।

ଆପଣାର ମୁଦିରେ ବିନ୍ଧାଣୀ ଲେଖିଛି
ରାମ ସୀତା ରାମ ସୀତା ତହିଁରେ ଜଡ଼ିଛି ।
ଦୁଇ ଭାଇ ବେଶ ହୋଇ ଉଭାହେଲେ ଆସି
କରେ ଧନୁଶର ଧରି କଉଶଲ୍ୟା ଶିଷି ।
ଦେଖିଣ ଦଶରଥ ବୋଲନ୍ତି ସୁମନ୍ତ୍ରକୁ
ସାନ ଲାଉଥାଳ ଆଣି ଦିଅ ହେ ଏହାଙ୍କୁ ।
ବଡ଼ ଲାଉଥାଳ ସଙ୍ଗେ ପିତଳ ଆଟିକା
ତାଙ୍କୁ ସଜ କରିଦିଅ ସଙ୍ଗରେ ଖଟନ୍ତା ।
ଲକ୍ଷ୍ମଣ ବୀର ଭାର କରନ୍ତୁ ଏମାନ
ଶ୍ରୀରାମ ବୋହିନ୍ୟନ୍ତୁ ଧନୁଶର ପୁଣ ।
ବରଷକୁ ଲେଖି ମନ୍ତ୍ରୀ ସବୁଦ୍ରବ୍ୟ ଦେଲେ
ଲକ୍ଷ୍ମଣ ଖଣନ୍ତାରେ ସବୁ ଭାରକଲେ ।
ପିତାଙ୍କ ଚରଣେ ନମସ୍କାର କରି ପୁଣ
କୈକୟୀଙ୍କୁ ବିନୟୀ ହେଲେ ରାମରାଣ ।
ଭୋ ମାତ ଶୁଭରେ ରାଜ୍ୟ କରୁଥିବ
ବିମୁଖ ମନରେ ମୋତେ ନ ଦେଖିଲେ ହେବ
ଭ୍ରତକୁ ଆଣି ବେଗେ ଅଭିଷେକ କର
ପିତାଙ୍କଠାରେ ଭକ୍ତି ସମସ୍ତେ ତୁମ୍ଭେ କର ।
ପରଜାମାନେ ଦୁଃଖ ନପାନ୍ତି ଯେମନ୍ତେ
ରାଜ୍ୟ ପାଳି ରଖିବି ତେସନେକ ମତେ ।
ପାତ୍ର ମନ୍ତ୍ରୀ ଅମନାତ୍ୟ ସଙ୍ଗେ ଦ୍ୱନ୍ଦ ନକରିବ
ସପତଣୀର ସଙ୍ଗରେ କଳି ନ କରିବ ।
କୈକୟା ବୋଲନ୍ତି ବାବୁ ଶୁଣ ରଘୁନାଥ
ଦୈତ୍ୟମାରିବାକୁ ତୋତେ ଦେବେକଲେ ଜାତ
ଅଜୟ ଅସୁର ମାରି ଦେବଙ୍କୁ ସୁଖ ଦେବୁ
କାଳ ଯୁଗକୁ ବାବୁ କଥା ରୁହାଇବୁ ।
ଚଉଦ ବରଷ ଯେ ଯିବ କାଲିପରି
ଅଯୋଧାରେ ଆସି ପୁଣି ହେବୁ ଦଣ୍ଡଧାରୀ ।
ଦେବତା ନର ନାଗ ଅସୁର ବାନର
ତିନିପୁର ଲୋକ ଆସି ହେବେ ଠୁଳ ।
ଏ ବର ତୁମ୍ଭଙ୍କୁ ହେଉ ଯାଅ ରଘୁନାଥ
ତୁମ୍ଭର ସଙ୍ଗେ ଛନ୍ତି ଲକ୍ଷ୍ମଣ ନାମେ ଭ୍ରାତ ।
ଅଯୋଧାରେ ଆସିଣ ପ୍ରବେଶ ହୋଇବୁ
ତୁମ୍ଭଙ୍କୁ ଦେଖିଲେ ଆମ୍ଭେ ଉତ୍ସବ କରିବୁ ।
ଏତେ କହି କଇକୟା ରାମଙ୍କୁ ତିଆରିଲେ
ଶୁଣିକରି ରଘୁନାଥ ସନ୍ତୋଷ ହୋଇଲେ ।

ଏ କଥା ଶୁଣି ରାମ ଗଲେ ପିଠିଦେଇ
ଦଶରଥ ଦେଖି ଢ଼ଳି ପଡ଼ିଲେକ ମହୀ ।
ମୋ ରାମ କେଣେ ଗଲୁ ବୋଲି ଶୋକଲେ
ଉଚ୍ଚ ତରୁ ଛେଦନ ପରାଏ ପଡ଼ିଲେ ।
ଲେଉଟି ଶ୍ରୀରାମ ପିତାଙ୍କୁ ଧଇଲେକ ଟୋକି
ଅନ୍ତଃପୁର ଭିତରେ ପଡ଼େ ହାଲହୋଳି ।
ଦଶରଥ ବୋଲନ୍ତି ରାମଚନ୍ଦ୍ର ମୁଖ ଚାହିଁ
ତୋହର ସଙ୍ଗେ ବାବୁ ଯିବୁରେ ଗୋଡ଼ାଇ ।
ପ୍ରାଣ ହରାଇବି ବାବୁ ତୁହି ଏଥୁ ଗଲେ
ନିଶ୍ଚୟ ମରିବି ତୁ ଅନ୍ତର ହୋଇଲେ ।
ଶ୍ରୀରାମ ବୋଇଲେ ତାତ ଏକଥା ନଯୋଗାଇ
ଏତେ ବଡ଼ ରାଜ୍ୟ କିମ୍ପା ଦେଶାନ୍ତର ହୋଇ ।
ରାଜ୍ୟକୁ ସମ୍ଭାଳି ତୁମ୍ଭେ ଥିବ ମହୀପତି
ଲୋକେ ଯେଉଁପରି ନ ବୋଲିବେ ମନ୍ଦମତି ।
ଶ୍ରୀରାମର ବଚନ ଅମୃତ ପ୍ରାୟେ ମଣି
ସୁମନ୍ତ୍ରଙ୍କୁ ଚାହିଁଣ କହିଲେ ନୃପମଣି ।
ରଘୁନାଥ ସଙ୍ଗରେ ଭଣ୍ଡାର ଚଳିଯାଉ
ହସ୍ତୀ ଘୋଡ଼ା ପଦାତି ଗୋଟିଏ ନ ରହୁ ।
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ଯାଉ ମୋର ରଥ
ଏକା ହୋଇ ରାଜା ଏଥି ହେଉ ଯେ ଭରତ ।
ପାତ୍ର ଅମନାତ୍ୟ ସମସ୍ତେ ଯାନ୍ତୁ ପୁଣ
ବନ କନ୍ଦରରେ ଥାନ୍ତୁ ରାମ ସଙ୍ଗତେଣ ।
ଏ ବଚନ ଶୁଣିକରି ବୋଲନ୍ତି କୈକୟା
ଜାଣିଲି ନୃପମଣି ସବୁ ତୁମ୍ଭ ମାୟା ।
ଏମନ୍ତ ସତ୍ୟ ତୁମ୍ଭେ କଲ ମହୀପତି
ଶ୍ରୀରାମ ସଙ୍ଗେ କିମ୍ପା ଯିବେ ଘୋଡ଼ା ହାତୀ ।
ଧନ ଭଣ୍ଡାର ଯେ ପାତ୍ର ଅମନାତ୍ୟ
ରାଜ୍ୟ ଛାଡ଼ି କିମ୍ପା ଯିବେ ସେ ବନସ୍ତ ।
ଭ୍ରତ ଏଥିରେ ରାଜା ହୋଇବ କାହା ଘେନି
ସତ୍ୟ ତୁମ୍ଭେ କେମନ୍ତେ କଲ ନୃପମଣି ।
ଶ୍ରୀରାମ ଏକା ହୋଇ ବନକୁ ଚଳିଯିବ
ଗଛର ବକଳ ପିନ୍ଧି ଫଳହି ଖାଇବ ।
ଚଉଦ ବରଷ ରାମ ନ ମାଡ଼ିବେ ଦେଶ
ଅରଣ୍ୟରେ ରହି କରିବ ବନବାସ ।
ଏହାଶୁଣି ଦଶରଥ ହୋଇଲେକ ତୁନୀ
ଶ୍ରୀରାମ ଉଠିଲେ ଧନୁଶର ଘେନି ।

ନଗରୁ ବାହାର ହୋଇ ଗଲେ ତିନିଜଣ
ସୁମନ୍ତ୍ର ରଥ ଯେ ଆଣିଲା ତତକ୍ଷଣ ।
ରଥୁବର ପରେ ରାମ ଲକ୍ଷ୍ମଣ ସୀତା ବସି
ସିଂହଦ୍ୱାରରୁ ରଥ ବାହାର ହୋଇଆସି ।
ଦେଖିଲା ନଗ୍ରଲୋକେ କରନ୍ତି ବିଚାର
ତପସ୍ୱୀ ବେଶ ତ ଦିଶେ ଏହାଙ୍କର ।
ରାଜ୍ୟରେ ଅଭିଷେକ ନୋହିଲେ ରଘୁପତି
କେଉଁ ବିପରୀତ ଉପୁଜିଲା ତଥି ।
ଏମନ୍ତେ ଅନ୍ତଃପୁରେ ଶୁଭିଲା ବୋବାଳି
ଆକୁଳ ଶବଦରେ ସାଗର ଉଛୁଳି ।
ଶ୍ରୀରାମ ପଛେ ଗୋଡ଼ାଇ କାନ୍ଦନ୍ତି ଦଶରଥ
କଉଶଲ୍ୟା ରାଣୀ ସଙ୍ଗେ ସର୍ବରାଣୀଯୂଥ ।
ପାତ୍ର ଅମନାତ୍ୟ ମନ୍ତ୍ରୀଗଣମାନେ
ନେତ୍ରରୁ ଅଶ୍ରୁଜଳ ବହୁଛି ଘନଘନେ ।
ଦେଖଣାହାରୀମାନେ କରନ୍ତି ହାହାକାର ।
ରାଜପଣ ଛାଡ଼ି କିମ୍ପା ବନକୁ ବାହାର ।
କେ ବୋଲଇ କୈକୟା ଏମନ୍ତ ଭିଆଇଲା
ପୁତ୍ରକୁ ରାଜାକରି ରାମକୁ ବନକୁ ପେଷିଲା ।
ରାଜା ସତ୍ୟକରି ଦେଲେ ହୋଇ ସ୍ତିରୀବଶ
ଏଥୁଅନନ୍ତରେ ଗୌରୀ ଶୁଣ ଦିବ୍ୟ ରସ ।
ରଥପରେ ବିଜେ କରିଛନ୍ତି ରାମଦେବ
ବୋଇଲେ କର୍ମକୁ ବାମ ହୋଇଲା ଦଇବ ।
ଜାନକୀ ବସିଣ ଅଛନ୍ତି ମଥାପୋତି
ଶ୍ରୀରାମଙ୍କୁ ପଛରେ ଲକ୍ଷ୍ମଣ ବସିଛନ୍ତି ।
ସୁମନ୍ତ୍ର ରଥୁବର ବହେ ଧୀରେ ଧୀରେ
ନଗ୍ରନରନାରୀ ଦେଖି କାନ୍ଦନ୍ତି ବିକଳେ ।
ଆହା ରାମ ବୋଲିଣ ଗୋଡ଼ାଇ କାନ୍ଦୁଛନ୍ତି
ରାମ ବନ ଯିବାରୁ ରୋଦନ କରନ୍ତି ।
ରଥର ଚଉପାଶେ ବେଢ଼ିଲେ ସକଳ
ଶ୍ରୀରାମଙ୍କ ମୁଖଚାହିଁ ହୁଅନ୍ତି ବିକଳ ।
ବାବୁ ରଘୁନାଥ ତୁମ୍ଭେ ମୋହନ ମୁରତି ।
ଶ୍ୟାମଳ ମର୍କତ ପରି ଶରୀର ଦିବ୍ୟ ଜ୍ୟୋତି ।
ଅଯୋଧ୍ୟାରେ ନୃପତି ପଣକୁ ଭାଜନ
ତୁମ୍ଭଙ୍କୁ କେମନ୍ତେ ବିହି ପେଷେ ଘୋରବନ ।
ଏତେ ଅବିଚାର ସିନା କୟେକୟା କଲେ
ଏହା ସେ ବିଧାତା କପାଳେ ଲିହିଥିଲେ ।

ବାଳ ବୃଦ୍ଧା ଯୁବତୀ ପୁରୁଷ ନାନାଜାତି
ଶ୍ରୀରାମଙ୍କ ଚଉପାଶେ ରୋଦନ କରନ୍ତି ।
ହାହାକାର ଧ୍ୱନି ପୁଣି ଗଗନ ପୂରଇ
ଶ୍ରୀରାମ ଯାନ୍ତେ ବନ ସର୍ବ ଦେହ ଭଲ୍ଲୁ ସଇ ।
ମର୍ତ୍ତ୍ୟପୁର ପାତାଳେ କି ପଡ଼ିଗଲା ଯାଇ
ପାତାଳ ମର୍ତ୍ତ୍ୟପୁରକୁ କିବା ଅଇଲଇଁ ।
ସୃଷ୍ଟି ନାଶ ଯିବା କି ପ୍ରଳୟ କାଳ ହୋଇ
ସପତ ସମୁଦ୍ର କି ଘୋଟି ଆସେ ମହୀ ।
ସୂର୍ଯ୍ୟ ଯେ ନଚଳନ୍ତି ନବ ହେ ପବନ
ବିଷାଦ ହୋଇଣ ଭାଳନ୍ତି ସର୍ବଜନ ।
ରାଜାଙ୍କୁ ଦେଖି ନିନ୍ଦା କରନ୍ତି ନରନାରୀ
କିମ୍ପାଇଁ ସତ୍ୟଭଗ୍ନ ହେଲେ ଦଣ୍ଡଧାରୀ ।
ରାମଙ୍କୁ ରାଜ୍ୟଦେବି ଆଗେ ସତ୍ୟକଲ
ରାଣୀ ବଚନେ ରାମଙ୍କୁ ବନକୁ ପେଷିଲ ।
ଏକେ କିମ୍ପା ରୋଦନ କରି ଗୋଡ଼ାଇ ଆସଇ
ଶ୍ରୀରାମପରା ପୁତ୍ରକୁ ବନକୁ ପେଷିଦେଇ ।
ଧିକ ଧିକ ରାଜା ଧିକ କୈକୟୀ ରାଣୀ
ଏତେ କୃଟେ ପୁତ୍ରକୁ କରିବ ନୃପମଣି ।
ଶ୍ରୀରାମକୁ ବନବାସ ଦେଇ ଦେଲ ଦୁଃଖ
ଏକା ଅଯୋଧ୍ୟାରେ ଯେ ପାଇବ ବଡ଼ସୁଖ ।
ରାଜନ ନ ବୁଝିଲେ ସ୍ତିରୀ ବଶ ହୋଇ
ପାତ୍ରମନ୍ତ୍ରୀଙ୍କର ଜ୍ଞାନ ଗୋଚର କିଛି ନାହିଁ ।
ରାଜ୍ୟରୁ ରାମଙ୍କୁ କଲେ ସେ ବାହାର
ଅମନାତ୍ୟଗଣ ଯେ ହୋଇଲେ କାତର ।
ପୋଡୁ ପୋଡୁ ଏଥିରେ ନଥିବା ଘରକରି
ଅବିଚାର ପୁରେ କେ ଦିନ ନେଇପାରି ।
ଲୋକଙ୍କର ବିକଳ ଦେଖିଣ ରଘୁନାଥ
ଆପେ ଉଠି ଆସିଣ କରନ୍ତି ପ୍ରବୋଧିତ ।
ବୋଇଲେ ବାହୁଡ଼ି ଯାଅ ସର୍ବନରନାରୀ
ଅଯୋଧ୍ୟାରେ ଭ୍ରତକୁ କରିବ ଦଣ୍ଡଧାରୀ ।
ସେ ରାଜ୍ୟ ପାଳିବାର ଅଟଇ ବିଧାନ
ଏହା ଶୁଣି ନରନାରୀ କରନ୍ତି ରୋଦନ ।
ତୁମ୍ଭେ ଛାଡ଼ି ଆମ୍ଭଙ୍କୁ ଯାଉଛ ପ୍ରାଣଧନ
ଭ୍ରତଠାରେ ଆମ୍ଭର ତ ନରୁଚଇ ମନ ।
କାହିଁକି ଅଯୋଧ୍ୟା ଯିବୁ ସେବିବୁ ଚରଣ
ଏହା ଶୁଣି ବିଳାପ କରନ୍ତି ରଘୁନାନ ।

ମୁହିଁ ଭାଙ୍ଗି ନ ପାରିବି ପିତାଙ୍କର ସତ୍ୟ
ଚଉଦ ବରଷ ବନେ ଯିବଇଁ ନିୟତ ।
ତୁମ୍ଭେ ବାହୁଡ଼ି ଯାଅ ସମସ୍ତେ ଯେଝାପୁର
କିମ୍ପାଇଁ ଦୁଃଖ ପାଇ ଆସୁଛ ସଙ୍ଗର ।
ଲେଉଟି ଯାଅ ମୁଁ ଦେଉଛି ଆଦେଶ
ଖଟିଥିବ ସମସ୍ତେ ଭ୍ରତରାଜା ପାଶ ।
ପୁଣି ଗୋଡ଼ାଇଣ ବୋଲନ୍ତି ନରନାରୀ
ତୁମ୍ଭ ଦୁଇ ଭାଇଙ୍କର ହିଂସା ନାହିଁ ପୂରି ।
ତୁମ୍ଭେ ବୋଲ ଆମ୍ଭେ ଯେ ବନକୁ ନଯିବୁ
କୈକୟାକୁ ଆମ୍ଭେ ଯାଇ ବାହାର କରିଦେବୁ
ଶ୍ରୀରାମ ବୋଇଲେ ଶୁଣ ହେ ଜନ ପ୍ରଜା
ପିତାଙ୍କ ସତ୍ୟ ଭାଙ୍ଗ କେବେ ନୁହେ ରାଜା ।
ନାରୀମାନେ କହନ୍ତି ଶୁଣ ହେ ରଘୁରାଣ
ସୀତୟା କେମନ୍ତେ ସହିବେ କଷଣ ।
ସୀତା ଅଇଲା ଦିନୁ ଆମ୍ଭର ଦୁଃଖ ନାହିଁ
ପରମଲକ୍ଷ୍ମୀ ଠାକୁରାଣୀ ଅନ୍ନ ବସ୍ତ୍ର ଦେଇ ।
ଏତେ କହି ରୋଦନ କରନ୍ତି ସର୍ବଜନ
କେଣେ ଛାଡ଼ି ଯାଉଛ ଆମ୍ଭଙ୍କୁ ତିନିଜଣ ।
ରୋଦନ ଶୁଣି ରାମ ରଥରୁ ଓହ୍ଲାଇଲେ
ନର ନାରୀମାନଙ୍କୁ ବୁଝାଇ କହିଲେ ।
ବୋଇଲେ ଚଉଦ ବରଷ ଯିବ କାଲି
ସତ୍ୟ ପାଳିଣ ଆମ୍ଭେ ଆସିବୁ ନିଜପୁରୀ ।
ଧର୍ମକୁ ଚାହିଁ ଆମ୍ଭେ କରୁଛୁ ନିୟମ
ବନକୁ ଯାଇ ମୁଁ ଯେ ନକରେ ରାଜା ଧର୍ମ ।
ଏଥର ଫେରିଯାଅ ତୁମ୍ଭେ ନିଜ ଘର
ଆରଥର ସଙ୍ଗରେ ଯିବଟି ମୋହର ।
ପ୍ରବୋଧନା କରି ଯାଇ ରଥରେ ବିଜେକଲେ
ନର ନାରୀ ଚାହିଁଣ ରାମ ରାମ ବୋଲେ ।
ଦର୍ପଣ ଛାଇର ପ୍ରାୟେ ଦିଶେ ରାମ ମୁଖ
ଗିରି କନ୍ଦର ବୁଲି ପାଇବ ବଡ଼ ଦୁଃଖ ।
ମର୍କତ ରସାଣିଲା ପ୍ରାୟେକ ଦେହ ଝଳି
ଯଉବନର ପରେ ସୀତାର ମଝା ତଳି ।
ଶୁଣରେ ଗୁଣନିଧି ଅଟଇ ସୁନ୍ଦରୀ
ବିଧାତା ଗଢ଼ିଛି ବସି ଏତେ ଯତ୍ନକରି ।
ଏଡ଼େ ଲୋକକୁ ବିଧାତା କେଡ଼େ କଷ୍ଟ ଦେଲା
ଜନକ ତ ଭାଗ୍ୟବନ୍ତ ସୀତାଙ୍କୁ ଜାତ କଲା ।

ଲୋକଙ୍କର ଆକୁଳ ଜାଣିଣ ରଘୁମଣି
ବାହୁଡ଼ି ଯାଅ ତୁମ୍ଭେ ବୋଲନ୍ତି ତାଙ୍କୁ ପୁଣି ।
ପୁଣି ଛାଡ଼ି ନଦେବେ କେବେହେଁ ସେ ରଥ
ମୁଖକୁ ଚାହିଁ ରୋଦନ କରନ୍ତି ସମସ୍ତ ।
ବାଜପୋଇ ଯାଗ ଯେ କଲେ ବିପ୍ରମାନେ
ଶ୍ରୀରାମ ଗମନ ପଥେ ଗୋଡ଼ାନ୍ତି ସେମାନେ ।
ଦଶରଥ ରାଜା ଥୋକାଏ ଦୂର ଗଲେ
ବଶିଷ୍ଠ ଋଷି ତାଙ୍କୁ ଲେଉଟାଇ ନେଲେ ।
ଶ୍ରୀରାମଚନ୍ଦ୍ର ବୋଇଲେ ଶୁଣ ମନ୍ତ୍ରୀବର
ବେଗକରି ରଥ ତୁମ୍ଭେ ବାହା ହେ ସତ୍ୱର ।
ନିରାଶ ହୋଇଣ ସର୍ବେ ଯାଆନ୍ତୁ ସେ ଘର
ଶୁଣି ରଥ ବାହିଲେ ସୁମନ୍ତ ମନ୍ତ୍ରୀବର ।
କୌଶଲ୍ୟା ସୁମିତ୍ରା ସକଳ ମାତା ମିଳି
ଗୋଡ଼ାଇ ଆସିଥିଲେ ହୋଇଣ ବିକଳି ।
ମୁଦୁସୁଲୀମାନେ ତାଙ୍କୁ ଲେଉଟାଇ ନେଲେ
ପ୍ରବୋଧନା କରି ଯେ ଯାହା ପୁରେ ମିଳିଲେ
ନଗ୍ରର ନରନାରୀ ଅଛନ୍ତି ଗୋଡ଼ାଇ
ଶ୍ରୀରାମ ତାଙ୍କୁ ପ୍ରବୋଧନା କରି କହି ।
ଏଣେ ଦଶରଥ ରାଜା ନ ଭୁଞ୍ଜିଲେ ଅନ୍ନ
ରତ୍ନ ପଲ୍ୟଙ୍କରେ କରିଲେ ଶୟନ ।
ଅଯୋଧ୍ୟାରୁ ଶ୍ରୀରାମ ବାହାର ହୋଇଗଲେ
ତମସା ନଦୀ କୂଳେ ପ୍ରବେଶ ହୋଇଲେ ।
ନଗ୍ରର ନର ନାରୀ ଅଛନ୍ତି ଗୋଡ଼ାଇ
ଶ୍ରୀରାମ ବୋଲନ୍ତି ତାହାଙ୍କ ମୁଖ ଚାହିଁ ।
ରବି ଚଳିଗଲେ ବୁଡ଼ିଲାକ ବେଳ
ଭୋକରେ କାନ୍ଦୁଥିବେ ତୁମ୍ଭର ଦୁଲାଳ ।
ରାତ୍ରକାଳେ କେମନ୍ତେ ବାଟ ଚାଲିଯିବ
ଝାଡ଼ବାଡ଼ ବାଟେ ଶଙ୍କା ଯେ କରିବ ।
ଶୁଣିକରି ଲୋକେ ବୋଇଲେ ଯେ ତହିଁ
ତୁମ୍ଭ ସଙ୍ଗେ ଆମ୍ଭେ ଯିବୁ ଯେ ଗୋଡ଼ାଇ ।
ତୁମ୍ଭଙ୍କୁ ଛାଡ଼ି ଯାଇ କରିବୁ ଆମ୍ଭେ କିସ
ତୁମ୍ଭେ ଅଯୋଧ୍ୟାକୁ ଚାଲ ଯିବା ରଘୁଶିଷ୍ୟ ।
ତୁମ୍ଭ ରଥ ଆଗେ ଗଲେ ଆମ୍ଭେ ପଛେ ଯିବୁ
ଅଯୋଧ୍ୟାରେ ସମସ୍ତେ ତୁମ୍ଭଙ୍କୁ ଦେଖୁଥିବୁ ।
ଶ୍ରୀରାମଙ୍କ ବୋଲ ଯହୁଁ ନକଲେ ନରନାରୀ
ଲକ୍ଷ୍ମଣେ କହିଲେ ପ୍ରଭୁ ଚାପଧାରୀ ।

ତୁ ଯାଇ ସୌମିତ୍ର ତୃଣ କାଟିଆଣ
ମୋତେ ନିଦ୍ରା ମାଡୁଅଛି କରିବି ଶୟନ ।
ଆଜ୍ଞା ପାଇକରି ସୁମିତ୍ରା ସୁତ ଗଲେ
ତିରଣ ଛେଦନ କରି ଘେନିଣ ଅଇଲେ ।
ଆପେ ବୋହିଆଣି ସଜାଇଲେ ଶେଜ
ତହିଁପରେ ଶୟନ କଲେ ରାମରାଜ ।
ଅଯୋଧ୍ୟାର ନରନାରୀ ଦେଖିଣ କାନ୍ଦନ୍ତି
ଭୋ ଦଇବ ବିଧାତା କଲୁ ଏଡ଼େ ରୀତି ।
ରାଜାର କୁମର ହୋଇ ଏ ଦୁଃଖ ପାଇଲେ
ତୃଣ ଗୁଡ଼ିକ ଆଣିଣ ସେଥିରେ ଶୋଇଲେ ।
ଅଯୋଧ୍ୟାରେ କୌଶଲ୍ୟା କରୁଥିବେ ରୋଦନ
ବାବୁ ଶ୍ରୀରାମ ମୋର ପ୍ରାଣର ଜୀବନ ।
ହଂସୂଳି ତୂଳିରେ ତୋତେ ନିଦ ନ ମାଡ଼ଇ
ଆଜ ରଜନୀରେ ଶୋଇଥିବୁ କାହିଁ ।
ଆକାଶର ଚନ୍ଦ୍ର ତ ତୋତେ ହେବ ସାହା
ଏହିକଥା ଦଇବ କରିଲା ତୋତେ ଏହା ।
ସୁପକ୍ୱ ଆହାରରେ ନୋହୁ ତୁ ତୃପତି
କିସ ଖାଇଣ ପିଣ୍ଡ କରିବୁ ତୃପତି ।
ଗନ୍ଧଚନ୍ଦନ ତୁ ଘେନୁ ଅନୁକ୍ଷଣ
ଶ୍ରୀଅଙ୍ଗରେ ଏବେ କିସ କରିବୁ ଲେପନ ।
ଏଥିରେ ଥିଲେ ତୋତେ ଶତେପାଟ ଟେରା
ଚଉକତିରେ କାମିନୀ ଜଗନ୍ତି ପହରା ।
ଏବେ ବନ ଘୋରେ କେହୁ ଜଗିବ ପାହାରି
ଦଶଦିଗ ମୋତେରେ ଦିଶେ ଅନ୍ଧପୁରୀ ।
ଦୀପ ଦିହୁଡ଼ି ତୋତେ ହେବେ ଚନ୍ଦ୍ର ତାରା
ଧନୁରେ ଧରି ବସିବ ସୁମିତ୍ରାର ବଳା ।
କର୍ପୂର ତାମ୍ବୁଳ ଛାଡ଼ି ହରିଡ଼ା ଖାଇବୁ
ବନ୍ଧୁ ସୋଦର ମୁନିମାନଙ୍କୁ କରିବୁ ।
ଶ୍ରୀରାମଲକ୍ଷ୍ମଣ ସଙ୍ଗରେ ନଥିବେଯେତେବେଳେ
ଜାନକୀ ଦୁଃଖିତ ହୋଇ ବସିବେ ସେ କାଳେ
ଋଷିର ନନ୍ଦିନୀ ରାଜାର କୁଳବଧୂ
ରାମ ପାଟରାଣୀ ସକଳ ଗୁଣେ ସାଧୁ ।
ଏହାକୁ ତ ଦଇବ ଦୁଃଖ ଦେଲା ନେଇ
ଏତେବୋଲି କଉଶଲ୍ୟା ଶୋକଭର ହୋଇ ।
ଲକ୍ଷ୍ମଣକୁ ସୁମରି କାନ୍ଦନ୍ତି ପୁଣ ପୁଣି
ଧନ୍ୟ ଧନ୍ୟ ସଉମିତ୍ର କ୍ଷତ୍ରୀ ବୀରମଣି ।

ଦୁଃଖକାଳେ ଭାଇକିରେ ସଖା ହୋଇ ଗଲୁ
ସୋଦର ଗୁଣ ସିନା ତୁହି ବାବୁ କଲୁ ।
ତୋର ମହାଦେଈ ଅଟେ ଉର୍ମିଳା ଯେ ପୁଣ
ଶୁଦ୍ଧମନେ ମୋତେ ଏବେ ଦେଲୁ ଜାଣ ।
ସେହି ସିନା ସାହା ହେଲା ମୋ ପୁତ୍ରକୁ ଏବେ
ବଇଦେହୀ ଦୁଃଖ କି ପାସୋର ହେବ ଏବେ ।
କଉଶଲ୍ୟା ରୋଦନ୍ତେ ସୁମିତ୍ରା ଶୋକକଲେ
ଆଉ ମାତାମାନେ ଯେ ରୋଦନ କରିଲେ ।
ସାତଶ ପଞ୍ଚାଶ ଅଟନ୍ତି ମହାଦେଈ
ଜଣକେ ପରିବାରୀ ଶତେ ଶତେ ହୋଇ ।
ସମସ୍ତେ ରୋଦନ କରନ୍ତି ହୋଇ ମେଳି
କେଣେ ଛାଡ଼ିଗଲୁ ଗୋ ଋଷିର ଦୁଲାଳୀ ।
ଅଳପ ଦିନ ଏବେ ଆସିବାର ତୋର
ଶାଶୁ ବୋଲି ଚିହ୍ନିନାହୁଁ କାହାକୁ କରି ସାର
ସାତଶ ପଞ୍ଚାଶ ଘରେ ବୁଲୁ ପ୍ରତିଦିନ
ଓଳଗି ହେଉ ଆସି ତିନିପ୍ରହର ପୁଣ ।
ତୋତେ ଦେଖିଲେ ଆମ୍ଭେ ମନେ ହେଉ ସୁଖୀ
ଏବେ ଲୁଚାଇଲୁ ଚନ୍ଦ୍ରମା ମୁଖଟି ।
ଚଉଦ ବର୍ଷ ଯାଏ ଆମ୍ଭେମାନେ କି ଥିବୁ
ବନସ୍ତରୁ ଅଇଲେ ତୋ ମୁଖକୁ ଚାହିଁବୁ ।
ଅରଣ୍ୟରେ ବୁଲି ବୁଲି ହୋଇବୁ ତୁ କଳା
ମାଗିଲା ନାରୀ ପ୍ରାୟେ ହୋଇବୁ ତୁ ପରା ।
କେହୁ ତୋର ମୁଣ୍ଡ ବାନ୍ଧି ଜୁଡ଼ା ସଜାଡ଼ିବ
ଚନ୍ଦନ ହଳଦୀ କେ ଅଙ୍ଗରେ ବୋଳିବ ।
ସିନ୍ଦୁର କଜ୍ଜ୍ୱଳ କେ ରଞ୍ଜିବ ବସିଟି
ବସିବାଠାରୁ କେ ମଣାଇ ନେବଟି ।
ଖାଇବାର ସୁଖ ତୋର ଆଜିଠାରୁ ଗଲା
ଚନ୍ଦ୍ରମା ମୁଖ ଗୋଟି ସ୍ୱପନ ଏବେ ହେଲା ।
ଏତେ ବୋଲି ରୋଦନ କରନ୍ତି ସକଳେ
ସମୁଦ୍ର ଗର୍ଜନ କି ଶୁଭେ ରାଜପୁରେ ।
ଦାସୀ ପରିବାରୀ ସମସ୍ତେ କଲେ ଶୋକ
ଅଯୋଧ୍ୟା ନଗ୍ରଯାକ ସମସ୍ତେ ବିମୁଖ ।
ସେ ରାଜ୍ୟରେ ନରନାରୀ ଯେତେକ ଯେ ଥିଲେ
ସମସ୍ତେ ଶୋକଭରେ ମନରେ ଦୁଃଖୀ ହେଲେ
ଏଥୁଅନନ୍ତରେ ଶୁଣ ଦେବୀ ଉମା
ଅପୂର୍ବ କଥା ଗୋଟି ଶ୍ରୀରାମ ମହିମା ।

ଏମାନଙ୍କ ଶୋକ ଦେଖି ବୋଲନ୍ତି କୈକୟୀ
କେବଣ ତାର ହୃଦୟରେ ପୂରିଅଛି ମାୟା ।
ଲୋକାଚାରକୁ ପୁଣ କରଇ ରୋଦନ
ମନ୍ଥଡ଼ୀର ଆନନ୍ଦ କେ କହିବ ପୁଣ ।
ସେହିଦିନଠାରୁ ରାଜା ଛାଡ଼ିଦେଲେ ଅନ୍ନ
ବଡ଼ ଦୁଃଖେ ପବନ କରନ୍ତି ଭୋଜନ ।
ଏଥୁଅନନ୍ତରେ ତମସାନଦୀ କୂଳେ
ତିରଣ ପାଡ଼ିଣ ଶୋଇଲେ ରଘୁବାଳେ ।
ପତର ପାଡ଼ି ଶୋଇଲେ ରାଜାର କୁଳବଧୂ
ଲକ୍ଷ୍ମଣ ଜଗି ବସିଲେ ଘେନି ଶର ସିନ୍ଧୁ ।
ଥୋକାଏକ ବେଳେ ସେ ଉଠିଲେ କ୍ଷୁଧାପାଇ
ତିନିଜଣ ଜଳପାନ ଆହାର କଲେ ଯାଇ ।
ବାହାଡ଼ି ଆସିଣ ଶୋଇଲେ ଶେଜପାଡ଼ି
ଲୋକେ ନିଦ ଗଲେ ବନ ପାହାଡ଼ ପଥ ମାଡ଼ି
ଅରଣ୍ୟରେ ଜୀବଜନ୍ତୁ କରନ୍ତି ଶବଦ
ଶୁଣିଣ ଜାନକୀ ହୋଇଲେ ତବଦ ।
ଶ୍ରୀରାମଙ୍କୁ ପଚାରନ୍ତି ଆହେ ପ୍ରାଣନାହା
ଶବଦମାନ ଶୁଭଇ କିସ ପୁଣି ଏହା ।
ରାଘବ ବୋଲନ୍ତି ସଖୀ ଏହା ତୁ ନ ଜାଣୁ
ଅଯୋଧ୍ୟା ବନସ୍ତକୁ ଏକା ପ୍ରାୟେ ମଣୁ ।
ଏ ବନ ଗହନ ପର୍ବତ ଲତା ଘୋର
ଏଥିରେ ଅକଳଣା ଜନ୍ତୁଙ୍କ ଚିତ୍କାର ।
ଘୋଡ଼ାଙ୍କର ହ୍ରେସାରବ ହସ୍ତୀଙ୍କ ଗର୍ଜନ
ଏଣିକି ପ୍ରାଣସହୀ ଶୁଣିବୁ ଏସନ ।
ମୋହର ବୋଲେ ତୁ ନକଲୁ ପ୍ରାଣସହୀ
ଖାଲଟିକର ପଥ ନ ପାରିବୁ ଯାଇ ।
ତୋହର ଯୋଗୁଁ ଦୁଃଖ ଭୋଗିବଇଁ ମୁହିଁ
ବ୍ୟାଘ୍ର ଭାଲୁ ସିଂହ ଯେ ଦେଖିବୁ ବଇଦେହୀ ।
ଦେଶ ନ ଚିହ୍ନିବୁ ନ ଚିହ୍ନିବୁ ପରଆତ୍ମା
ଏକଥା ଭିଆଇଲେ କଇକୟୀମାତା ।
ଏତେ ବୋଲି ଶ୍ରୀରାମ ବିସ୍ମୟ ମୁଖ ହୋଇ
ଶଯ୍ୟା ଛାଡ଼ିଣ ଉଠିଲେ ରଘୁକୁଳ ସାଇଁ ।
ସୁମନ୍ତ ମନ୍ତ୍ରୀଙ୍କୁ ହକାରି ବେଗକରି
ବୋଇଲେ ଅର୍ଦ୍ଧେକ ତ ହୋଇଲା ତିମିରି ।
ଲୋକେ ନ ଜାଣିବେ ଯିବ ତୁନୀ ହୋଇ
ନୋହିଲେ ସମସ୍ତେ ଯିବେଟି ଗୋଡ଼ାଇ ।

ସୁମନ୍ତ ବୋଇଲେ ତୁମ୍ଭର ବିଚାର
ଯାହା ଯୋଗାଏ ସେ କଥା କର ରଘୁବୀର ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଆଣ ରଥ ସାଜି
ତକ୍ଷଣରେ ସୁମନ୍ତ ଯୋଚିଲା ଚାରିବାଜି ।
ରାମ ଲକ୍ଷ୍ମଣ ସୀତା ଅଟନ୍ତି ତିନିଜଣ
ରଥରେ ବସିଲେ ସେ ହୋଇ ବିରସେଣ ।
ନଦୀ ପାରି ହୋଇଲେ ଥୋକେ ଦୂର ଗଲେ
ଅଯୋଧ୍ୟା ଆଡ଼କୁ ରଥ ଲେଉଟି ବାହିଲେ ।
ନିଦରେ ଅଚେତନ ସକଳ ନର ନାରୀ
ନିଶି ଅନ୍ଧାରରେ ଚଉଦ ଦିଗ ପୂରି ।
ତମସାନଦୀରେ ପଶିଲାକ ରଥ
ସୁମନ୍ତକୁ ଚାହିଁଣ ପୁଚ୍ଛନ୍ତି ରଘୁନାଥ ।
ବୋଲନ୍ତି ପାଣି ଭିତରେ ବୁହାଇ ନେବାଯାନ
ଆନଦିଗେ ରଥ ଚାଳି ଲୋକ ବହନ ।
ଜାଣିଲେ ସକଳ ଲୋକେ ଗୋଡ଼ାଇ ଆସିବେ
ଘରଦ୍ୱାର ଛାଡ଼ିଣ ବିପିନେ ପଶିବେ ।
ଶ୍ରୀରାମ ବଚନେ ସୁମନ୍ତ ନାମେ ପାତ୍ର
ପାଣିର ଭିତରେ ବାହିନେଲା ରଥ ।
ଥୋକାଏ ଦୂର ସେ ନଦୀରେ ରଥ ନେଲେ
ଦକ୍ଷିଣ ମୁଖ ହୋଇ କୂଳରେ ଉଠିଲେ ।
ବାଟ ବଣା ହୋଇଣ ପଥ ଗଲେ ବାହି
ସକଳ ଜନେ ଥିଲେ ତମସାକୂଳେ ଶୋଇ ।
ରଜନୀ ଶେଷ ହେବାରୁ ନିଦ୍ରା ଭଗ୍ନ ହେଲା
ଶ୍ରୀରାମ ଶୋଇବା ସ୍ଥାନ ଦେଖିଲେ ସେ ଭଲା ।
ବେଢ଼ିଣ ଦେଖିଲେ ରଥ ସେଠାବରେ ନାହିଁ
ସଞ୍ଚାମାନ ପଡ଼ିଅଛି ଅଯୋଧ୍ୟା ପୁରେ ଯାଇ ।
ଲୋକେ ବିଚାରିଲେ ଶ୍ରୀରାମ କେବଣ ଗଲେ
ମୂରୁଛି ନପାରି ଦଶରଥଙ୍କୁ ଦେଖି ଗଲେ ।
ଏତେ ଭାଳି ଆନନ୍ଦ ହେଲେ ସର୍ବଜନ
ବାହୁଡ଼ି ଅଯୋଧ୍ୟାକୁ ସେ କରିଲେ ଗମନ ।
ନଗ୍ରରେ ପଶିଲେ ଦେଖିଲେ ଯାହାକୁ
ଶ୍ରୀରାମଙ୍କ ବାରତା ପୁଚ୍ଛନ୍ତି ତାହାକୁ ।
ଯାହାକୁ ପଚାରନ୍ତି ସେ ବୋଲେ ବନେ ଯାଇଁ
ନଅରରେ ବୋବାଳି ଏବେ ତ ଶୁଭଇ ।
ଦଶରଥ କାଲି ନ ଭୁଞ୍ଜିଲେ ଅନ୍ନ
ପାତ୍ର ମନ୍ତ୍ରୀ ଅମନାତ୍ୟ ସମସ୍ତେ ଦୁଃଖ ମନ ।

ମୁହିଁ ପରବାସ କାଲି ଯାଇଥିଲି ପୁଣି
ଆଶ୍ଚର୍ଯ୍ୟ ହୋଇ ଏକଥାମାନ ଶୁଣି ।
ଉପବାସେ ଉଜାଗରେ ପୁହାଇଲି ନିଶି
ଏବେ ଗଲେ ଆଉ କି ଦେଖିବି ରଘୁଶିଷି ।
ତୁମ୍ଭେ ପରା ଯାଇଥିଲ ବାହୁଡ଼ି କିମ୍ପା ଆସ
କେଉଁଠାରେ ଅଛନ୍ତି ରାଜାଙ୍କର ଶିଷ୍ୟ ।
ଧିକ ଧିକ ଜୀବନ ଧିକ ତୁମ୍ଭ ବୁଦ୍ଧି
ଅଖଡ଼େ ଛାଡ଼ି ଅଇଲ ବନ୍ଦ୍ୟ ଗୁଣନିଧି ।
କିସ କରିବ ଏବେ ଅଯୋଧ୍ୟାପୁରେ ଆସି
ଏଥିରେ ନ ରହିଣ ଭିତର ପୁରେ ପଶି ।
ତୁମ୍ଭ ଯୋଗୁଁ ଶ୍ରୀରାମଙ୍କୁ ମୁହିଁ ନ ଦେଖିଲି
ଅମୃତ ନଖାଇ ମୁଁ ବିଷହିଁ ଭକ୍ଷିଲି ।
ଏମନ୍ତ ବୋଲିଣ ଧରଣୀରେ ପଡ଼ି
ଉଚ୍ଚସ୍ୱରେ କାନ୍ଦଇ ଶିରେ କର ତାଡ଼ି ।
ଦେଖିଲା ଲୋକଙ୍କର ଉଡ଼ିଲା ସାହସ
ବୋଇଲେ ରଘୁନାଥ କଲେ ଅବିଶ୍ୱାସ ।
ଛଇଲିପଣ କରି ବାଟ ଭାଙ୍ଗି ଗଲେ
ଆମ୍ଭେ ଭାବିଲୁଁ ଅବା ଅଯୋଧ୍ୟା ଲେଉଟିଲେ
ରଥର ଗୁଳାମାନ ଏଣିକି ଅଛି ପଡ଼ି
ଯେଣୁ ଆମ୍ଭେ ଧାଇଁଛୁ ସଞ୍ଚାମାନ ଲୋଡ଼ି ।
ନଦୀର ପରିଯନ୍ତେ ଦେଖିଲୁ ଚକଗତି
ପାଣିରେ ବହିନେଲେ ରଥ ଆନ କତି ।
ନିର୍ଦ୍ଦୟାପଣ କଲେ ଛାଡ଼ିଲେ ସେ ଦୟା
ଏତେ ମହାଗୋଳ କଲେ କୟକେୟା ।
ଏତେ ବୋଲି ନରନାରୀ ରୋଦନ ଯେ କଲେ
ଶ୍ରୀରାମଙ୍କୁ ବାହୁନି କାନ୍ଦନ୍ତି ବିକଳେ ।
ସୀତା ନାମ ଧରିଣ ରୋଦେ କେବଣ ଜନ
କେ ନାରୀ ସୁମରେ ଯେ ସୁମିତ୍ରା ନନ୍ଦନ ।
କେ ବୋଲେ ସୁମନ୍ତ୍ର ମନ୍ତ୍ରୀ ଏହା କଲା
ଏକାକରି ତିନିଜଣ ରାତ୍ରରେ ବନେ ଲୋ ନେଲା
ତିନିଙ୍କ ଗୁଣ ସୁମରି କାନ୍ଦନ୍ତି ନରନାରୀ
ଶୋକଜଳରେ ନୁହଇ ତାଙ୍କୁ ବୋଧକରି ।
ସମୁଦ୍ର ଲଙ୍ଘିଲାକି ମେଘରେ ପୁଣି ଯାଇ
ଜଣଙ୍କର ଶରୀରେ ଦଇର୍ଯ୍ୟ ଆଉ ନାହିଁ ।
ସକଳ ଘରେ ରୋଦନ କରନ୍ତି ଘନଘନ
ସପତଦ୍ୱୀପ ନିକି ଘୋଟେ ହୁତାଶନ ।

କାନ୍ଦି କାନ୍ଦିଣ କେ ଅଯୋଧ୍ୟା ପୁର ଯାନ୍ତି
ତୁଚ୍ଛାଘର ଦେଖିଣ ରୋଦନ କରନ୍ତି ।
ନଗ୍ରଲୋକଙ୍କର ଆକୁଳ ଧ୍ୱନି ଶୁଣି
ଅନ୍ତଃପୁରେ ରୋଦନ୍ତି କଉଶଲ୍ୟା ରାଣୀ ।
ପାତ୍ର ଅମାନାତ୍ୟ ସକଳ ଜନେ ଶୁଣି
ଶ୍ରୀରାମ ନାମ ଧରି କରନ୍ତି ଭାଳେଣି ।
ବୋବାଳି ଶବଦରେ ପୂରଇ ଆକାଶ
କୂରୁମ ଉଚ୍ଛୁଳଇ ପୂରଇ ଦଶଦିଗ ।
ବାଳ ବୃଦ୍ଧ ସକଳ ନବଯୁବା ନାରୀ
ଚକିତେ ସକ୍ତ ସଖ୍ୟ ନୋହିଲା କାହାରି ।
ପାଣି ଶୁଖିଲେ ଯେହ୍ନେ ଲୋଟଇ ପଦ୍ମବନ
ଶ୍ରୀରାମ ବିନେ ତେସନେ ଅଯୋଧ୍ୟାର ଜନ ।
ଚିନ୍ତାତୁର ଗୁରୁତର ଭାଳୁଛନ୍ତି ବସି
ଯହୁଁ ତହୁଁ ଶ୍ରୀରାମଙ୍କୁ ଲୋଡ଼ନ୍ତି ସର୍ବେଟି ।
ଏକକୁ ଆରେକ ପଚାରନ୍ତି ରାମକଥା
କେ ବୋଲଇ କିସ କରୁଥିବେ ସୀତା ।
କେ ବୋଲଇ ଲକ୍ଷ୍ମଣ ସୋଦରିମା ପଣକଲା
ଦୁଃଖ କାଳେ ଭାଇର ସଙ୍ଗରେ ବନେ ଗଲା ।
କେ ବୋଲେ ସୁମନ୍ତ୍ର ସାଙ୍ଗରେ ବନେ ଯିବ
କେ ବୋଲଇ ବାଧରେ ଛାଡ଼ିଣ ଆସିବ ।
କେ ବୋଲଇ ରାଣୀ କରାଇଛନ୍ତି ସତ୍ୟ
ଏକା ହୋଇ ବନେ ରହିବେ ରଘୁନାଥ ।
ସୀତା ଲକ୍ଷ୍ମଣ ତାଙ୍କ ସଙ୍ଗରେ ସିନା ଗଲେ
ଏସନକ ବୋଲିଣ ଅନେକ ଶୋକ କଲେ ।
ଏକଥା ଶୁଣି ପାର୍ବତୀ ବୋଲନ୍ତି ଭୋ ଦେବ
ରାଜ୍ୟର ଲୋକେ କିମ୍ପା ହୋଇଲେ ତବଦ ।
ଶ୍ରୀରାମ ତ ପିଲା ଅଟେ ବାର ବରଷର
କାହାକୁ କିସ କରିଅଛି ଅଯୋଧ୍ୟାର ।
ସକଳ ନର ନାରୀ ହୁଅନ୍ତି ଆକୁଳ
କାହାରି ମନରେ ନାହିଁ ଅନୁକୂଳ ।
ଏକଥା ବୁଝାଇ କହ ମୋତେ ବାରେ
ଶୁଣିକରି ସନ୍ତୋଷ ହୋଇବି ମନରେ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ବିଷ୍ଣୁ ଜନମ ହେଲେ ଅଯୋଧ୍ୟା ନାମେ ପୃଥ୍ୱୀ
ଏକଇ ଚତୁର୍ଦ୍ଧା ମୂର୍ତ୍ତି ହୋଇଲେ ସଂଭୂତ
ଦୁଷ୍ଟଜନ ମାରିଣ ପାଳିବେ ସେ ସନ୍ଥ ।

ଅକ୍ଷୟ ରାବଣ ଅସୁର ନାଶଯିବ
ଚଉଦ ବରଷେ ତାଙ୍କ ଦଶା ପାରହେବ ।
ସାତଦିନେ ଆମ୍ଭର ପଢ଼ାଇ ଦିନେ ପାଳି
ତୋତେ ଛାଡ଼ିଣ ଆମ୍ଭେ ଯାଉଁ ଲଙ୍କାସ୍ଥଳୀ ।
ସେଦିନ ଏକା ତୁ କପିଳାସେ ଥାଉ
ଚିତ୍ତରେ କ୍ରୋଧ ହୋଇ ଆମ୍ଭଙ୍କୁ ନିନ୍ଦା ଦେଉ ।
ଆମ୍ଭର ହସ୍ତରେ ମୃତ୍ୟୁ ନାହିଁ ତାର
ସାବିତ୍ରୀବଲ୍ଲଭ ତାଙ୍କୁ ଦେଇଛନ୍ତି ବର ।
ଅନନ୍ତ ଜାତ ହେଲେ କମଳା ହେବେ ଜାତ
ସୀତା ହରିଲେ ମରିବ ବିଶ୍ରବାର ସୁତ ।
ଶ୍ରୀରାମ ବିଷ୍ଣୁ ଅଯୋଧ୍ୟା ଲୋକେ ଶୁଣି
ଦୁଃଖୀ ଦରିଦ୍ର ହୋଇ ନାହାନ୍ତି କେ ପୁଣି ।
ସବୁରି ଗରେ ଧନ ଚଞ୍ଚଳା ପ୍ରସନ୍ନେ
ନରନାରୀ ସୁମରନ୍ତି ତାଙ୍କୁ ମନେ ମନେ ।
ଏମନ୍ତ ପ୍ରକାରେ ଶ୍ରୀରାମ ଚରିତ
ବନବାସ ନ କଲେ ନମରିବ ଦୈତ୍ୟ ।
ଅଯୋଧ୍ୟା ଜନଙ୍କର ଦେଖ କୁଆମେଳ
ଶ୍ରୀରାମ ବନ ଯିବାରୁ ହୁଅନ୍ତି ବିକଳ ।
ଶୁଣିକରି ସନ୍ତୋଷ ହୋଇଲେ ଗଉରୀ
କିସ କଲେ ଶ୍ରୀରାମ ବୋଲିଣ ପଚାରି ।
ଈଶ୍ୱର ବୋଇଲେ ଶୁଣ ଦେବୀ ଉମା
ଅଯୋଧ୍ୟା ନର ନାରୀଙ୍କର ଏ ଭାବନା ।
ଏଥୁ ଅନନ୍ତରେ ଶୁଣିବା କାହାଣୀ
ଥୋକେଦୂରେ ଶ୍ରୀରାମଙ୍କୁ ପାହିଲା ରଜନୀ ।
ଗୋମତୀ ନଦୀକୂଳେ ହେଲେ ରଘୁପତି
ରଥରୁ ଓହ୍ଲାଇ ନିତ୍ୟ କର୍ମ କଲେ ତଥି ।
ଗୋମତୀରେ ଅଶ୍ୱମାନେ ଜଳ ପାନ କଲେ
ରଥପରେ ବସିଣ ତହୁଁ ଚଳିଗଲେ ।
ଯାଇଣ ମିଳିଲେ ସରସ୍ୱତୀ ସନ୍ନ ଧାନେ
ସପସ୍ୱତୀ ପାରି ହୋଇ ପଶିଲେକ ବନେ ।
ଗଙ୍ଗାର କୂଳରେ ମିଳିଲେ ସେ ଦିନ
ସିଂହବେଣୀ ପୂର ଯେ ତହିଁର ସନ୍ନିଧାନ ।
ସେହି ସ୍ଥାନକୁ ସେ ଅଟଇ ନିକଟ
ଗୁହ୍ୟ ନାମ ଶବର ତହିଁ ଅଟେ ଶ୍ରେଷ୍ଠ ।
ଭୋ ଶବର ଅଟଇ ରାମଙ୍କ ମଇତ୍ର
ବାରତା ପାଇ ମିଳିଲା ରାମଙ୍କ ଅଗ୍ରତ ।

ସଙ୍ଗରେ ବଳ ତାର ଅଛନ୍ତି ଅପାର
ବିପରୀତ ବେଶ ଦିଶନ୍ତି ଭୟଙ୍କର ।
କାନରେ ତଡ଼କି ବଳିଆ ଦୁଇ ଦୁଇ
ଲଲାଟର ଉପରେ ଗୁଞ୍ଜରା ମୁଣ୍ଡ ଦେଇ ।
କେହୁ ଖୋସା ଖୋସି ବାଙ୍କରେ ଜୁଡ଼ାପାଡ଼ି
କିଏ ଜୁଡ଼ା ବାନ୍ଧିଛି ଚଉସରି ବେଢ଼ି ।
ପିଠିପରେ ଓହଳି ଅଛି କାର ଜଟ
ମନ୍ଦାର ପୁଷ୍ପ କାହାର ଜଟକୁ ପ୍ରକଟ ।
ଜାଣି କଉଡିକି ମାଳ ମାଳ କରି
ଶରଧା କଣ୍ଠରେ ଅଛନ୍ତି ସେ ଭରି ।
କାହାର ବାହାରେ ଟସର ରଙ୍ଗ ସୁତା
କନ୍ଧେ କେ କରିଛି ଅଜଗରକୁ ପଇତା ।
ନାକମାନଙ୍କରେ ପିତଳ ଗୁଣା ନାଇ
ଲୁହା ଶିକୁଳି କେ ବାହାରେ ବାନ୍ଧିଛଇଁ ।
କାହାର ପୁଛରେ ମୟୂର ପୁଛକଣ୍ଡା
ଭାଲୁର ଲୋମ କେ ବାନ୍ଧିଅଛି ଅଣ୍ଟା ।
କାହାର ଅଣ୍ଟାରେ ଘଣ୍ଟ ଧ୍ୱନି କରେ
କାହାର ଗୋଡ଼ରେ ବାଜୁଛି ଘୁଙ୍ଗୁରେ ।
କାହାର ଅଣ୍ଟାରେ ବାଜଇ ଘାଗୁଡ଼ି
ବାହାରେ ବଗସାମଲ କିଏ ଅଛି ଭିଡ଼ି ।
କାଖରେ କେଶ କାହାର ଡିମିଡିମି ଆଖି
ଭଲ ଭଲ ଲୋକେ ଡରିବେ ଯେ ଦେଖି
ଏକ ଏକ ମୁଖରେ ନିଶ ଯେ ଲାଗଇ
ପିଙ୍ଗଳ ବାଇ ଦେଖିଲେ ମନ ତା ବୁଜଇ ।
ନାକ ପୁଡ଼ାମାନଙ୍କରୁ ବାହାରିଛି ବାଳ
ତହିଁରେ ଗୁନ୍ଥିଅଛି ଗୁଞ୍ଜ ମାଳମାଳ ।
ଦେହର ଲୋମକୁ ଦେଖିଲେ ଭୟକରି
ତାଙ୍କର କଥାକୁ ବୁଜି ତ ନପାରି ।
କାଖର ବାଳ କେହୁ ବାନ୍ଧେ ବେଣୀକରି
ଖଣ୍ଡି ଖଣ୍ଡି ପୋଡ଼ାମାଂସ ଖାଏ ହସ୍ତେ ଧରି ।
ବିଭୂତିରେ ଭୂଷଣ କାହାର ଶରୀର
କାଲତେଲରେ କାର କେଶ ଜରଜର ।
କାହାର ଶରୀରେ କାଇମାଟି ଗୁଣ୍ଡି
ରଙ୍ଗଫୁଲ ମାଳକେ ଦେହରେ ଅଛି ମଣ୍ଡି ।
ଡାମଣାର ଧନୁ କାହାର କୋଦଣ୍ଡ
ଗୋଚର୍ମ ଗୁଣ କାହାର ନାହାଲବେଲି କାଣ୍ଡ ।

କୁଠାରଧରି କେ ରଙ୍ଗକରି ବାଡ଼ି
ବରେହା ଦେଖିଣ କେ ହାଙ୍କିଣ ଦିଏ ମାରି ।
କାହାର ହସ୍ତରେ ଅଛି ବାଏଁ ଶର ନଳି
କୁକୁରକୁ ଧରିଛି କେ ଲଗାଇ ଶିଙ୍କୁଳି ।
ଅଣାଇଁ କେ ଖଣ୍ଡା ଧରିଣ ଝମକନ୍ତି
ଚିଆରର କାଣ୍ଡ କେ ସଳଖୁ ଅଛନ୍ତି ।
କିଳିକିଳା ରଡ଼ି କରନ୍ତି ଯାଉଯାଉ
କେ ରଡ଼ି କରଇ କେ ଡିଏଁ ଧାଉଁ ଧାଉଁ ।
ଦଶଲକ୍ଷ ପଦାତି ଘେନିଣ ଗୁହ୍ୟବୀର
ଦର୍ଶନ କଲା ଆସି ଶ୍ରୀରାମ ପୟର ।
କରଦୁଇ ଯୋଡ଼ି ପଚାରଇ ବୀର
କେବଣ କାରଣେ ଦେବ ଅଇଲ ମୋପୁର ।
ରାମଚନ୍ଦ୍ର ବୋଇଲେ ଶୁଣ ମୋର ସଖା
ଯେବଣ କାରଣେ ମୁଁ ଅଇଲି ଘେନି ସୀତା ।
ପିତା ଦଶରଥ ମୋତେ ରାଜ୍ୟଦେବା କଲେ
ପିଅରଙ୍କୁ କୈକୟା ସତ୍ୟ କରାଇଲେ ।
ଚଉଦ ବରଷ ରାମ ବନରେ ରହିବ
ଭ୍ରତ ରାଜା ହୋଇଣ ଅଯୋଧ୍ୟା ପାଳିବ ।
ପିତା ସତ୍ୟ ପାଳି ମୁଁ ଆସିଅଛି ବନ
ସ୍ନେହେ ମୋ ସଙ୍ଗେ ଅଇଲେ ଜାନକୀ ଲକ୍ଷଣ ।
ସୁମନ୍ତ ବାହୁଡ଼ାଇ ନେବେ ଏବେ ରଥ
ମୁହିଁ ଆଶ୍ରେ କରିବି ବନ ପରବତ ।
ଶୁଣିକରି ମନେ ବ୍ୟଥା ପାଇଲା ଶବର
ଶ୍ରୀରାମଙ୍କୁ ଚାହିଁଣ ବୋଇଲା ଉତ୍ତର ।
ପିତା ଯେବେ ତୁମ୍ଭଙ୍କୁ ଛାଡ଼ିଲେ ଉପ୍ରୋଧ
ସ୍ତିରୀ ବୋଲେ ସେ ଯେବେ ହୋଇଲେ ଅବୋଧ
ତୁମ୍ଭପରା ପୁତ୍ରକୁ ବନକୁ ପେଶିଲେ
ମୋହର ମନକୁ ଯେ ଉତ୍ତମ ନଦିଶିଲେ ।
ତୁମ୍ଭ ଆଗେ ନିୟମ କରୁଛି ରଘୁନାଥ
ଦିଅ ଆଜ୍ଞା ମୋତେ ମୁଁ ଛେଦିବି ଦଶରଥ ।
କୈକୟା ଶିର ମୁଁ ପକାଇବି ହାଣି
ଆଜକ ରହ କାଲିଯିବ ରଘୁମଣି ।
ସର୍ବବଳ ଘେନିଣ ଅଯୋଧ୍ୟାକୁ ଯିବା
ଶତ୍ରୁକୁ ସଂହାରିଣ ରାଜ୍ୟରେ ରାଜା ହେବା ।
ଶ୍ରୀରାମଚନ୍ଦ୍ର ବୋଇଲେ ମୋ ବଚନ ଶୁଣ
ଧର୍ମରେ ମୋର ପିତା ତୁମ୍ଭର ପିତା ଜାଣ ।
ତୁଣ୍ଡରେ ବୋଇଲେ ଏବେ ଦୋଷ ଯେ ଲାଗିଲା
କେମନ୍ତେ ମୋ ମାତାପିତା ବଧ କରିବା ପରା
ପିତା ପରମଗୁରୁ ପିଣ୍ଡର ଅଧିକାରୀ
ଏ ବଚନ କେଭେ ତୁଣ୍ଡରେ ନଧରି ।
ପିତାଙ୍କର ଆଜ୍ଞାକୁ ପାଳିବି ଯେବେ ମୁହିଁ
ଅନର୍ଥ କଲେ ମିତ୍ର ପ୍ରୟୋଜନ ନାହିଁ ।
ଏବେ ତୁମ୍ଭେ ଅଶ୍ୱକୁ ଆଣିଦିଅ ଘାସ
ଦୁଇଦିନ ହେଲା ଖାଇ ନାହାନ୍ତି ସେ ଗ୍ରାସ ।
ଶବର ବୋଇଲେ ମିତ୍ର ଯିବା ମୋ ସଙ୍ଗର
ଓଝାଳେକ ଅଳପ ଦୂର ମୋର ପୁର ।
ଅନ୍ନ ବ୍ୟଞ୍ଜନରେ ପିଣ୍ଡ ହେବ ସୁସ୍ଥ
ମୋ ଉଆସରେ ରହିବ ଚଉଦ ବରଷାନ୍ତ ।
ଶ୍ରୀରାମ ବୋଇଲେ ମିତ୍ର ଏଥିରେ କାର୍ଯ୍ୟନାହିଁ
ଚଉଦ ବରଷ ଯାଏଁ ଅନ୍ନ ମୁଁ ନଖାଇ ।
ପରଘରକୁ ନଯିବି ନମାଡ଼ିବି ଦେଶ
ଏହିକଥା ଆଜ୍ଞା ମୋତେ ଦେଲେ ନରଈଶ ।
ଏକଠାବେ ନରହିବୁ ଜନନୀ ମୋତେ କହି
ଦୁଷ୍ଟଜନ ଦେଖିଲେ ମାରିବୁ ରଘୁସାଇଁ ।
ତେବେ ସିନା ରହିବ ମୋର ପୁତ୍ରପଣ
ଭୋ ମଇତ୍ର ମୋତେ ନଦିଅ କଷଣ ।
ଅନ୍ନ ବ୍ୟଞ୍ଜନରେ ମୋହର କାର୍ଯ୍ୟ ନାହିଁ
ଚଉଦବରଷ ବଞ୍ଚିବି ଫଳମୂଳ ଖାଇ ।
ଘୋଡ଼ାଙ୍କ ପାଇଁ ତୁମ୍ଭେ ଘାସ ବେଗେ ଆଣ
ଶୁଣିକରି ଶବର ଗଲା ତକ୍ଷକ୍ଷଣ ।
ନିଜପୁରେ ପ୍ରବେଶ ହୋଇଲା ଶବର
ରଥରୁ ଉତୁରିଣ ଅଇଲେ ରଘୁବରୀ ।
ଜାନକୀ ଲକ୍ଷ୍ମଣ ସହିତେ ତିନିଜଣ
ଚଳିଣ ଠାବ ଯେ ଖୋଜିଲେ ରଘୁରାଣ ।
ପୁଇଁ ଚାନ୍ଦିଆ ବୃକ୍ଷ ତଳରେ ମିଳନ୍ତି
ଏହି ଠାବେ ରହିବା ବୋଲି ବିଚାରନ୍ତି ।
ଶୁଣିଲେ ଲକ୍ଷ୍ମଣ ଶ୍ରୀରାମଚନ୍ଦ୍ର ବାଣୀ
ସେ ବୃକ୍ଷତଳରେ ଲତା ଚାରିପାରୁଶେ ପୁଣି ।
କୋମଳ ତିରଣ ପାଡ଼ିଲେ ତହିଁ ଆଣି
ଅତିଯତ୍ନେ ଲକ୍ଷ୍ମଣ ଶଯ୍ୟାକୁ ନିର୍ମାଣି ।
ଶଯ୍ୟାକୁ ଦେଖିଣ ତୋଷ ରଘୁପତି
ଉପରେ ଛାମୁଣ୍ଡି କଲେକ ତତ୍ପତି ।

ପାଞ୍ଚହାତ ଛାଡ଼ିଣ ତହୁଁ ଚଳିଗଲେ
ସେଠାରେ ପତ୍ରକୁଡ଼ିଆ ଗୋଟିଏ ରଚିଲେ ।
ଆପଣାର ପାଇଁକି ଗୋଟିଏ ଠାବକରି
ରାମଚନ୍ଦ୍ର ପାଶରେ ପ୍ରବେଶ ହେଲେ ଫେରି ।
ସୁମନ୍ତ ରଥରୁ ଅଶ୍ୱ ଫେଡ଼ିକରି
ପାଣି ଖୁଆଇ ରଥରେ ବାନ୍ଧିଲା ଯତ୍ନକରି ।
ଆପଣେ ସୁମନ୍ତ ରଥରେ ଅଛି ବସି
ଘାସ ଘେନି ଶବର ମିଳିଲା ତହିଁ ଆସି ।
ଦେଖିକରି ରାମଚନ୍ଦ୍ର ମନରେ ହରଷ
ବୋଇଲେ ମଇତ୍ର ହେ ଯାଅ ନିଜବାସ ।
ଶୁଣିଣ ଶବର ଯୋଡ଼ି ବେନିକର
ବୋଇଲା ଭୋ ଦେବ ଅଯୋଧ୍ୟା ଠାକୁର ।
ଯାହା ସେ ବହନ ବୋଇଲ ହେ ତୁମ୍ଭେ
ଘୋର ବିପିନେ ସ୍ୱାମୀ ରହିବ ନିଶିଭାଗେ ।
ମୁହିଁ ଯିବ କେମନ୍ତେ ବୋଲୁଛ ନିଜପୁର
ପୋଡୁ ମୋର ଜୀବନ ପଶିବି ସାଗର ।
ଅନେକ ଜନ୍ମରେ ମୁଁ ପାଇଲିଇଁ ଭେଟ
ଆଜର ନିଶି ବଞ୍ଚିବି ତୁମ୍ଭର ନିକଟ ।
ଶୁଣିକରି ରଘୁନାଥ ହୋଇଲେ ସନ୍ତୋଷ
ବୋଇଲେ ମଇତ୍ର ସୁମନ୍ତ ପାଶେ ବସ ।
ସୀତୟା ଲକ୍ଷ୍ମଣ ସହିତେ ରଘୁପତି
ପୁଇଁଚାନ୍ଦିଆ ବୃକ୍ଷ ତଳରେ ବସନ୍ତି ।
ଗଙ୍ଗାରୁ ଜଳ ଯହୁଁ ପିଇଲେ ତିନିଜଣ
ବୋଇଲେ ଶ୍ରୀରାମ ଶୁଣ ହେ ଲକ୍ଷ୍ମଣ ।
ଆଜିର ଦୁଃଖ ବାବୁ କଳଣା ନଯାଇ
କ୍ଷୁଧାରେ ବିକଳ ହେଉଛି ମୋର ଦେହୀ ।
ଏତେକଷ୍ଟ ପାଇବାକୁ ବିଧାତା ଜାତକଲା
କଉଶଲ୍ୟା ରାଣୀ ମୋତେ କିଲାଗି ଜନ୍ମ ଦେଲା
ଶୁଣିକରି ଲକ୍ଷ୍ମଣ ବୋଲନ୍ତି ସ୍ୱାମୀ ଶୁଣ
ଆମ୍ଭର ଉପର ବଂଶେ ଭଗିରଥ ଜାଣ ।
ପିତାଙ୍କୁ ଉଦ୍ଧାରିଲେ ଗଙ୍ଗାକୁ ସ୍ୱର୍ଗ ଆଣି
ସହସ୍ରେ ବର୍ଷ ତପସ୍ୟା କଲେ ନୃପମଣି ।
ଜଳ ପବନ ସେ କରନ୍ତି ଆହାର
ଗଙ୍ଗାକୁ ଆଣି ପିତୃଙ୍କୁ କଲେ ସେ ଉଦ୍ଧାର ।
ସପତ ସାଗର ଯାକ ଶୁଖିଥିଲା ପାଣି
ଗଙ୍ଗା ଆସିବାରୁ ପୂର୍ଣ୍ଣହେଲା ପୁଣି ।

ମାନଧାତା ସହସ୍ରେ ବରଷ ଯୁଦ୍ଧକଲେ
ସାତ ଦ୍ୱୀପ ତିନିପୁର ଜିଣିଣ ଅଇଲେ ।
ଅଯୋଧ୍ୟାରେ ଆସିଣ ସୁସ୍ଥ ହେଲେ ପୁଣ
ଦୁଇଦିନେ ତୁମ୍ଭେତ ଓହରୁଛ ପୁଣ ।
ଲକ୍ଷ୍ମଣ କହିଣ ସନ୍ତୋଷ କରାଇଲେ
ଶବରଣୀ ଦଶଜଣ ଘେନିଣ ଅଇଲେ ।
ପାଚିଲା କଦଳୀ ଲେମ୍ବୁ ପଣସ ପଚା ଆମ୍ବ
ସୀତାପାଶେ ଥୋଇଣ ଓଳଗି ହେଲେ ବେଗ
ଜାନକୀ ବୋଇଲେ ତୁମ୍ଭେ କେଉଁ ମହାତମା
ଦୁଃଖକାଳେ ଆମ୍ଭଙ୍କୁ ସଙ୍ଖୋଳୁଛ ବାମା ।
ଶବରଣୀ ବୋଇଲା ଶୁଣ ଠାକୁରାଣୀ
ସିଂହବେଣୀ ପୁରରେ ମୋହର ଘରଜାଣି ।
ଗୁହ୍ୟ ନାମେ ଶବର ଅଟନ୍ତି ମୋର ବର
ଶ୍ରୀରାମ ସଙ୍ଗେ ମିତ୍ର ହେଲେ ସେ ବନର ।
ଆଜି ମୋତେ କହିଲେ ଠାକୁରଙ୍କ ବନବାସ
ଭାଇ ଭାରିଜା ଘେନି ଅଛନ୍ତି ଗଙ୍ଗାପାଶ ।
ଦରଶନ ନିମନ୍ତେ ଅଇଲି ମୁଁ ତୋରେ
କେତେ ଦୁଃଖ ଭୋଗିବ ବନସ୍ତ ଭିତରେ ।
ଜାନକୀ ବୋଇଲେ ତୁମ୍ଭେ ଯାଅ ନିଜପୁରେ
ଆମ୍ଭେ ସନ୍ତୋଷ ହେଲୁଁ ତୁମ୍ଭର ସେବାରେ ।
ଶବରଣୀ ଶୁଣିଣ ଲକ୍ଷ୍ମଣ ପାଶେ ଗଲା
ଲକ୍ଷ୍ମଣଙ୍କୁ କହିଣ ରାମଙ୍କୁ ଦେଖିଲା ।
ଦର୍ଶନ କରିଣ ସ୍ୱାମୀ ପାଶେ ଚଳିଯାଏ
ସ୍ୱାମୀକି କହିଣ ନିଜ ଘରେ ଯାଇ ହୁଏ ।
ଫଳ ଆଣି ଶ୍ରୀରାମ କଲେକ ମଣୋହି
ପାଚିଲା କଦଳୀ ଝାଇଣ ତୋଷ ହୋଇ ।
ଜାନକୀ ଭୁଞ୍ଜିଲେ ଭୁଞ୍ଜିଲେ ଲକ୍ଷ୍ମଣ
ସୁମନ୍ତଙ୍କୁ କଡ଼କିଆ ଦେଲା ଶବର ପୁଣ ।
ପାଞ୍ଚଜଣ ଭୁଞ୍ଜିଣ ସନ୍ତୋଷ ଯେ ହୁଏ
ଶବରକୁ ଶ୍ରୀରାମ ବହୁତ ପ୍ରଶଂସଏ ।
ଶୁଣିଲଟି ଗୋ ହିମବନ୍ତର ଦୁଲଣୀ
ଦୁଇଦିନେ ଆହାର ପାଇଲେ ରଘୁମଣି ।
ଏଥୁଅନନ୍ତରେ ଶୁଣ ଦିବ୍ୟ ରସବାଣୀ
ସେ ଦିନ ପାଞ୍ଚ ମେଳ ହେଲେ ପୁଣି ।
କେମନ୍ତେ ଉପକାର ତାକୁ ମୁଁ କରିବି
ଏ ଘୋର ବିପିନରେ ବୁଲିଣ ମରିବି ।

ମୋପାଇଁ କେତେ କଷ୍ଟ ପାଇଲେ ଜନନୀ
ମୋର ଭଲମନ୍ଦ ନଦେଖିଲେ ଚକ୍ଷୁ ବେନି ।
ମୁହିଁ ପାପୀଜନ ନ ବୋଲି ତାଙ୍କୁ କିଛି
ମୋର ତହୁଁ ଭଲ ସାରୀ ଶୁଆ ପକ୍ଷୀ କିଛି
ଅବଧିରେ ମାରିବାରୁ ଉବୁରି ପଳାଇଲେ
ଭୟରେ ସାରୀ ଶୁଆ ଈଶ୍ୱର ଚିନ୍ତା କଲେ ।
ଲକ୍ଷ୍ମଣ ବୋଇଲେ ମୁଁ ସେ କଥା ଶୁଣିନାହିଁ
ସାରୀ ଶୁଆଙ୍କର କଥା କହ ହେ ଗୋସାଇଁ ।
ରାମଚନ୍ଦ୍ର ବୋଇଲେ ଶୁଣ ସଉମିତ୍ରୀ
ମୋର ଆଗେ ଯାହା କହିଅଛନ୍ତି ଅଗସ୍ତି ।
ହିମବନ୍ତ ପର୍ବତ ଉପରେ ଶୁଆ ଥିଲା
ଶ୍ୟାମଳ ପକ୍ଷୀକି ଯାଇ ସାରୀକି ଦେଖିଲା ।
ଏମନ୍ତ ସମୟରେ ଶୁଆ ଯେ ମିଳିଲା
ଶ୍ୟାମଳ ପକ୍ଷୀକି ଦେଖି ମନରେ ଭୟକଲା ।
ଚରଣରେ ଶୁଆକୁ ଧଇଲା ଗାଢ଼େ ଚାପି
ଥଣ୍ଟରେ ସାରୀକି ଧଇଲା ସେ ଚାପି ।
ନିଜ ମନ୍ଦିରକୁ ଚଳିଲା ବହନ
ଏ ଦୁହିଁଙ୍କୁ ଭକ୍ଷିବି ବିଚାରଇ ମନ ।
ମନରେ ଭାଳିଣ ଆକାଶେ ଉଡ଼ଇ
ସାରୀ ପକ୍ଷୀ କାନ୍ଦିଣ ଶୁଆ ଆଗେ କହି ।
ବୋଇଲା ଶୁଆ ତୁ ମୋହର ବୋଲକର
ଯେତେବେଳେ ପ୍ରବେଶ ହୋଇବ ଯାର ଘର
ଆମ୍ଭର ଜୀବନକୁ ହରିବ ଏ ନେଇ
ତାର ପିଣ୍ଡ ପୋଷିବ ଆମ୍ଭ ଦୁହିଁଙ୍କୁ ଖାଇ ।
ଅବଶ୍ୟ ତ ପ୍ରାଣ ହରିବ ଆମ୍ଭର
ଉପାୟ ଦିଶୁଛି ମୋତେ ମୋର ବୋଲକର ।
ଶୁଆ ବୋଲେ ସାରୀ ତୁ ବିକଳେ କିମ୍ପା କାନ୍ଦୁ
ଜୀବନକୁ ଆଶାକରି ମନରେ କିମ୍ପା ଫାନ୍ଦୁ ।
ଶୁଆ ବୋଲେ ସାରୀଲୋ ମୋହଠାରୁ ଶୁଣ
କପାଳରେ ବିଧାତା ଲେଖିଛି ଯାହା ଜାଣ ।
ସେହି କଥା ଆଜି ଲୋ ହୋଇବ ତ ସାରୀ
ନିସତ ହେଲେନିକି ଯମ ଯିବ ଛାଡ଼ି ।
ଆଉକି ଏ ପ୍ରାଣ ରହିବ କିଲୋ ସାରୀ
ସାରୀ ବୋଇଲା ସୁବୁଦ୍ଧି ନାହିଁକି ତୁମ୍ଭରି ।
ପ୍ରାଣ ଥିବା ଯାଏ ଉପାୟ କରୁଥିବା
କେଜାଣି କେତେବେଳେ କେଉଁକଥା ଅବା ।
ଯେଉଁ ପୁରୁଷମାନେ ଉପାୟ କରନ୍ତି
ଯୋଗପୁରୁଷ ବୋଲି ତାଙ୍କୁ ଯେ ବୋଲନ୍ତି ।
ଶୁଣିକରି ଶୁଆ ସାରୀକି ପଚାରଇ
କେଉଁ ଉପାୟ କଥା ଶୁଣିଛୁ କି ତୁହି ।
ସାରୀ ବୋଇଲା ମୁଁ ସାଧୁଘରେ ଥିଲି
ଘୋଡ଼ାକୁ ଘାସଦିଏ ଏକଇ ବାଉରୀ ।
ଆଷାଢ଼ ମାସରୁ ପକ୍ଷେକ ବହିଗଲା
ମେଘଗରଜନ ବରଷା ଋତୁ ହେଲା ।
ସେଦିନ ବାଉରୀର ହୋଇଲା ଉଛୁର
ସାଧବପଚାରିବାରୁ ସେ କହିଲା ବରଷାମହାଘୋର
ବ୍ୟଞ୍ଜନ ନିମନ୍ତେ ମୁଁ ପୋଖରୀକି ଗଲି
ବଡ଼ ବେଙ୍ଗଟିଏ ସେଠାରେ ଦେଖିଲି ।
ଜାଲ ପକାଇଣ ଧଇଲି ତାକୁ ବଳେ
ବେଙ୍ଗୁଲି ମିଳିଲା ଆସି ସେହିକାଳେ ।
ଘଡ଼ାରେ ପକାଇଣ ଦୁହିଁଙ୍କି ଘେନିଗଲି
ଘଡ଼ାକୁ ମୁଦିଣ ଗୃହରେ ରଖିଲି ।
ଗଲେ ଭାତରେ ତାକୁ କରିବି ବ୍ୟଞ୍ଜନ
ଘାସ ଘେନି ଆସୁଛି ଉଛୁର ହେଲା ଜାଣ ।
ଏତେ କହି ବାଉରୀ ନିଜଘରେ ଗଲା
ବେଙ୍ଗଥିବା ମାଠିଆକୁ ବାହାରେ ଥୋଇଲା ।
ରଜନୀରେ ବେଙ୍ଗକୁ ବେଙ୍ଗୁଲି କହେ ବାଣୀ
ସାହସ ଉପାୟ ଆମ୍ଭେ କରିବା ଯେ ପୁଣି ।
ବେଙ୍ଗ ବୋଲେ ମଲାବେଳେ ବୁଦ୍ଧି ଯାପସରି
ତୋର ବୋଲକରିବା ଅଟଇ ବୋ୍ଧକାରି ।
ବେଙ୍ଗୁଲି ବୋଇଲା ଦୁହେଁ କରିବା କଳିଗୋଳ
ମାଠିଆ ଫାଟିଗଲେ ଫିଟିମୁହଁ ଫାଳ ।
ତେବେ ଆମ୍ଭେ ଦୁହେଁ ଏଥିରୁ ପଳାଇବା
ଏତେବୋଲି ଦ୍ୱନ୍ଦକଲେ ଗୃହସ୍ଥ ଭାରିଯା ।
କଳିକରିବାରୁ ମାଠିଆ ଗଡ଼େ ପୁଣ
ଫିଟିଗଲା ଶୁଦ୍ଧବାଟ ମେଲା ତତକ୍ଷଣ ।
ଦୁଇଜଣଯାକ ରଜନୀରେ ଗଲେ ଚଳି
ସରୋବରେ ପ୍ରବେଶ ବେଙ୍ଗ ଯେ ବେଙ୍ଗୁଲି ।
ବାସୁଦେବଙ୍କୁ ସୁମରି ସନ୍ତୋଷ ହୋଇଲେ
ଶୁଣିଲ ଉପାୟ କଥା ଶୁଆ ତୁମ୍ଭେ ଭଲେ ।
ତୁମ୍ଭେ ଏବେ ପ୍ରାଣନାଥ ମୋର ବୋଲକର
ଶ୍ୟାମଳ ଚରଣକୁ ଥଣ୍ଟରେ ବିହାର ।

ଏ ମୋହର ଅଣ୍ଟତ ଚିରଣ ରହୁନି
ମୋର ଉପାୟ କିଛି ନୋହିବ ପ୍ରୟୋଜନି ।
ତୁମ୍ଭର ଚଞ୍ଚୁତ ବଜ୍ରରୁ ଅଟେ ଆଣ୍ଟ
ସେହି ଚଞ୍ଚୁରେ ଶ୍ୟାମଳ ଚରଣକୁ କାଟ ।
ତୁମ୍ଭଙ୍କୁ ଛାଡ଼ି ଦେଲେ ତୁମ୍ଭେ ଯିବ ଉଡ଼ି
ଯୋଗେଣ ଦୁହିଙ୍କୁ ଅବା ଦେବ ସେହୁ ଛାଡ଼ି ।
କର ତୁମ୍ଭେ ଉପାୟ ହେଳା ଯେ ନକର
ବସାରେ ପାଇଲେ ପୂରିବ ଆମ୍ଭ କାଳ ।
ସାରୀଠାରୁ ବୁଦ୍ଧି ପାଇଣ ଶୁଆପକ୍ଷୀ
ଶ୍ୟାମଳ ଚରଣକୁ ଚାହିଁଲା ନିରେଖି ।
ରାଗରେ ଶ୍ୟାମଳ ଗୋଡ଼ ଚାପିଲା ଅଣ୍ଟେଧରି
ଦୁହିଁଙ୍କି ଛାଡ଼ିଲା ଶ୍ୟାମଳ ଆଇକି ସୁମରି ।
ଆଇ ଆଉ ବୋଲିବାରୁ ଅଣ୍ଟ ମେଲାହେଲା
ଶୁଆକୁ ଘେନି ତହୁଁ ସାରୀ ପଳାଇଲା ।
ଉପାୟ କରିଣ ତରିଲେ ବେନି ପ୍ରାଣୀ
ତେବେ ବୁଦ୍ଧି ଲକ୍ଷ୍ମଣ ନପାରିଲି ଜାଣି ।
ଅମଣିଷ କରି ମୋତେ ବିଧାତା ଜାତକଲା
ମୋହର ପାଲଟେ କିମ୍ବା ବୃକ୍ଷେକ ନକଲା ।
ଯାହା ଯେ କର୍ମେ ଫଳେ ଭୁଞ୍ଜେଟିକି ପ୍ରାଣୀ
ଏହି ଜାନକୀ ଅଟେ ଜନକ ଦୁଲଣୀ ।
ମୋହର ହସ୍ତଧରି ଏତେ ସରି
ଚିରଣର ଶର୍ଯ୍ୟାରେ ଶୁଏ ସୁକୁମାରୀ ।
ଏହାଦେଖି ଦେହ ମୁଁ କେମନ୍ତେ ଧରିବି
କିପରି ଏହାର କଷ୍ଟ ପାଶୋରିବି ।
ଲକ୍ଷ୍ମଣ ବୋଇଲେ ସ୍ୱାମୀ ବିମୁଖ କିମ୍ବା ହୁଅ
ଏ ସୃଷ୍ଟି ମଧ୍ୟରେ ଧାତା ରଚନା କଲେ ଦେହ
ସୁଖ ଦୁଃଖ ବେନି କରମରେ ଥାଇ
ରାଗନ୍ୱିତ ହେଲେ କି ଦେହରୁ କଷ୍ଟଯାଇ ।
କେବଣ ବିଧାତା ଆଣି ରାଜପୁତ୍ର କଲା
ସେ ଦଇବ ଏବେ ବନକୁ ପେଶିଲା ।
ନକର ସନ୍ତାପ ତୁମ୍ଭେ ନୁହ ବଇରାଗ
କର୍ମରେ ପାପ ପୁଣ୍ୟ ଫଳେ ଦୁଇରାଗ ।
ଶ୍ରୀରାମ ଲକ୍ଷ୍ମଣ ଯଥା ହୋନ୍ତି ବେନି
ସୁମନ୍ତ ଭାଳେ ରଥେ ଶବରକୁ ଘେନି ।
ଏମନ୍ତ ସମୟରେ ଅରୁଣ ପ୍ରକାଶ
ଗଗନେ ଉଦେହେଲେ ଛାୟାଦେବୀ ଈଶ ।

ଶ୍ରୀରାମ ଲକ୍ଷ୍ମଣ ସୀତା ହେଲେ ତିନିଜଣ
ନିତ୍ୟକର୍ମ ବିଧାନ ସାରିଲେ ତକ୍ଷଣ ।
ଗଙ୍ଗାରେ ସ୍ନାନକରି ଦେବ ତର୍ପଣ କଲେ
ବଟବୃକ୍ଷ କ୍ଷୀରରେ ଜଟାକୁ ବାନ୍ଧିଲେ ।
ବିଭୂତି ମିଶାଇଣ ବାନ୍ଧିଲେ ଦୁହେଁ ବାଳ
ରାମ ଲକ୍ଷ୍ମଣ ଦିଶିଲେ ଦିବ୍ୟ ତିପଶୀଳ ।
ଆଗପଛ କରିଣ ବାନ୍ଧିଲେ ଜଟାଭାର
ତିନିସରି କରିଣ ବାନ୍ଧଲେ ଶିରପର ।
ଦେଖିଣ ସୁମନ୍ତ ନୟନୁ ଅଶ୍ରୁଜଳ ପକାଏ
ଜାନକୀଙ୍କ ବିକଳ କହିଲେ ନସରଏ ।
ଗୁହ୍ୟନାମେ ଶବର ବହୁତ ଦୁଃଖମନେ
ଅତିମାନେ ତଳକୁ ପୋତିଲେ ବଦନେ ।
ଜଟାବାନ୍ଧି ଶ୍ରୀରାମ ଗଙ୍ଗାତୀରେ ଯାଇ
ଶବର ଲୋକ ପେଶି ନାଉରୀକି ଡକାଇ ।
ତକ୍ଷଣେ ନାଉରୀ ନାବକଲା ଆଣି
ସୁମନ୍ତଙ୍କୁ ଚାହିଁଣ ବୋଲନ୍ତି ରଘୁମଣି ।
ଭୋ ମନ୍ତ୍ରୀବର ତୁମ୍ଭେ ବାହୁଡ଼ିଣ ଯାଅ
ପିତା ମାତାଙ୍କୁ ମୋର ନମସ୍କାର ବୋଲି କହ
ନୃପ କରିବେ ଭରତକୁ ତୋଷଭର ହୋଇ
ନିଶ୍ଚିନ୍ତ ହୋଇଣ ରାଜ୍ୟ କର ତହିଁ ।
ଜନନୀମାନଙ୍କୁ କହିବ ବୁଝାଇ
କଳି ନ କରିବେ ସପତଣୀ ହିଂସା ବହି ।
ଶତ୍ରୁଘନକୁ ତୁମ୍ଭେ କହିବ ବିଶ୍ୱାସ
ସେବାକରିଥିବ ନିତି ଭରତର ପାଶ ।
ବଶିଷ୍ଠଙ୍କୁ ମୋର ନମସ୍କାର କହିବ ଯାଇ
ରାଜ୍ୟକୁ ପାଳିବେ ସେ ସାବଧାନ ହୋଇ ।
ନଗ୍ରଲୋକଙ୍କୁ ତୁ ବୋଲିବୁ ନଭାଳ
ଭରତ ତୁମ୍ଭର ଅଟନ୍ତି ମହୀପାଳ ।
ଚଉଦବରଷ ଯାଏଁ ପରଜା ଦୁଃଖୀ ନୁହେ
ଧର୍ମରେପାଳିବ ପୃଥ୍ୱୀ ଯେହ୍ନେ ଅପଖ୍ୟାତି ନୁହେ
ଏତେ କହି ଶ୍ରୀରାମ ନାବପରେ ବସି
ନାବିକ ଦେଖିଣ ମନରେ ବଡ଼ ଖୁସି ।
ବୋଲଇ ଶ୍ରୀରାମ ତୁମ୍ଭେ ରହରହ ପୁଣି
ଏ ନାବ ଖଣ୍ଡିକେ ମୋର ଚଳନ୍ତି ଦଶପ୍ରାଣୀ ।
ତୁମ୍ଭର ଚରଣେ ଅଛଇଁ ଯେଉଁ ରେଣୁ
ପାଷାଣମାନେ ଯୁବତୀ ହୋନ୍ତି ତେଣୁ ।

ପଥୁକୀମାନେ ଏ ବାଟେ ଯାନ୍ତି ପଥବହି
ଏକ ଆରେକରେ ହୁଅନ୍ତି କୁହାକୁହି ।
ଦଶରଥ ରାଜା ଯେ ଅଯୋଧ୍ୟା ଈଶ୍ୱର
ଶ୍ରୀରାମ ନାମେ ଜ୍ୟେଷ୍ଠ ତାହାଙ୍କ କୁମର ।
ବିପିନ ବନରେ ସେ ପାଷାଣେ ପାଦ ଦେଲେ
ତତକ୍ଷଣେ ପାଷାଣ ଯୁବତୀ ହୋଇଲେ ।
ଚରଣ ପଖାଳି ମୋ ନାବ ପରେ ବସ
ଶୁଣିକରି ରଘୁନାଥ ହେଲେ ହସ ହସ ।
ବୋଇଲେ ଡରାଇ ମନରୁ ଚିନ୍ତା କର ଦୂର
ସେକଥା ତୋର ଆଗେ କହୁଛି ପ୍ରତେ କର ।
ବିଶ୍ୱାମିତ୍ର ଋଷିଙ୍କର ଯାଗ ରଖିଗଲୁ
ମିଥିଳାକୁ ଯାଉ ଯାଉ ପଥରେ ଦେଖିଲୁଁ ।
ଗଉତମ ଋଷିଙ୍କର ଭାରିଯା ଅହଲ୍ୟା
ଗଉତମଙ୍କ ଶାପରେ ପାଷାଣ ହୋଇଥିଲା ।
ପତି ଆଜ୍ଞା ଥିଲା ରାମ ଚରଣ ଲାଗିଲେ
ନିଜ ଶରୀରକୁ ପାଇବୁ ତୁ ଭଲେ ।
ଏକଥା ଗୋଟି ଡରାଇ ନାହୁଁ ତଥ୍ୟ ଜାଣି
ଏକଥା ଶୁଣି ନିର୍ମଳ ହେଲୁ କି ତୁ ପୁଣି ।
ଏତେ କହି ଶ୍ରୀରାମ ନାବ ମଙ୍ଗେ ଥାଇ
ଗଙ୍ଗାଜଳ ଧରିଣ ପାଦ ଦେଲା ଧୋଇ ।
ତେବେ ନାବିକ ନାବରେ ବସାଇଲା ନେଇ
ଲକ୍ଷ୍ମଣ ସୀତାଙ୍କୁ ଶୁଖିଲା ସ୍ଥାନ ଦେଇ ।
କରରେ କାତଧରି ବାହିନେଲା ନାବ
ସୁମନ୍ତଙ୍କୁ ଚାହିଁଣ କହିଲେ ରାଘବ ।
ଆହେ ମନ୍ତ୍ରୀବର ତୁମ୍ଭେ କୁଶଳେ ଚଳିଯାଅ
ସକଳ ଶୁଭରେ ଅଯୋଧ୍ୟା ପୁରେ ହୁଅ ।
ଶବରକୁ ହସ୍ତ ଠାରି ଦେଲେ ରଘୁପତି
ବାହୁଡ଼ି ଯାଅ ମିତ୍ର ବୋଲିଣ ବୋଲନ୍ତି ।
ଶୁଣିକରି ଶବର ଦୂରରୁ ଡାକ ଦୋଇ
କୂଳେ ରହ ପାରି ନହୁଅ ରଘୁସାଇଁ ।
ଆମ୍ଭ ଦୁଇ ପ୍ରାଣୀଙ୍କର ତୁମ୍ଭ ଚରଣେ ନମସ୍କାର
ଦୟା କରିଥିବ ମୋତେ ଅଯୋଧ୍ୟା ଈଶ୍ୱର ।
ଏ ସମୟରେ ଶବର ଭାରିଯା ଆସି ମିଳି
ଫଳ ମୂଳ ଦେଇଣ କଲା ନିଉଛାଳି ।
ଏଥୁ ଅନନ୍ତରେ ନାଉରୀ ନାବ ବାହି
ପବନହୁଁ ବେଗେ ନାବ ଚଳିଯାଇ ।

ଆପଣାର ଶିରରେ ଶ୍ରୀରାମ ପାଣି ସିଞ୍ଚି
ଲକ୍ଷ୍ମଣ ସୀତା ଶିରରେ ନେଇ ପାଣି ସିଞ୍ଚି ।
ଗଙ୍ଗାସ୍ତୁତି ଯେ କରନ୍ତି ରଘୁନାଥ
ଜୟ ଜୟ ସୁରେଶ୍ୱରୀ ଜଗତର ମାତ ।
ବିଷ୍ଣୁ ଚରଣରେ ସର୍ବଦା ବାସ ତୋରି
ମ୍ଳେଚ୍ଛଜନମାନଙ୍କୁ ମୁକତି ଗତିକରି ।
ଧବଳବଦନୀ ହେମବନ୍ତ ନନ୍ଦିନୀ
ତୁମ୍ଭେ ଭାଗ୍ୟରେ ଅଟ ବରୁଣ ପାଟରାଣୀ ।
ତ୍ରିଦଶ ଚିନ୍ତା କଲେ ଆକାଶ ବାହିନୀ
ନମୋ ନମୋ ମାଗୋ ସଂସାର ଉଦ୍ଧାରିଣୀ ।
ଶଙ୍କର ତୋତେ ଗୋ ଧରିଛନ୍ତି ଶିରେ
ସପତ ସାଗର ମାତ ପୂରିଲା ତୋହରେ ।
ପାପୀଜନମାନେ ପାଆନ୍ତି ତୋରେ ଗତି
ତୁ ଦେବୀ ଭକ୍ତବତ୍ସଳ ଅଟୁ ପଦ୍ମିନୀ ଜାତି ।
କର ଅନୁଗ୍ରହ ଗୋ ପବିତ୍ରମୟୀ ଦେହୀ
ଶୁଣିକରି ଗଙ୍ଗାଦେବୀ ପରସନ୍ନ ହୋଇ ।
ଏମନ୍ତ ବୋଲି ସ୍ତୁତି କଲେ ଶ୍ରୀରାମ
ସୁଦୟା କଲେ ତହୁଁ ବରୁଣ ପ୍ରିୟତମ ।
ମାଣିକ୍ୟର ଝରି ଗୋଟିଏ ଆଣିଦେଲେ
ନୀଳାରେ ଥାଳଟିଏ ଆଣି ସମର୍ପିଲେ ।
ନଦୀ ଭିତରେ ଥାଇ କହନ୍ତି ବଚନ
ଫଳମୂଳ ଖାଇବ ମୁକୁତା ଥାଳେଣ ।
ମାଣିକ୍ୟର ଝରୀରେ ପିଇବ ଯେ ପାଣି ।
ଅମୂଲ୍ୟ ରତ୍ନଝରି ଜାନକୀ ଦେଲେ ପୁଣି ।
ସୁବର୍ଣ୍ଣର ବାଟିରୁ ଗୋଟିଏ ଆଣିଦେଲେ
ହସ୍ତରେ ବାଢ଼ି ଏଥିରେ ଭୁଞ୍ଜ ଗୋ ବୋଇଲେ
ଲକ୍ଷ୍ମଣଙ୍କୁ ଦେଲେ ସୁବର୍ଣ୍ଣ ଝରି ପୁଣି
ସୁକଳରେ ବାଟିଦେଲେ ପୁଣି ଆଣି ।
ବୋଇଲେ ସୁନ୍ଦରୀ ଦୟା କରିଥିବୁ ପୁଣି
ମାଗ ବର ଜାନକୀ ଦେବୀ ମୁଁ ଏକ୍ଷଣି ।
ସୀତୟା ବୋଇଲେମାତ ପ୍ରସନ୍ନ ଯେବେ ହେଲୁ
ପାକକଲେ ଅମୃତ ହୋଇବ ବେଳୁଁ ବେଳୁଁ
ଅଲଣା ଦରସିଝା ନୋହିବ ଯେ ପୁଣ
ଜଣକୁ ସମ୍ପାଦିଲେ ଭୁଞ୍ଜିବେ ଲକ୍ଷେଜଣ ।
ବନସ୍ତକୁ ମୁହିଁ ଯାଉଅଛି ସ୍ୱାମୀ ସଙ୍ଗେ
ଫଳମୂଳ ଯାହା ଦେବି ଅମୃତ ସଂଯୋଗେ ।

ଶୁଣିଣ ଗଙ୍ଗଦେବୀ ସନ୍ତୋଷ ହୋଇଲେ
ଅସ୍ତୁହେଉ ବୋଲିଣ ବଚନ କହିଲେ ।
ଶବର ସୁମନ୍ତ ନାଉରୀ ଆନ ନଜାଣିଲେ
ଗଙ୍ଗାଦେବୀ ସଙ୍ଗେ ରାମ କଥାବାର୍ତ୍ତା ହେଲେ ।
ବାଟିଝରି ସଂପାଦିଲେ ଲକ୍ଷ୍ମଣ ନେଇଣ
ସନ୍ତୋଷ ହୋଇଲେ ଗଙ୍ଗା ଶ୍ରୀରାମରେ ପୁଣ ।
ଶ୍ରୀଭୁଜରେ ନାବଗୋଟି ଟୋଳିଣ ଧଇଲେ
ଅନ୍ତରୀକ୍ଷେ ନାବନେଇ କୂଳରେ ଲଗାଇଲେ
ଜାନକୀ ସୁବର୍ଣ୍ଣ ବାହି ଦିଶିଲା କିରଣ
ଆନନ୍ଦ ହେଲେ ଲକ୍ଷ୍ମଣ ଜାନକୀ ତିନିଜଣ ।
ନାବରୁ ଓହ୍ଲାଇ ଶୁଭେ ଚଳିଗଲେ
ନିଗମ ବନରେ ପ୍ରବେଶ ହୋଇଲେ
ଅତ୍ୟନ୍ତ ସୁସଞ୍ଚ ଅରଣ୍ୟ ଚାରୁଶୋଭା
ଯହିଁରେ ନଲାଗଇ ଆଦିତ୍ୟର ପ୍ରଭା ।
ଆଗରେ ଶ୍ରୀରାମ ମଧରେ ଦେବୀ ସୀତା
ପଛରେ ଲକ୍ଷ୍ମଣ ଚାଲନ୍ତି ଜଗଜ୍ଜ ତା ।
ଅଦୃଶ୍ୟ ହେବାରୁ ସୁମନ୍ତ ବାହୁଡିଲା
ତୁଚ୍ଛାରଥ ଘେନିଣ ଅଯୋଧ୍ୟାପୁରେ ଗଲା
ଗୁହ୍ୟ ନାମେ ଶବର ଗଲା ନିଜପୁରେ
ଗହନବନେ ଶ୍ରୀରାମ ପ୍ରବେଶ ହୋଇଲେ ।
ନିବିଡରେ ଗହନ ଅନ୍ଧାର ଭୟଙ୍କର
ଲତା ପର୍ବତ ମିଶିଣ ଦିଶିଲେ ମହାଘୋର ।
ପଦ୍ମପୋଖରୀ ଗୋଟିଏ ଦେଖିଲେ ରାମ ଯାଇ
ନାନାଦି ଜଳଚର ଚରନ୍ତି ଯେ ତହିଁ ।
କୂଳରେ ବିଶାଳ ବଟବୃକ୍ଷ ଅଛି
ସେ ବୃକ୍ଷ ମୂଳରେ ମିଳିଲେ ରଘୁବଂଶି ।
ଶ୍ରୀରାମ ବୋଇଲେ ଲକ୍ଷ୍ମଣ ସୀତା ତୁମ୍ଭେ ରହ
ମୃଗ ମାରିଣ ମୁଁ ଆଣିବି ନିଶ୍ଚୟ ।
ସୀତା ବୋଇଲେ ନାଥ ଶୁଣ ମୋର ବାଣୀ
ଫଳମୂଳ ଆହାର କର ଗୁଣମଣି
ବଟ ବୃକ୍ଷମୂଳେ ରାମ ଦେଖିଲେ ନିର୍ମଳ
ଲକ୍ଷ୍ମଣ ନିର୍ମଳ କଲେକ ତତ୍‌କାଳ ।
ହାତୀଭଙ୍ଗା କାଠ ପତର ସେ ଆଣି
ଯତନେ କୁଟୀର ତିଆରି କଲେ ପୁଣି ।
ମାଣିକ୍ୟର ଝରୀରେ ଜଳ ସିଞ୍ଚିଦେଲେ
ବିଷ୍ଣୁ ବିଷ୍ଣୁ ବୋଲି ସେ ସ୍ଥାନ ପ୍ରତିଷ୍ଠା କଲେ ।

ମୁକୁତା ବାଟିରେ ରାମ କରିଲେ ଭୋଜନ
ଆଚମନ କରିଲେ ଭୋଜନ ସାରିଣ ।
ସୁବର୍ଣ୍ଣ ଝରିଲେ ଲକ୍ଷ୍ମଣ ପାଣିଦେଲେ
ଜନକ ଦୁହିତା ଭୋଜନ ଯେ କଲେ ।
ଲକ୍ଷ୍ମଣ ଭୁଞ୍ଜିଲେ ଫଳମୂଳ ଶେଷ
କଷା ଫଳ ଖାଇଣ ହେଲେ ସେ ସନ୍ତୋଷ ।
ଶ୍ରୀରାମ ବୋଇଲେ ଆଜି ଏଠାରେ ରହିବା
ନିର୍ମଳ ଜଳ ଏ ଆହାର କରିବା ।
ରାମ ବୋଇଲେ ସୀତାଙ୍କୁ ରଖିଥା ଲକ୍ଷ୍ମଣ
ମୃଗ ମାରିଣ ମୁଁ ଆଣିବି ଏହିକ୍ଷଣ ।
ଏତେ କହି ଶ୍ରୀରାମ ଧନୁରେ ଗୁଣଦେଲେ
ଓଝାନେକ ଯାନ୍ତେ ସେ ମୃଗେକ ଦେଖିଲେ ।
ନାରାଚ ପୁରେଇ ବିନ୍ଧିଲେ ସ୍ୱତ୍ରକରି
ଶ୍ରୀରାମ ନାରାଚରେ କୁରଙ୍ଗ ପ୍ରାଣହାରି ।
ଦେଖିଣ ରଘୁନାଥ ଧଇଲେକ ଯାଇ
ବସାକୁ ଘେନିଗଲେ କନ୍ଧରେ ପକାଇ ।
ଦେଖିଣ ସୀତାୟା ବିଚଳିତ ମନ
ନୟନରୁ ଲୋତକ ବହେ ଘନଘନ ।
ଯାହାର କନ୍ଧରେ ତ୍ରୈଲୋକ୍ୟ ଲକ୍ଷ୍ମୀଥାଇ
ବିହିବାମ ହେଲା ମଲା ମୃଗକୁ କନ୍ଧେ ବହି ।
ଶ୍ରୀରାମ ବୋଇଲେ ସଖୀ ସନ୍ତାପ ନକର
ଯେତେବେଳେ ଯେଉଁକଥା ସେ କଥା ବିଚାର
ଆଜ ଯାକୁ ପାଇଲଇଁ ହେଲା ବହୁକାର୍ଯ୍ୟ
ମନୁସୁଖେ ଭୋଜନ କରିବା ଗୋ ଆଜ ।
ତିନିଦିନ ଉପବାସେ ଯିବ ଯେ ପଳାଇ
ଏବେ ଏହା ରନ୍ଧନ କର ତୋଷ ହୋଇ ।
ଶୁଣିକରି ଲକ୍ଷ୍ମଣ କୁରଙ୍ଗୀ କେଳାଇଲେ
କଟାରୀରେ ମାଂସକୁ ଆନଆନ କଲେ ।
ଖଣ୍ଡିଖଣ୍ଡି କରି କାଟିଲେ ଥୋକେ ପୁଣି
ଥୋକେ ରଖିଲେ ଆରଦିନକୁ ନିର୍ମାଣି ।
ଖଣନ୍ତି ଘେନି ରାମ ଖୋଳିଲେକ ଚୁଲ୍ଲୀ
ଲାଉ ଘେନି ସୀତା ଆଣିଲେ ଜଳତୋଳି ।
ଲୋହିତକପରା ଯେ ମାନସଜ କଲେ
ଝକମକି ପଥର ଶ୍ରୀରାମ ଠୁକିଲେ ।
ତତକ୍ଷଣ ଜାତ ହୋଇଲା ଅନଳ
ହାତୀଭଙ୍ଗା କାଠ ସମ୍ପାଦି କଲେ ଜାଳ

ମାଂସକୁ ଯତନେ ରାନ୍ଧିଲେ ବଇଦେହୀ
ଦେଇ ପିତୃଙ୍କୁ ତର୍ପଣ କଲେ ରଘୁସାଇଁ ।
ପଲାଶ ପତ୍ରରେ ଶ୍ରୀରାମ ଭୁଞ୍ଜି ବସି
ସୀତୟା ପରସନ୍ତି ରାମ ମନ ତୋଷି ।
ଶ୍ରୀରାମଙ୍କୁ ଦେଇ ସାରି ଲକ୍ଷ୍ମଣଙ୍କୁ ଦେଲେ
ଶ୍ରୀରାମ ସାରିବାରୁ ସୀତୟା ଭୁଞ୍ଜିଲେ ।
ଆଚମନ ସାରିଣ ଭୁଞ୍ଜିଲେ କଷାଫଳ
ଶିଆଳ ପତ୍ର ଯେ ଆଣିଲେ ତତକାଳ ।
ଶ୍ରୀରାମ ସୀତାଙ୍କ ପାଇଁ ଶେଯ ସଜାଇଲେ
ଲକ୍ଷ୍ମଣଙ୍କ ପାଇଁ ମଢ଼ିଆ ରଚିଲେ ।
ହରିଡା ଫଳ ଶ୍ରୀରାମଙ୍କୁ ଦେଲେ ନେଇ
ତିନିଖଣ୍ଡ କରିଣ କାଟିଲେ ରଘୁସାଇଁ ।
ଲକ୍ଷ୍ମଣ ସୀତାଙ୍କୁ ଖଣ୍ଡେ ଖଣ୍ଡେ ଦେଲେ
ଶେଷଖଣ୍ଡ ଶ୍ରୀରାମ ଆପଣେ ଭୁଞ୍ଜିଲେ ।
ଏସନେକ ସମୟ ହୋଇଲା ତିମିରୀ
ଶଯ୍ୟାରେ ବିଜେ ରାମ ଜାନକୀ ଭୁଜ ଧରି ।
ମଢ଼ିଆ ଶଯ୍ୟାରେ ଲକ୍ଷ୍ମଣ ଯାଇ ବସି
ଅଯୋଧ୍ୟାରେ କଥା ରାମ ମନରେ ପ୍ରବେଶି ।
ଲକ୍ଷ୍ମଣଙ୍କୁ ବୋଇଲେ ଶୁଣ ଆରେ ଭାଇ
କି କରୁଥିବେ କଉଶଲ୍ୟା ସୁମିତ୍ରା ଆଈ ।
କିଏ ସେ ତାଙ୍କର କୋଳରେ ଥିବେ ବସି
କାହାକୁ ଦେଖି ତାଙ୍କର ମନ ହେବ ଖୁସି ।
କୈକୟା ଜନନୀ ଆବର ସର୍ବ ମାତା
କେବଣଠାରେ ରୁଣ୍ଡ ହୋଇଥିବେ ସ୍ରୋତା ।
କେଉଁଠାରେ ଅବକାଶ ହୋଇଥିବେ ପିତା
ମନରୁ ସୁଖ ସବୁ ଭାଙ୍ଗିଲା ବିଧାତା ।
ଭ୍ରତ ଶତୃଘ୍ନଠାକୁ ପେଶିବେଣି ଦୂତ
କେଉଁଠାବରେ ଯାଇ ରହିବ ସୁମନ୍ତ୍ର ।
କିସ କରୁଥିବେ ଅଯୋଧ୍ୟା ନର ନାରୀ
ଭରତ ପାରିବଟି କି ରାଜପଣ କରି ।
ଶତୃଘନ ତାହାକୁ କରିବଟିକି ସେବା
ବଶିଷ୍ଠ ଯାବାଳି କଶ୍ୟପ ବାମଦେବା ।
ଏମାନେ ଥିଲେ କି ରାଜାଙ୍କୁ ମନ୍ଦଅଛି
ଏକଥା ଶୁଣି ବୋଲନ୍ତି ସୁମିତ୍ରାଙ୍କ ବସି ।
ତୁମ୍ଭେ କିମ୍ଭା ଭୋଦେବ ସୁମର ନିଜ ଦେଶ
ଅଗ୍ନିଲାଗି ଅଯୋଧ୍ୟା ଯାଉ ହେ ବିନାଶ ।

ଦଶରଥ ରାଜାଙ୍କର ଏବେ ହେଉ ମୃତ୍ୟୁ
ଆବର ଜନନୀମାନେ ସର୍ବେ ଜଳିଯାନ୍ତୁ ।
ଭରତ ଶତୃଘନ ପ୍ରାଣେ ଯାନ୍ତୁ ନାଶ
ମନ୍ତ୍ରୀଗଣମାନଙ୍କର ବୁଡ଼ିଯାଉ ବଂଶ ।
ଆମ୍ଭଙ୍କୁ ଯେବେ ତେଜିଲେ ଆମ୍ଭର କେଉଁଆଶ
ବିହି ଯଦି ଆମ୍ଭଙ୍କୁ ବନରେ ଦେଲା ବସା ।
ଆମ୍ଭେ ଭଲେ ରହିବାର ତୁମ୍ଭେ ବିଚାର କର
ଅଯୋଧ୍ୟା ନଗ୍ରରେ କି କାର୍ଯ୍ୟ ଆମ୍ଭର ।
ରାମ ବୋଲନ୍ତି ଲକ୍ଷ୍ମଣ ତୁ କିଛି ନ ଜାଣୁ
ଆମ୍ଭେ ତ ସମସ୍ତଙ୍କୁ ଏକ ପ୍ରାୟ ମଣୁ ।
ଅଯୋଧ୍ୟା ବନବାସ ଦୁହେଁ ତ ସମାନ
କିମ୍ପାଇଁ ସଉମିତ୍ରୀ କହୁଛୁ ଏମାନ ।
କୈକୟା ମାତା ଆମ୍ଭଙ୍କୁ ପେଶିଲେ ଯେ ବନ
ମୋହର ମନରେ ତାହାଙ୍କୁ ନାହିଁ ଆନ ।
କଉଶଲ୍ୟା ସୁମିତ୍ରା ସମସ୍ତେ ଏକାନ୍ତ
ଭରତ ଶତୃଘନ ତୋ ତହୁଁ ଅଧିକ ତ ।
ଶ୍ରୀରାମ ବଚନ ଶୁଣି ବୋଲନ୍ତି ଲକ୍ଷ୍ମଣ
ତୁମ୍ଭେ ଦେବ ଧାର୍ମିକ ପବିତ୍ର ସୁଲକ୍ଷଣ ।
କଇକୟା ଜନନୀ କଲେ ଦେବ ଯାହା
ତୋହର ବଳେ ସ୍ୱାମୀ ମୁରୁଛି ନୁହେ ତାହା ।
ଦେବତା ଅସୁରଙ୍କର ପ୍ରୀତି କେଭେ ନାହିଁ
ଏକଇ ପିଅର ସେ ବେଗଳ ଅଟେ ଗାଈ ।
ଯେବେ ଏତେ ଲୋକମାନେ ବିହିବେ ଅହନ୍ତା
ଦୈତ୍ୟଙ୍କୁ ନାଶିବାକୁ ଯେବେ କଲେ ଚିନ୍ତା ।
ଭୋ ଦେବ ପୁରୁଷ ତୁମ୍ଭେଟି ଉତ୍ତମ
କହିଲେ ନ ସରିବ ତୁମ୍ଭର ଯେଉଁ ଧର୍ମ ।
ଏସନେକ କଥା ହୁଅନ୍ତେ ଭାଇ ବେନି
ଶ୍ରୀରାମ ଉଠିଲେ ଅଳସ ଭାବ ଘେନି ।
ନିଦ୍ରା ଆଳସୀ ହୋଇ ପହୁଡ଼ିଲେ ରଘୁମଣି
ଲକ୍ଷ୍ମଣ ଜଗି ବସିଲେ ଧନୁ ଶସ୍ତ୍ର ଘେନି ।
ଯଦ୍ୟପି ସଉମିତ୍ରୀ ବସିଲେ ଭୂମିର
ଚେତା ହୋଇ କରେ ଧଇଲେ ଧନୁଶର ।
ଏସନକ ସମୟେ ଶୁଣ ଭଗବତୀ
ପାଣି ଖାଇବାକୁ ଅଇଲେ ମତ୍ତହସ୍ତୀ ।
ସହସ୍ରେକ ହସ୍ତୀ ସେଠାରେ ରୁଣ୍ଡ ହେଲେ
ପୁଷ୍କରିଣୀରେ ପଶି ଜଳପାନ କଲେ ।

ମତ୍ତଭର ହୋଇଣ ବୃକ୍ଷ ସେ ଭାଙ୍ଗିଲେ
ଲକ୍ଷ୍ମଣ ସେଠାରୁ ଉଠିକରି ଚେତା ହେଲେ ।
ହସ୍ତୀମାନେ ଯାଇ ଚାରିପାଶେ ଘେରିଗଲେ
ଗର୍ଜ୍ଜନରେ ବନଭୂମି କମ୍ପାଇଲେ ।
ଦେଖିକରି ଲକ୍ଷ୍ମଣ ଧଇଲେ ଧନୁକରେ
ବାଛିକରି ନାରାଚ ବିନ୍ଧିଲେ ସତ୍ୱରେ ।
ଏକ ନାରାଚରେ ଦଶବିଂଶ ପଡ଼ି
ଗର୍ଜ୍ଜନର ଘାଏ କି ପର୍ବତ ଭାଜି ପଡ଼ି ।
ହାଙ୍କିଣ ନାରାଚ ବିନ୍ଧିଲେ କୋପକରି
ଦେଖିଣ ମତ୍ତହସ୍ତୀ ଚାରିପାଶେ ଘେରି ।
ମନରେ ବିଚାରିଲେ ସଉମିତ୍ରି ପୁଣି
ଶ୍ରୀରାମ ଜାନକୀଙ୍କୁ କୁଦିବେ ଏହିକ୍ଷଣି ।
ଏତେବୋଲି ଲକ୍ଷ୍ମଣ ମୋହଶର ବିନ୍ଧି
ଦଶହାତ ଛଡ଼ାରେ ରହିଲେ ନାଗବନ୍ଧି ।
ବିନ୍ଧିଲୋକ ନାରାଚ ତୁହାଇ ଲକ୍ଷ୍ମଣ
ପଡ଼ିଲେ ହସ୍ତିମାନେ ବନସ୍ତ ମାଡ଼ିଣ ।
ସହସ୍ରେ ହସ୍ତି ଯେ କ୍ଷଣକେ ନାଶଗଲେ
ବାରଗୋଟି ଶାର୍ଦ୍ଦୂଳ ସେଠାରେ ମିଳିଲେ ।
ଦେଖିକରି ଲକ୍ଷ୍ମଣ ବିନ୍ଧିଲେ ବେଗେ ବାଣ
ପଡ଼ିଲେ ଶାର୍ଦ୍ଦୂଳ ଛାଡ଼ିଲେକ ପ୍ରାଣ ।
ଏମନ୍ତ ସମୟରେ ଶବରୀ ଶେଷହେଲା
ପୂର୍ବ ଦିଗରୁ ରବି ତେଜ ପ୍ରକାଶିଲା ।
ନିଦ୍ରାଭଗ୍ନ ହୋଇଣ ଉଠିଲେ ରଘୁପତି
ଆଗକରି ଉଠିଲେ ଜନକ ଦୁହିତୀ ।
ଶ୍ରୀରାମ ବୋଇଲେ ସଉମିତ୍ରୀ ଶୁଣ
ନିଦ୍ରା ନମାଡ଼ଇ ତୋତେ କେଣିକି ଗଲେ ପୁଣ
ଶର୍ଯ୍ୟାରୁ ଉଠି ଲକ୍ଷ୍ମଣ ନମସ୍କାର କଲେ
ସେଠାରୁ ପୁଣ ସେ ସୀତାଙ୍କୁ ନମିଲେ ।
ଲକ୍ଷ୍ମଣ ବୋଇଲେ ଦେବ ନଥିଲି ନିଦ୍ରା ଯାଇ
ପାଇଲା ରାତିକି ମୁଁ ଆଖିତ ବୁଜଇ ।
ଏ ଘୋର ବନସ୍ତରେ କେମନ୍ତେ ଯିବି ନିଦ
ଅଗମ୍ୟ ଭୂମି ଏତ ବହୁତ ପ୍ରମାଦ ।
ତୁମ୍ଭେ ଦେବ ସୀତାଙ୍କୁ ଘେନିଣ ନିଦ୍ରାଗଲ
ଏ ଦୁର୍ଗମ ସ୍ଥାନରେ ନିଶ୍ଚିନ୍ତେ ଶୋଇଲ ।
ଦେଖ ଦେଖ ସ୍ୱାମୀହେ ପୋଖରୀ ଚାରିପାଖ
ଦେଖିକରି ଶ୍ରୀରାମ ହୋଇଲେ ସ୍ତମ୍ଭୀଭୂତ ।

ବୋଇଲେରେ ଲକ୍ଷ୍ମଣ ଏହୁ ଅସମ୍ଭବ
ଏଡ଼େ ନିଦ୍ରା ଗଲୁଁ ଆମ୍ଭେ ହୋଇଣ ବଡ଼ଦମ୍ଭ
ଜାନକୀଙ୍କି ଘେନି ରାମ ବୁଲନ୍ତି ଚଉକତି
ଦେଖିଲେ ପଡ଼ିଛନ୍ତି ସହସ୍ରେ ମତ୍ତହସ୍ତୀ ।
ବାରଗୋଟି ଶାର୍ଦ୍ଦୂଳ ଦେଖିଲେ ରାମ ତହିଁ
ଦିକୋଶେ ଲଗାଇଦେଇ ପଡ଼ିଛନ୍ତି ସେହି ।
ଦେଖିଣ ପ୍ରଶଂସା କରନ୍ତି ରଘୁପତି
ଏଡ଼େ ଦୁଃଖ କାଳେ ନୋହିଲା ଚେଲାବୃତ୍ତି ।
ତୁ ମୋହର ଭାଇ ଅଟୁ ପ୍ରାଣର ସଖା
ତୁହି ଆସି ନଥିଲେ ମୁଁ ଦୁଃଖ ପାନ୍ତି ଏକା ।
ଏତେବୋଲି ଶ୍ରୀରାମ ଲକ୍ଷ୍ମଣ କରଧରି
ସେ ସ୍ଥାନରୁ ଶ୍ରୀରାମ ଗଲେ ଅପସରି ।
ପଦ୍ମତୋଳା ନଦୀରେ ସାରିଲେ ନିତ୍ୟକର୍ମ
ବାଟେ ଯାଉ ଯାଉ ରାମ ସୁମରନ୍ତି ଧର୍ମ ।
ବନସ୍ତ ଭିତରେ ଯାଆନ୍ତି ତିନିଜଣ
ଖୁଞ୍ଚକଣା କଣ୍ଟା ପର୍ବତ ପାଷାଣ ।
ଫୁଟିଣ ଜାନକୀ ପୁଚ୍ଛନ୍ତି ରଘୁନାଥ
କେତେଦୂର ଆଉ ଯିବା ଆମ୍ଭେ ପଥ ।
ଲେଉଟି ଶ୍ରୀରାମ ଚାହାଁନ୍ତେ ସୀତାମୁଖ
ବୋଇଲେ ସଖିରେ ପାଇଲୁ ବଡ଼ ଦୁଃଖ ।
ଅପାର ଦୂର ଏ ସଂଖୋଳା ନପାଇ
ଚଉଦବରଷ ଯାଏଁ ଯିବା ପଥବହି ।
ତିଆରିଲା ବୋଲ ନକଲୁ ପାଣସଖୀ
ଏବେ ତୁ ଅରଣ୍ୟରେ ହେବୁ ବଡ଼ ଦୁଃଖୀ ।
ପିତାଘରେ ଯାଇ ତୁ ନିଶ୍ଚିନ୍ତରେ ରହ
ଚଉଦବରଷ ଯାଏଁ ଆମ୍ଭଙ୍କୁ ଚାହିଁଥାଅ ।
ଲକ୍ଷ୍ମଣକୁ ସଙ୍ଗେ ଘେନି ଏହିକ୍ଷଣି ଚଳ
ସାତଦିନ ବାଟ ଏଠାକୁ ପିତାଘର ।
ଶୁଣିକରି ଜାନକୀ ମନରେ ଦୁଃଖକଲେ
ଏମନ୍ତ ବଚନ କିମ୍ପା ବୋଇଲ ବୋଇଲେ ।
ତୁମ୍ଭଙ୍କୁ ଛାଡ଼ି କିମ୍ପା ପିତାଘର ଯିବି
ତୁମ୍ଭର ସଙ୍ଗେ ଗଲେ କାରଣ ପାଇବି ।
ଏତେବୋଲି ତହୁଁ ଅନେକ ଦୂରଗଲେ
ଯାଉଁ ଯାଉଁ ଶବରପଲ୍ଲୀଏ ଦେଖିଲେ ।
ଏହାଙ୍କୁ ଦେଖିବାକୁ ଲୋକେ ତହୁଁ ଆସି
ଏକଆରକେଣ ହୁଅନ୍ତି ପରଶଂସି ।

କେ ବୋଲନ୍ତି ଅପୂର୍ବ ଅଟନ୍ତି ତିନିଜଣ
କେ ବୋଲେ ଏହାଙ୍କୁ ଭଲ କରି ଚିହ୍ନ ।
ବୁଲନ୍ତି ବନସ୍ତରେ ଦେବତା ତିନିଜଣ
ବନର ଦେବୀ ଏ ଅଛନ୍ତି ସଙ୍ଗତେଣ ।
କେ ବୋଲେ ସ୍ୱର୍ଗର ଗନ୍ଧର୍ବ ଅପସରୀ
ମର୍ତ୍ତ୍ୟଲୋକକୁ ଆସି ଅଛନ୍ତି ବିହରି ।
କେ ବୋଲଇ ଏମାନଙ୍କୁ କରୁଛ ମନେ ଭ୍ରାନ୍ତି
ଦେବା ଦେବୀ ଏମାନେ ବୁଲି ଯାଉଛନ୍ତି ।
ଶବର ଯୁବତୀମାନେ ନିକଟକୁ ଗଲେ
ଜାନକୀଙ୍କି ଚାହିଁଣ ବଚନ ପ୍ରକାଶିଲେ ।
ଏ ଦୁଇଜଣ କିସ ତୁମ୍ଭର ହୁଅନ୍ତି
ସତ କରିଣ ଆମ୍ଭଙ୍କୁ କହ ଆଗୋ ସତୀ ।
ଏକଥା ଶୁଣି ସୀତା ବୋଲନ୍ତି ଉତ୍ତର
ପଛରେ ଯାଉଛନ୍ତି ମୋହର ଦିଅର ।
ତାହା ଶୁଣି ଯୁବତୀଏ ବୋଲନ୍ତି ଉତ୍ତର
ତୁମ୍ଭର କିସ ହୁଅନ୍ତି ଯାଆନ୍ତି ଆଗର ।
ସେ କଥାକୁ ଜାନକୀ ସମସ୍ୟା ନଦେଲେ
ଶିର ଲମ୍ଭାଇ ବାଳୀ ତୁନି ପୁଣ ହେଲେ ।
ଯୁବତୀଏ ଜାଣିଲେ ଅଟନ୍ତି ୟାର ବର
ଏକକୁ ଆରେକ ଅଟନ୍ତି ଶୋଭାକର ।
ତାହାଙ୍କର ସଙ୍ଗରେ ଭାଳନ୍ତେ ବଇଦେହୀ
ରାମ ପଛକୁ ଚାହିଁଲେ ଥୋକେ ଦୂର ଯାଇ ।
ସୀତାଙ୍କୁ ନ ଦେଖିଣ ବୋଲନ୍ତି ରଘୁନାଥ
ଜାନକୀଙ୍କି କାହିଁକି ଛାଡ଼ିଲୁରେ ଭ୍ରାତ ।
ଲକ୍ଷ୍ମଣ ପଛକରି ଚାହିଁଣ ବୋଲନ୍ତି
ସେ ସ୍ତିରୀଜନଙ୍କ ସଙ୍ଗେ କଥା ହେଉଛନ୍ତି ।
ଏତେ ବୋଲି ଲକ୍ଷ୍ମଣ ପଛକୁ ଅନାଇଁ
ଠାକୁରାଣୀ ଠାକୁରାଣୀ ଉଚ୍ଚେ ଡାକଦେଇ ।
ଜାନକୀ ବୋଇଲେ ମୁଁ ଯାଉଅଛି ଚାଲ
ଲକ୍ଷ୍ମଣ ବୋଇଲେ ଏକଥା ନୁହେଁ ଭଲ ।
ଘୋର ଅରଣ୍ୟରେ ମାତ ଏକା କିମ୍ପା ରହୁ
ଯାହାକୁ ନ ଚିହ୍ନ ତା ସଙ୍ଗରେ କଥା ହେଉ ।
ଶବରଣୀ ବୋଇଲେ ଶୁଣ ରାଜପୁତ୍ର
ସ୍ତିରୀଙ୍କି ସ୍ତିରୀ ସିନା ପୁଛନ୍ତି ବାରତ ।
ଏତେବୋଲି ଶବରଣୀ ଗଲେ ନିଜପୁର
ଟଭା ଯେ ନାରଙ୍ଗ କମଳା କେନ୍ଦୁଫଳ ।

ପାଚିଲା ଆମ୍ବ ପଣସ ନଟିକାଳ
ପାଚିଲା କଦଳୀ ନଡ଼ିଆ ତାଳଫଳ ।
ନେଇଣ ଶବରଣୀ ସୀତାଙ୍କ ପାଶେ ଦେଲା
ଆଜ ମୋର ବଡ଼ଭାଗ୍ୟ ବୋଲିଣ ବୋଇଲା ।
ତୁମ୍ଭଙ୍କୁ ଆଜ ମୁଁ ଦେଖିଲି ନୟନେ
ମୋହର ଜନ୍ମ ସୁଫଳ ହେଲା ଏତେ ଦିନେ ।
ଏତେ କହି ଶବରଣୀ ଚରଣ ତଳେ ପଡ଼ି
ବହୁତ ବିନୟରେ କହେ କରଯୋଡ଼ି ।
ଜାନକୀ ବୋଲନ୍ତି ତୁମ୍ଭେ ନିଶ୍ଚିନ୍ତରେ ଥାଅ
ସଧବାପଣରେ ସ୍ୱର୍ଗପୁରେ ଯାଅ ।
ଏତେ କହି ଜାନକୀ ସେଠାରୁ ଚଳିଗଲେ
ଶବରଣୀମାନେ ନିଜ ମନ୍ଦିରେ ରହିଲେ ।
ଫଳ ମୂଳ ଲକ୍ଷ୍ମଣ କନ୍ଧରେ କଲେ ଭାର
ସେଠାରୁ ଚଳିଲେ ଜାନକୀ ଧୀର ଧୀର ।
ଶ୍ରୀରାମ ଦେଖିଲେ ବୈଦେହୀ ଆସନ୍ତି
ପଛକୁ କିମ୍ପାଇଁ ଗୋ ରହିଲ ବୋଲନ୍ତି ।
ଶ୍ରୀରାମଙ୍କୁ ଦେଖି ସୀତା ଲାଜଭର ହୋଇ
ଏଥୁ ଅନନ୍ତରେ କିଛିଦୂର ଯାଇ ।
ସୀତାଙ୍କୁ ଡାକି ରାମ ଲକ୍ଷ୍ମଣଙ୍କୁ ପୁଛାକଲେ
ମଧରେ ଜାନକୀ ଆପଣେ ଆଗରେ ।
ବେଳ ଅସ୍ତ ହୁଅନ୍ତେ ରହିଲେ ପ୍ରୟାଗରେ
ସେହିଠାରେ ବ୍ରହ୍ମ ଅଷ୍ଟ ଯାଗ କରିଥିଲେ ।
ଗଙ୍ଗା ସରସ୍ୱତୀ ଯମୁନା ତିନି ନଦୀ
ତ୍ରିବେଣୀର ନାମ ଯେ ଜଗତେ ପ୍ରସିଦ୍ଧ ।
ଭରଦ୍ୱାଜ ଋଷିଙ୍କର ଅଟଇ ଆଶ୍ରମ
ସେଠାରେ ପ୍ରବେଶ ହୋଇଲେ ଶ୍ରୀରାମ ।
ଅଗ୍ନିରେ ଆହୁତି ଦେଲେ ମହାଋଷି
ଶିଷ୍ୟଗଣ ତାଙ୍କର ଛାମୁରେ କହନ୍ତି ।
ଭୋ ମୁନି ଅପୂର୍ବ ସୁନ୍ଦର ବେନି ଯତି
ତାହାଙ୍କର ସଙ୍ଗରେ ଏକଇ ଯୁବତୀ ।
ଶୁଣିଣ ମହାମୁନି ଅଗ୍ନିରେ ହୋମ ସାରି
ବାହାର ହୋଇଣ ଅଇଲେ ତପଚାରୀ ।
ଦେଖିଲେ ଶ୍ରୀରାମ ଲକ୍ଷ୍ମଣ ସୀତା ତିନି
ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ପଚାରନ୍ତି ମୁନି ।
କିମ୍ପାଇଁ ରାଜା ତୁମ୍ଭେ ନୋହିଲ ରଘୁନାଥ
ବନକୁ ଅଇଲ ଧରି ଜଟା ମାଥ ।

ଶ୍ରୀରାମ ନମସ୍କାର କରିଣ କହନ୍ତି
କୈକୟୀ ମାତ ମୋତେ ବନକୁ ପେଶିଛନ୍ତି
ପିତାଙ୍କୁ ମୋର କପଟେ କରାଇଲେ ସତ୍ୟ
ଅଯୋଧ୍ୟାରେ ରାଜା ହୋଇବ ଭରତ ।
ଚଉଦ ବରଷ ରାମ ବନବାସ ଯିବ
ଫଳମୂଳ ଖାଇଣ ଦେଶ ନ ମାଡ଼ିବ ।
ତେଣୁକରି ବନକୁ ଅଇଲି ମହାରଷି
ପୁଣ୍ୟବଳେ ତୁମ୍ଭଙ୍କୁ ଭେଟିଲି ଏଥେ ଆସି ।
ଏ ମୋର ଘରଣୀ ଅଟେ ଜନକ ଦୁହିତା
ଏହାର ନାମ ଗୋଟି ଅଟଇ ଯେ ସୀତା ।
ନଗ୍ରରେ ନରହି ଏ ଗୋଡ଼ାଇ ଅଇଲା
ସଙ୍ଗରେ ନ ନେଲେ ପ୍ରାଣ ହାରିବ ବୋଇଲା
ଏହି ମୋର ଭାଇ ଅଟେ ସୁମିତ୍ରାଙ୍କ ପୁଅ
ଏହାର ନାମଟି ଲକ୍ଷ୍ମଣ ଯେ ଥୟ ।
ସୁଖଭୋଗ ତେଜିଣ ମୋର ସଙ୍ଗେ ଆଏ
ଯତନେ ପଠିଆଇ ଦେଲେ ଯାଙ୍କ ମାଏ ।
ଏ ତୁମ୍ଭଙ୍କୁ ନମସ୍କାର କରୁଅଛି ମୁନି
ଦେଖିଣ କଲ୍ୟାଣ ତାଙ୍କୁ କଲେ ତପୋଧନି ।
ପାଦପଖାଳିବାକୁ ଜଳପାତ୍ର ଦେଲେ
ଆସନରେ ବସାଇ ଗଉରବ କଲେ ।
ସନ୍ନିଧିରେ ବସାଇ ପଚାରେ ମହାମୁନି
କେମନ୍ତେ ବନରେ ବଞ୍ଚିବେ ଜଣ ତିନି ।
ମୋହର ବୋଲି ତୁମ୍ଭେ କର ହେ ଶ୍ରୀରାମ
ଲେଉଟି ଯିବା କି ତୋ ଅଯୋଧ୍ୟାର ଗ୍ରାମ ।
ମୁହିଁ ନେଇ ତୋତେ ତୋ ପିତା ପାଖେ ଦେବି
ଅଭିଷେକ କରାଇଣ ରାଜନ କରିବି ।
ଶ୍ରୀରାମ ବୋଇଲେ ମୁନି ନବୋଲ ଏ ବାଣୀ
ସତ୍ୟଭଗ୍ନ ହେବେ ପରା ମୋ ପିତା ନୃପମଣି
ସେ ମୋର ପିତା ଅଟଇ ମୁହିଁ ତାଙ୍କ ପୁତ୍ର
ତାଙ୍କୁ ଯାହା ସୁଖ ସେହୁ ବଡ଼ ହିତ ।
ତୁମ୍ଭେତ ବ୍ରହ୍ମମୁନି ଅଟ ତପଶୀଳ
ଏହା ମୋତେ ବୋଇଲ ବଚନ ନିଷ୍ଫଳ ।
ସତ୍ୟପାଳି ନଳରାଜା ବନସ୍ତେ ପଶିଲେ
ତାହାଙ୍କ ଘରଣୀ ଦମୟନ୍ତୀଙ୍କ ସଙ୍ଗେ ନେଲେ
ସତ୍ୟପାଳି ବଳି ଦେଖ ପାତାଳେ ରହିଲା
ସତ୍ୟପାଳି ନାଗରାଜା ପୃଥ୍ୱୀକି ଧଇଲା ।

ମୁହିଁ କିମ୍ପା ସତ୍ୟକୁ ଲଙ୍ଘିବି ଭୋ ମୁନି
ଏକଥା ଛାଡ଼ଣ କହ ଆନ ବାଣୀ ।
ଶୁଣିକରି ସନ୍ତୋଷ ହେଲେ ତପୋବନ୍ତ
ଶ୍ରୀରାମଙ୍କୁ ପ୍ରଶଂସା କରିଲେ ବହୁତ ।
ସାଧୁ ସାଧୁ ମହିମା ତୁ ଦଶରଥ ସୁତ
ସୂର୍ଯ୍ୟବଂଶରେ ତୋର ନାମ ଯେ ବିଖ୍ୟାତ ।
ତୋତେକିମ୍ପା ବନବାସେ ବିଧାତାଦେଲା ପେଶି
ଏତେଶୁଣି ମୁନି ପୁଣ ଧ୍ୟାନକରେ ବସି ।
ଯୋଗରେ ଜାଣିଲେ ଏ ବୈକୁଣ୍ଠ ବାସୀ ।
ଦେବଙ୍କର ଛଳେ ଅବତାର ଆସି ।
ବନରେ ବୁଲିଣ ଚାରି ରାବଣ ମାରିବେ
ଜାଣିକରି ସନ୍ତୋଷ ହେଲେ ମୁନିଦେବେ ।
ଶ୍ରୀରାମକୁ ବୋଇଲେ ନଭାଳ କିଛି ମନେ
ସୁଖେ ବସ ଯାଇ ଚିତ୍ରକୂଟ ବନେ ।
ଭାରିଜାକୁ ଶ୍ରୀରାମ ସଙ୍ଗରେ ଅଛଆଣି
ବିଘ୍ନ ଉପୁଜିବଟି ବୋଇଲେ ମହାମୁନି ।
ଚିତ୍ରକୂଟରେ ରହିବ ମୁନି ବେଶହୋଇ
ହସ୍ତରେ ଶସ୍ତ୍ର ତୁମ୍ଭେ ବହିବ ରଘୁସାଇଁ ।
ପଶ୍ଚିମ ଦିଗରେଟି ଦୈତ୍ୟଗଣ ଥାନ୍ତି
ସେକଥାକୁ ମନରେ କରିଥିବ ଭ୍ରାନ୍ତି ।
ପର୍ବତ ପୂର୍ବଦିଗେ ଗନ୍ଧର୍ବେ ଆତଜାତ
ଏହିକଥା ତହିଁରେ ଜାଣ ହେ ରଘୁନାଥ ।
ଦକ୍ଷଣ ଦିଗରେ ଅସୁରଙ୍କର ଭୂଇଁ
ତହିଁରେ ଅନୁକ୍ଷଣେ ଥିବଟି ଶସ୍ତ୍ରବହି ।
ଦଣ୍ଡକାରଣ୍ୟରେ ସୀତାଙ୍କୁ ନଛାଡ଼ିବୁ
ରାଜମାର୍ଗେ ଯିବୁଟି ଅମଡ଼ା ନାମାଡ଼ିବୁ ।
ଗୋଦାବରୀ କୂଳରେ ପଞ୍ଚବଟୀବନ
ତହିଁରେ ବିହରନ୍ତି ରାବଣ ଦୈତ୍ୟ ସୈନ୍ୟ ।
ମାଲ୍ୟବନ୍ତ ଜିଣିଗଲେ କିଷ୍କିନ୍ଧ୍ୟା ନାମେ ପୁରୀ
ବାଳିନାମେ ବାନର ତହିଁରେ ଦଣ୍ଡଧାରୀ ।
ଏକଥାକୁ ବିଚାରି ଥିବଟି ତୁମ୍ଭେ ମନେ
ଅଗସ୍ତ ଅଟନ୍ତିଟି ଥୋକାଏ ଘୋରବନେ ।
ସେ ତୁମ୍ଭଙ୍କୁ ଯାବତ କହନ୍ତି ସିନା ତହିଁ
ଶରଭଙ୍ଗ ମୁନି ଯେ ରହିଛନ୍ତି ତହିଁ ।
ଅତ୍ରି ମହାମୁନି ଅନୁସୂୟା ଘେନି
ରଷିକୂଲ୍ୟା ପଶ୍ଚିମେ ଅଛନ୍ତି ସେ ମୁନି ।

ଶବର ଶବରଣୀ ପଥମାର୍ଗେ ଥାଇ
ସ୍ୱାଦଫଳ ଛାଖିଣ ପଥିକୀ ଜନେ ଦେଇ ।
ପମ୍ପାସରୋବର ପାଞ୍ଚକୋଶ ଭୂଇଁ
କବନ୍ଧ ଅଛି ତହିଁରେ ପଥିକ ଜନ ଖାଇ ।
ଚିତ୍ରକୂଟରୁ ନ ଯିବ ନିଶାରେ ତୁମ୍ଭେ ପୁଣ
ସେମାନେ ବାଟରେ କରିବେ ହଇରାଣ ।
ପଞ୍ଚବଟୀବନରେ ପକ୍ଷୀଜଟା ଅଛି
ଗରୁଡ଼ ମହାତମୋର ସେହୁ ଅଟେ ବସି
ରାବଣର ଭଏଣୀ ସୂର୍ପଣଖା ନାମ
ମାୟାରୂପ ଧରି ସେ ଯାଚୁଥାଇ କାମ ।
ଏମନ୍ତେ ଅନେକ ପୁଣି ତିଆରନ୍ତି ମୁନି
ରଘୁନାଥ ସେ କଥା ଶୁଣନ୍ତି କର୍ଣ୍ଣେବେନି ।
ଋଷି ବୋଇଲେ ପଞ୍ଚବଟୀରେ ରହିବ
ଦଣ୍ଡେହେଁ ସୀତାଙ୍କୁ କେହ୍ନେହେଁ ନ ଛାଡ଼ିବ ।
ତାହାର ପାଶରେ ଜଗି ରହି ଥିବ
ଛାଡ଼ିଗଲେ ଆଉ ଯେ ଖୋଜିଲେ ନପାଇବ ।
ରାତ୍ର ଅର୍ଦ୍ଧଯାଏଁ ଏରୂପେ ଭାଳେଣି
ନିଦ୍ରାରେ ଆଳସ୍ୟ ହେଲେ ରଘୁକୁଳ ମଣି ।
ଫଳମୂଳ ଭୁଞ୍ଜି ସନ୍ତୋଷ ହୋଇଲେ
ପଣତପାଡ଼ି ସତୀ ଭୂମିରେ ଶୋଇଲେ ।
ଏକଥାକୁ ସତୀ ଯେ ନଶୁଣିଲେ ତହିଁ
ମୁନି ଆଜ୍ଞାଦେଲେ ଶିଷ୍ୟଗଣଙ୍କୁ ରାଇ ।
କୃଷ୍ଣାଜିନ ଛାଲ ରାମଙ୍କୁ ଦିଅନେଇ
ମୃଗଛାଲେ ଶୟନ କରନ୍ତୁ ବଇଦେହୀ ।
ବ୍ୟାଘ୍ରଛାଲ ନେଇଣ ଲକ୍ଷ୍ମଣଙ୍କୁ ଦିଅ
ଶଙ୍କର ଅଟନ୍ତି ସେ ଦଶରଥ ପୁଅ ।
ପଶୁଛାଲ ଏହାଙ୍କର ପୂର୍ବର ବିଧାନ
ଏତେ ବୋଲି ଆଜ୍ଞା ଦେଲେ ମହାଋଷି ଜାଣ
ଏତେକହି ମୁନି ଭିତରପୁରେ ଗଲେ
ଶିଷ୍ୟମନେ ନେଇଣ ଛାଲ ସମର୍ପିଲେ ।
ଲକ୍ଷ୍ମଣ ସେଜ ପାଡ଼ିଣ ସଜାଡ଼ିଣ ଦେଲେ
ସୀତାଙ୍କୁ ଘେନି ରାମ ତହିଁ ପହୁଡ଼ିଲେ ।
ଆପଣେ ସଉମିତ୍ର ବସିଲେ ଛାଲପାଡ଼ି
ପଥଶ୍ରାନ୍ତ ହୋଇବାରୁ ନିଦ୍ରାଦେଲା ଘାରି ।
ଏଥୁଅନନ୍ତରେ ରଜନୀ ଗଲାପାହି
ଶର୍ଯ୍ୟାରୁ ଉଠିଲେ ରଘୁକୁଳ ସାଇଁ ।

ଜାନକୀ ସହିତେ ଲକ୍ଷ୍ମଣ ତିନିଜଣ
ପ୍ରଣାମ କଲେ ସେ ଋଷିଙ୍କ ଚରଣ ।
ଭୋ ମୁନି ଆମ୍ଭେ ଯିବୁଁ ଆଜ୍ଞା ମୋତେ ଦେଶି
ଶୁଣିକରି ଆସନୁଁ ଉଠିଲେ ମହଋଷି ।
ତିନିଙ୍କ ମୂର୍ଦ୍ଧନିକି ଆଘ୍ରାଣ ସେ କରି
ଯମୁନା କୂଳଯାଏଁ ଗଲେକ ତିଆରି ।
ଅଗମ୍ୟ ବନକୁ ବାଟ କୋଶେ ଛଡ଼ାଥିବ
ପଥିକୀ ଗଲେ ତୁଣ୍ଡ ଗହଳ ଶୁଭିବ ।
ଏତେ କହି ମୁନି ଆସନ୍ତି ବାହୁଡ଼ି
ମନରେ ବିକଳ ହେଲେ ଦେଖିକରି ।
ହରିହର ଧାତାଙ୍କୁ ପେଶନ୍ତି ଯେହ୍ନେ ଧାତା
ତେସନକ ସଂଘାତ କରନ୍ତି ବ୍ରହ୍ମବେତ୍ତା ।
ଲେଉଟି ବୋଇଲେ ଶୁଣରେ ଲକ୍ଷ୍ମଣ
ଏଠାକୁ ଚିତ୍ରକୂଟ ଅଟଇ ତିନିଯୁଣ ।
ଆଜିକ ବାଟେ ରହି କାଲି ପଛେ ଯାଅ
ଅତି ରମ୍ୟ ସ୍ଥାନଟି ତୁମ୍ଭେ ତହିଁ ରହ ।
ଏତେ କହି ମୁନି ଆକୁଳ ମନ ହେଲେ
କାଳିନ୍ଦୀ କୂଳରେ ପ୍ରବେଶ ହୋଇଲେ ।
ଦେଖିଲେ ଭୟଙ୍କର ଦିଶେ ମହାନଦୀ
ଯମର ଭଗିନୀ ସେ ଅଟଇ ପ୍ରସିଦ୍ଧି ।
ଶ୍ରୀରାମ ବୋଲନ୍ତି ବାବୁ ଏଠାରେ ନାବ ନାହିଁ
କେବଣ ପ୍ରକାରେ ଆମ୍ଭେ ଯିବା ପାରହୋଇ ।
ନାବନାହିଁ ଏଥିରେ ଯା ନାମ ବଡ଼ଘାଟ
ପଥିକୀଜନ ଏଥିରେ ନଚାଲନ୍ତି ବାଟ ।
ଏ ମହାନଦୀକି ବାବୁ କେମନ୍ତେ ପାର ହେବା
ଲକ୍ଷ୍ମଣ ବୋଇଲେ ଉପାୟ କରିବା ।
କିମ୍ପାଇ ଦେବ ହେ ହେଉଛ କାତର
ଭେଳାବାନ୍ଧିଣ ଆମ୍ଭେ ସୁଖେ ହେବାପାର ।
ଏତେ କହି ଲକ୍ଷ୍ମଣ ବିପିନରେ ପଶି
ହାତୀଭଙ୍ଗା କାଠମାନ ଘେନିଣ ସେ ଆସି ।
ଶିଆଳି ଲତାରେ ତାକୁ ବାନ୍ଧିଲେ ସେ ଭେଳା
ପାଣିରେ ପକାଇଲେ ସୁମିତ୍ରାର ବଳା
ଶ୍ରୀରାମଙ୍କୁ ବୋଇଲେ ଆସ ବେଗହୋଇ
ରାମ ବୋଇଲେ ଆଗେ ବସୁ ବଇଦେହୀ
ଡରରେ ଥରହର କମ୍ପନ୍ତି ଜାନକୀ
ଶ୍ରୀରାମ ହସିଲେ ସୀତାଙ୍କ ଭୟଦେଖି ।

ହସ୍ତଧରି ଭେଳାପରେ ବସାଇଲେ ନେଇ
ପ୍ରଭୁଙ୍କ କୋଳରେ ବସିଲେ ଚାନ୍ଦମୁହିଁ ।
ଲକ୍ଷ୍ମଣ ରଘୁନାଥ ବସିଲେ ଦୁଇକତି
ମଧ୍ୟରେ ବସିଲେ ଜନକ ଦୁହିତୀ ।
ଧନୁଧରି ଲକ୍ଷ୍ମଣ ବାହିଲେ ସେ ଭେଳା
ଆବରହିଁ ବାହିଲେ କଉଶଲ୍ୟା ବଳା ।
ଧୀରଧୀର କରିଣ ହେଲେ ନଦୀପାରି
ଭେଳାରୁ ଓହ୍ଲାଇଲେ ରାମସୀତାଙ୍କ ଭୁଜଧରି
ସୀତାଙ୍କର ଭୁଜଧରି ତହୁଁ ଚଳିଗଲେ
ଉତ୍ତର କୂଳରେ ନିତ୍ୟକର୍ମ ସେ ସାରିଲେ ।
ସ୍ନାହାନ ସାରିଲେ ତହିଁରେ ତିନିଜଣ
ଶ୍ରୀରାମ ପଚାରିଲେ କିସ କରିବା ପୁଣ ।
ସୀତା ବୋଇଲେ ଏଥି କର ଜଳପାନ
ଶବରଣୀ ଦେଉଛି ଶୀତଳ ଦ୍ରବ୍ୟମାନ ।
ଜାନକୀ କହିବାରୁ ଲକ୍ଷ୍ମଣ ଆଣିଦେଲେ
ତିନିଜଣଯାକ ଭୋଜନ ତହିଁ କଲେ ।
ଆଚମନ ସାରିଣ ହୋଇଲେ ସନ୍ତୋଷ
କଷାଫଳ ଆଣିଦେଲେ ସୁମିତ୍ରାଙ୍କ ଶିଷ୍ୟ ।
ଶୁଚିବନ୍ତ ହୋଇଣ ତହୁଁ ଚଳିଗଲେ
ଥୋକେଦୂରେ ଶ୍ୟାମଳ ବଟକୁ ଦେଖିଲେ ।
ଧନ୍ୟମହିମା ସେ ଯେ ଦିଶେ ବଟ ଗୋଟି
କୋଶେ ପରିଯନ୍ତେ ଛାୟା ଅଛି ଘୋଟି ।
ସୁବର୍ଣ୍ଣର ପ୍ରାୟେକ ଦିଶେ ତାର ତେଜ
ପବିତ୍ର ପତ୍ରମାନ ଦିଶେ ବଇଡୁର୍ଯ୍ୟ
ଅଷ୍ଟ ଅଇଶ୍ୱର୍ଯ୍ୟ ମନାସିଲେ ପାଇ
ସେ ବଟ ତଳରେ ଶ୍ରୀରାମଚନ୍ଦ୍ର ହୋଇ ।
ବଟକୁ ଦେଖିଣ ପ୍ରଶଂସା କଲେ ରାମ
ଧନ୍ୟ ଧନ୍ୟ ବୃକ୍ଷ ହେ ତୁମ୍ଭେ ମହାତମ ।
ଅଷ୍ଟବଟ ମଧ୍ୟରେ ଅଟ ଯେ ମୁର୍ଦ୍ଧନୀ
ସଂସାର ନିମନ୍ତେ ତୋତେ ଆଣିଲେ ପଦ୍ମଯୋନି
ତୋହର ତଳେ ବସି ସାଧିବ ଯେ ଯୋଗ
ତେଣୁ ସେ ବ୍ରହ୍ମପଦ କରିପାରେ ଭୋଗ ।
ତୁମ୍ଭେ ମୋତେ ପ୍ରସନ୍ନ ହୁଅ ବୃକ୍ଷରାଜ
ମୁହିଁ ତୋରେ ଶରଣ ପଶୁଅଛି ଆଜ ।
ଏତେବୋଲି ଶ୍ରୀରାମ ବଟକୁ ପୂଜାକଲେ
ଷୋଡ଼ଶ ପ୍ରକାରରେ ଭକତି ହୋଇଲେ ।

ବାଞ୍ଛାକଲେ ଶ୍ୟାମଳ ବଟ ତଳେରହି
ରାମ ଲକ୍ଷ୍ମଣ ବୋଇଲେ ସୀତାମୁଖ ଚାହିଁ ।
ଶୁଣ ଗୋ ସତୀ ଦେଖ ଏ ଶ୍ୟାମଳ ବୃକ୍ଷ
ବାଞ୍ଛାକଲେ ଫଳ ଯେ ଫଳଇ ପ୍ରତ୍ୟକ୍ଷ ।
ଭରଦ୍ୱାଜ ମୁନି ଆମ୍ଭଙ୍କୁ ଯାହା କହିଥିଲେ
ମନାସିଲ ଫଳ ସୀତ ପାଇବୁ ବୋଇଲେ ।
ଶୁଣ ଶୁଣ ଜାନକୀ ଯେ ତୋହର ଇଚ୍ଛା
ଏ ବୃକ୍ଷ ତଳରେ ରହି କର ମନରେ ବାଞ୍ଛା ।
ମହାସତୀ ଯାଇଣ ବଟତଳରେ ମିଳି
ନମସ୍କାର କରିଣ ମନାସିଲେ ବାଳୀ ।
ବୋଇଲେ ତୁ ଯେବେ ଅଟୁ ବଟ ସିଦ୍ଧ
ସ୍ୱାମୀ ମୋର ରାଜା ହୋନ୍ତୁ ପବିତ୍ର ଭୂମି ମଧ୍ୟ ।
ବିଧବାରେ ଗଣିତା ନୋହିବି ଯେ ମୁହିଁ
ଯୁଗେ ଯୁଗେ ରହିବି ଷୋଡ଼ଶୀ ରୂପ ହୋଇ ।
ଶାଶୁ ଶ୍ୱଶୁର ମୋର ଶୁଭରେ ବର୍ତ୍ତିହେବେ
ଦିଅରମାନେ ଅନ୍ୟ ସ୍ଥାନରେ ରାଜା ହେବେ ।
ଅଯୋଧ୍ୟା ରାଜ୍ୟ ମୋର ସର୍ବ ଶୁଭରେ ଥାଉ
ପିତା ମୋର ପରମବ୍ରହ୍ମଙ୍କୁ ଭେଟ ପାଉ ।
ଏତେ ବୋଲି ବର ମାଗିଲେ ଦେବୀ ପୁଣ
ଏକଥା ଶୁଣିଣ ହସିଲେ ରଘୁରାଣ ।
ଏଥୁଅନନ୍ତରେ ସେଠାରୁ ଚଳିଗଲେ
ନୀଳମଣି ବନରେ ଯାଇଣ ରହିଲେ ।
ଦିବସରେ ଅନ୍ଧାର ଦିଶେ ସେହୁ ବନ
ତହିଁରେ ବିଶ୍ରାମ କଲେ ତିନିଜଣ ।
ସେହି ଯମୁନା ନଦୀର ଉପରେ ରହିଲେ
ମୃଗମାରିବାକୁ ଶ୍ରୀରାମ ଚଳିଗଲେ ।
ଲକ୍ଷ୍ମଣ ସୀତୟା ବନରେ ବସିଛନ୍ତି
କୃଷ୍ଣା ଜିନ ମୃଗମାରି ଶ୍ରୀରାମ ଆଣନ୍ତି ।
ସେ ମୃଗକୁ ଲକ୍ଷ୍ମଣ କୋଳାବନ୍ତି ନେଇ
ପାକସମ୍ପାଦିଲେ ଶରଦଚନ୍ଦ୍ର ମୁହିଁ ।
ଦେବ ପିତୃକୁ ଦେଇ ବାହାର ବଳିଦେଲେ
ଶ୍ରୀରାମ ଲକ୍ଷ୍ମଣ ଭୁଞ୍ଜିଣ ବସିଲେ ।
ସୀତା ପରସନ୍ତି ସୁପକ୍ୱ ମାଂସନେଇ
ଭୁଞ୍ଜିଣ ବେନିଭାଇ ମନରେ ତୋଷହୋଇ ।
ଆଚମନ ସାରିଣ ହରିଡ଼ା ଫଳ ଖାଇ
ଶ୍ରୀରାମ ପତ୍ରେ ଭୁଞ୍ଜି ବସିଲେ ବଇଦେହି ।

ଭୋଜନ ସାରିଣ ଉଠିଲେ ଧାଡିକାରେ
ଆଚମନ ସାରିଣ ମିଳିଲେ ମଢ଼ିଆରେ ।
ହରିଡ଼ା ଫଳ ଖଣ୍ଡିଏ ରାମ ଦେଲେ ନେଇ
ତାହା ଭୁଞ୍ଜିଲେ ଦେବୀ ମନରେ ତୋଷହୋଇ
ଶିଆଳି ପତ୍ରଗୁଡ଼ିଏ ତୋଳିଲେ ଲକ୍ଷ୍ମଣ
ଶ୍ରୀରାମଙ୍କ ପାଇଁ ଶେଯ ସଜାଇଲେ ଜାଣ ।
ଥୋକାଏ ଦୂରେ ଆପଣେ ଠାବକଲେ
ଧନୁଶର ଧରିର ଜନନୀ ବଞ୍ଚିଲେ ।
ଶ୍ରୀରାମ ଜାନକୀ ଶୋଇଲେକ ନିଦ
ପଥଶ୍ରାନ୍ତ ହେତୁ ହୋଇଲା ଘୋର ନିଦ ।
ଏଥୁ ଅନନ୍ତରେ ପାହିଗଲା ରାତି
ନିତ୍ୟକର୍ମ ସାରିଣ ଚଳିଲେ ରଘୁପତି ।
ଚିତ୍ରକୂଟ ଅଟଇ ସେଠାକୁ ପାଞ୍ଚକୋଶ
ସାତଘଡ଼ି ସମୟରେ ସେଠାରେ ପ୍ରବେଶ ।
ଦେଖିଲେ ମହା ସୁସ୍ଥ ଅଟେ ସେ ପରବତ
ମଞ୍ଚଳଇଁ ସ୍ୱର୍ଗ ସେ ସ୍ୱର୍ଗକୁ ତ ମର୍ତ୍ତ୍ୟ ।
ଅତି ଅଚଳ ଗିରି ସ୍ୱର୍ଗର ସଙ୍ଗେ ସମ
ଦେଖିକରି ଆନନ୍ଦ ହୋଇଲେ ଶୀରାମ ।
ବାବୁ ପାଷାଣ ତୋତେ ପଟାନ୍ତର ନାହିଁ
ସୁବର୍ଣ୍ଣ ଆତଜାତ ହେଉଅଛି ତହିଁ ।
କେବଣ ଠାବରେ ହୁଏ କଂସ ଉତ୍ପତ୍ତି
କେଉଁଠାରେ ଲୁହା ଜାତ ହେଉଛନ୍ତି ।
କେଉଁଠାରେ ହୀରା ଜାତ କାହିଁରେ ପୋହଳା
କେବଣ ପଥରକୁ ନିଳା ସୁରକଲା ।
କେଉଁଠାରେ ମାଣିକ୍ୟ ବଇଡୁର୍ଯ୍ୟ ଜାତ
କାହିଁରେ ପୁଷ୍ପରାଗ କାହିଁରେ ମର୍କତ ।
କାହିଁରେ କୁରୁବିନ୍ଦ କାହିଁରେ କାମୋଦଟି
କାହିଁରେ ସ୍ଫଟିକ ଯେ କାହିଁ ହରିତାଳ ଉକୁଟି
କେଉଁଠାରେ ମଣିଶିଳ କାହିଁରେ ହିଙ୍ଗୁଳ
କେଉଁଠାରେ ପ୍ରବାଳ କାହିଁ ପରିମଳ ।
କେଉଁଠାରେ ତମ୍ବା କେଉଁ ଠାରେ ଶିସା ଜାତ
କେଉଁ ଠାବରେ ପଞ୍ଚବର୍ଣ୍ଣରେ ଶିଳାଖ୍ୟାତ ।
କେବଣ ପଥର ଗୋଟି ସୁବର୍ଣ୍ଣର ବର୍ଣ୍ଣ
କେବଣ ପଥରଟି କୁଙ୍କୁମର ବର୍ଣ୍ଣ ।
କେବଣ ପଥରଟି ଦର୍ପଣ ପ୍ରାୟେଣ
କେବଣ ଠାବରେ ନୀଳବର୍ଣ୍ଣ ଜାଣ ।

କେଉଁଠାରେ ଉର୍ଦ୍ଧ୍ୱକୁ ବଢ଼ିଅଛି ଗିରି
ପର୍ବତ ଶୋଭା ଯେ ଦିଶେ ସମସରି ।
କେବଣ ଠାବରେ ଅଛଇଁ କନ୍ଦର
ଅତି ମନୋହର ସେଦିଶେ ଶୋଭାକର ।
ପାରିଜାତକ ପୁଷ୍ପ ତହିଁରେ ପନ୍ତି ପନ୍ତି
କଦମ୍ବ ନାଗେଶ୍ୱର ସମସ୍ତେ ଅଛନ୍ତି ।
ପାଟଳି ପାଳଧୁଆ ଶିମିଳୀ ମନ୍ଦାର
ତରାଟ ରଙ୍ଗଣୀ କଞ୍ଚନ କନିଅର ।
କାହିଁରେ ଛୁରୀଅନା ପୁନାଙ୍ଗ ବକୁଳ
ଚମ୍ପେକ କପିଥ ତରୁ ମାଳମାଳ ।
ଜାଇ ଯୁଇ ତୁଳସୀ ଆବର ଯେ ମଲ୍ଲୀ
ଦୟଣା ମରୁଆ କୁନ୍ଦ କୁରୁବୋଲି ।
ଶାଳର ଦୁର୍ଲ୍ଲଭ କେତକୀ ଅନୁପମ
ଦୁରୁଦୁରା ବାସଙ୍ଗ ଆମ୍ବ ଜାମ୍ବୁଲିମ୍ବ ।
ଅଏଁଳା ଭାଲିଆ ହରିଡ଼ା ପିଅଶାଳ
କରୁଣା କୋଚିଲା ବରୁଣ ବଣତଳ ।
ଭଇଁଚ ପଣସ କେନ୍ଦୁଚାର କସି
ମଞ୍ଜାରୀ ସୁନାରୀ କାଳଚୁଆ ବେଲ ମିଶି ।
ଆମ୍ବଡ଼ା ଦାରାକ୍ଷ ଲେମ୍ବୁ ଯେ ଅଶ୍ୱସ୍ଥ
ବାଟରେ ବୃକ୍ଷମାନେ ଅଛନ୍ତି ବହୁତ ।
ଜଜାଙ୍ଗି ସେଣାପକ୍ଷୀ ଜେଉଠ ଜମ୍ବଲ
କରମଙ୍ଗା କଦଳୀ ଆତ ଯେ ତମାଳ ।
ପାଣି ଅଏଁଳା ଶିଶୁ ଗୋଲାପ ଦେବଦାରୁ
ଅସନ୍ଧି ଲତାମାନ କେହୁ ସନ୍ଧିକରୁ ।
ସାହାଡ଼ା ଜାତି ପୁଣି ଗୁଲୁମ ଲତା ପୁଣ
ମରିଚ ପିପ୍ପଳୀ ଲବଙ୍ଗ ଚନ୍ଦନ ।
ଜାଇଫଳ ଅଳାଇଚ ଦିଶନ୍ତି ପନ୍ତି ପନ୍ତି
ସୁନାରୀ ଗଣ୍ଡିଅନା ଗୁଗୁଳ ଝୁଣାଛନ୍ତି ।
କଞ୍ଚଣ କୁରୁବିନ୍ଦ ହିଙ୍ଗୁ ଯେ ଆଙ୍କୁଲ
ସ୍ଥାନେ ସ୍ଥାନେ ପୂର୍ଣ୍ଣ ହୋଇଛି ମହୁଲ ।
ସକଳ ଉଡ଼ିପଡ଼ି ପାଣିରେ ଉତ୍ପତ୍ତି
କେଉଁଠାରେ ଅଏଁଳା ସାବିତ୍ରୀ ଅଛନ୍ତି ।
କାହିଁରେ ଜାଇପତ୍ରୀ କେଉଁଠି ତେଜପତ୍ର
ସେହି ବନଗୋଟି ଅତ୍ୟନ୍ତ ପବିତ୍ର ।
ସିଂହ ଯେ ଶାର୍ଦ୍ଦୁଳ ଭାଲୁ ପନ୍ତି ପନ୍ତି
ଶଶା ଯେ ଶମ୍ବର ମହିଷୀ ଅଛନ୍ତି ।

ଗୟଳ ମୟୂର ପୁଣ କୃଷ୍ଣ ବର୍ଣ୍ଣ ମୃଗ
ହରିଣ ବାହୁଟିଆ ଚରନ୍ତି ଏକ ସଙ୍ଗ ।
ବଣଗୋରୁ ଖୁରାଣ୍ଟି ବଞ୍ଜାରୀ ବରେହା
ଶଖା ଖୁରାଣ୍ଟି କସ୍ତୁ ଗୁଣ୍ଡିରରି ଛୁଆ ।
ନେଉଲ ଶୃଗାଳ ପୁଣି ଭିନ୍ନ ଭିନ୍ନ ପ୍ରୀତି
ଶୁଣ ଗୋ ପାର୍ବତୀ ସେ ବନର ରୀତି ।
ଗୟଳ ମୟୂର କୁକକ୍ଟ ଭୋଟ ମୃଗ
ହରିଣ ହରିଣୀ ଦିଅନ୍ତି ନାନାରଙ୍ଗ ।
ହତୁଶୀକି ଗୋଡ଼ାଇ ଅଛନ୍ତି ମତ୍ତହସ୍ତୀ
ବଣ ଘୋଡ଼ା ସଙ୍ଗରେ ଚରେ ଖଗପନ୍ତି ।
ତାହାଙ୍କୁ ଦେଖିଣ ପଳାଏ ସେ ବ୍ୟାଘ୍ର
ଗଜସଙ୍ଗେ କେଶରୀ ନାହିଁ ହିଂସା ଭାବ ।
ଶୁକସାରୀ ରାବନ୍ତି ତହିଁରେ ଘନ ଘନ
କୋକିଳମାନେ ତହିଁ କରନ୍ତି ସୁସ୍ୱନ ।
କଳା କୁମ୍ଭାଟୁଆ ମୟୂର ତିତିରୀ
ବକ ଶ୍ୟାମଳ ପୁଣ ଗୁଣ୍ଡୁରୀ ଆଦି କରି ।
ଶରଙ୍ଗଶାର ଅଟେ ଉଲ୍ଲୁକା ଶାର୍ଗୁଣା
କୁକକ୍ଟ ଛଞ୍ଚାଣ ଚାତକ ପିକ ଝୁଣା ।
ଡେଣ୍ଡୁଆ କୂପେ ତ ମାଛରଙ୍କା ପାଣିକୁଆ
ନାକିହଂସ ରାଜହଂସ ଗେଣ୍ଡୁ ଗେଣ୍ଡାଳିଆ ।
ଚକୁଆ ଚକୋଇ କେଶର ପାଣ୍ଡିଆ ଜାତି
ନୀଳକଣ୍ଠ ଭୋଇ ଚରନ୍ତି ପନ୍ତି ପନ୍ତି ।
ଭାଲିଆମୁଣ୍ଡ ଶୁଆ ତିତିରୀ ପଛେ ଲାଗି
ଚିଲ ଶାର୍ଗୁଣା ଡେଣ୍ଡୁ ବଗ ଡଗ ଡଗୀ ।
କାଟଖୁମ୍ପା ପାରୁଆ ବାଇଆ ଭରତିଆ
ପିଛେଡ଼ା ଗୋବରା ତହିଁ କୃଷ୍ଣବେଣୀ କୁଆ ।
ଲେସତା ବାଘୁଆ ଶିଆଳ ଯେ ପକ୍ଷୀ
ଝିଙ୍କାରୀ କେରାଣୀ ରାମେ ବଗଦଳ ଫିମ୍ପି
ହଂସରାଡ଼ି କୋକୁଆ ଗେଣ୍ଡାଳିଆ ତୁଳ
ବାଜବଇଣୀ ନୀଳ ଲୋହିତ ଶ୍ୟାମଳ ।
ମନ୍ଦାଗ୍ନି ନଦୀ ଯେ ବହଇ ଝର ଝର
ପଦ୍ମବନ ତହିଁରେ ଅଛଇଁ ଅପାର ।
କେଉଁଠାରେ ଉତ୍ପଳ ଶ୍ୟାମଳ ବୃକ୍ଷ ଅଛି
ରଙ୍ଗକଇଁ ଧଳାକଇଁ ଅପାର ପୂରିଛି ।
ସିଙ୍ଗଡ଼ା ଶାମୁକା କନକା ଅଛି କାହିଁ
ପର୍ବତ ବେଢ଼ି ନଦୀ ଯାଉଅଛି ବହି ।

କୂଳରେ ବୃକ୍ଷମାନେ ଅଛନ୍ତି ପନ୍ତି ପନ୍ତି
ନାନା ଜୀବଜନ୍ତୁ ସେଥିରେ ଶୋଭାପାନ୍ତି
କୁସୁମ ଫୁଲମାନ ତହିଁରେ ଫୁଟିଛନ୍ତି
ଜଳରେ ଜଳଚର ଚରାନ୍ତି ନାନା ଜାତି
ବିବିଧ ଚାରୁଫଳ ଅଛନ୍ତି ତହିଁ ମେଳ
ଦେଖିକରି ସାନନ୍ଦ ଦଶରଥ ବାଳ ।
ଲକ୍ଷ୍ମଣ ବୋଲନ୍ତି ଦେବ ଏସ୍ଥାନ ବଡ଼ ସୁଖ
ଏ ସ୍ଥାନରେ ରହିଣ ହରିବାଟି ଦୁଃଖ ।
ଏତେ ବୋଲି ଗିରିର ଶିଖକୁ ଉଠିଯାନ୍ତି
ପର୍ବତ ରମ୍ୟସ୍ଥାନ ଦେଖିଣ ରହନ୍ତି ।
ଶ୍ୟାମ୍ ବୃକ୍ଷତଳେ ସୀତାଙ୍କୁ ବସାଇ
ହାତୀଭଙ୍ଗା ଡାଳ ଆଣନ୍ତି ଦୁଇ ଭାଇ ।
ଖଣନ୍ତି ଘେନି ତହିଁ ଖୋଳନ୍ତି ସେ ଭଗାତ
ଖମ୍ବ ପୋତି ଶ୍ରେଣି ଯେ ପକାନ୍ତି ରଘୁନାଥ ।
ରୁଅ ପକାଇଣ ବାନ୍ଧିଲେ ତହିଁ ବତା
ଶିଆଳି ପତ୍ର ଛାଏଣୀ ଘର କଲେ ସପ୍ତା ।
ଲକ୍ଷ୍ମଣ ପାଇଁ ଭିନ୍ନ ମଢ଼ିଆ ସେ ତୋଳି
କୁଟିର ଭିତରେ ପଶିଲେ ମହୀସ୍ଥଳୀ ।
ଚାପଧାରୀ ବୋଇଲେ ଯାଅରେ ଲକ୍ଷ୍ମଣ
ମୃଗଟିଏ ମାରି ଚଞ୍ଚଳ ତୁ ଆଣ ।
ଶୁଣିକରି ଚଳିଲେ ସୁମିତ୍ରା କୁମର
କରରେ ଧନୁ ଧରି ହେଲେ ସେ ବାହାର ।
ଯାଉ ଯାଉ ବାଟରେ ଦେଖିଲେ ଏକ ମୃଗ
ଏକାକୀ ଚରୁଛି ସେ ନାହିଁ କେହି ସଙ୍ଗ ।
ତତକ୍ଷଣେ ନାରାଚ ପୂରେଇ ଛାଡ଼ିଦେଲେ
ପରାଣ ହାରି ମୃଗ ପଡ଼ିଗଲା ତଳେ ।
କଟାରୀରେ ତାହାକୁ ଦୁଇ ଭାଗ କଲେ
ଭାରକରି ଯତନେ ତାହାକୁ ଆଣିଲେ ।
ଦେଖିଣ ଆନନ୍ଦ ହେଲେ ସୀତା ରାମ
କଟାରୀରେ ମାଂସ କେଳାଇଲେ ପୁଣ ।
ମାଂସ ନେଇ ସୀତା ଯେ ରନ୍ଧନ କଲେବେଗେ
ଜାନକୀ ବିଚାରିଲେ ମୋହର କର୍ମଭାଗେ ।
ମନ୍ଦାଗ୍ନି ନଦୀରେ ସ୍ନାନ ବେଗେ ସାରି
ପବିତ୍ର ପୁଣ୍ୟ ଅଟେ ଯେ ସେହୁ ସାରି
ଦେବ ପିତୃ ତର୍ପଣ କରିଣ ଆସନ୍ତି
ନଦୀର କୂଳରେ ଆସି ମିଳିଲେ ରଘୁପତି

ପୁଇଁଚାନ୍ଦିଆ ଫୁଲକୁ ତୋଳି ପୂଜାକଲେ
ମଢ଼ିଆରେ ଆସିଣ ସନ୍ଧ୍ୟାବଳି ଦେଲେ ।
ଦେବ ପିତୃ ତୋଷକରି ଭୁଞ୍ଜିଣ ବସିଲେ
ଖଣ୍ଡେ ଦୂରେ ଲକ୍ଷ୍ମଣ ପତର ପକାଇଲେ ।
ପତ୍ର ସାରିଣ ଯେ ବସିଲେ ଜଗଜ୍ଜିତା
ଦୁଇ ଭାଇଙ୍କି ମାଂସ ପରଷି ଦେଲେ ସୀତା ।
ଏମନ୍ତରେ ତହିଁ କେତେ ଦିନ ଗଲା
ଏଥୁ ଅନନ୍ତରେ ଶୁଣ ଗୋ ଗଉରା ।
ତିନିଦିନେ ସୁମନ୍ତ ବାହୁଡ଼ିଣ ଗଲି
ରଥ ଘେନି ଅଯୋଧ୍ୟାରେ ପ୍ରବେଶ ହୋଇଲା ।
ଷଡ଼ଦିନେ ପ୍ରବେଶ ହେଲା ପୁଣ ଯାଇ
ବାରତା ପାଇଲାକ ବାଟକୁ ଆସେ ଧାଇଁ ।
ତୁଚ୍ଛା ରଥ ଦେଖିବାରୁ ସମସ୍ତେ ମୋହଗଲେ
ଶ୍ରୀରାମ ନାମ ଧରି ସମସ୍ତେ ଶୋକ କଲେ ।
କେ ବୋଲଇ ଆଶା କରିଥିଲୁ ତୋତେ
ତୁହିହୋ ସୁମନ୍ତ ଛାଡ଼ିଅଇଲୁ କେମନ୍ତେ ।
ତୁମ୍ଭେ ତ ସୁମନ୍ତ ଜାଣ ସର୍ବବୁଦ୍ଧି
ଶ୍ରୀରାମଙ୍କୁ ନ ଆଣିଲ କଥାରେ କହି ବୋଧି ।
ଆହେ ମନ୍ତ୍ରୀବର ତୁମ୍ଭେ ମନ୍ଦବୁଦ୍ଧି କଲ
ଶ୍ରୀରାମଙ୍କୁ ବନରେ ଛାଡ଼ିଣ ଆସିଲ ।
ସଙ୍ଗରେ ନ ରହି କିମ୍ପା ଅଇଲ ଅଯୋଧ୍ୟା
ଜାଣିଲୁ ମାୟାବି ତୁମ୍ଭେ ଅଟ ମନ୍ତ୍ରୀ ସିଦ୍ଧା ।
ଧିକ ଧିକ ତୁମ୍ଭର ଅଟଇ ମନ୍ତ୍ରୀପଣ
ଜନଙ୍କ ମୁଖେ ନିନ୍ଦା ପାଇଲ ଆପଣ ।
ପ୍ରବୋଧନା କରଇ ମନ୍ତ୍ରୀ ଚୂଡ଼ାମଣି
ତୁମ୍ଭେମାନେ ସେ କଥା ନ ପାରୁଛ ଜାଣି ।
ମୋହର ବୋଲ ଯେ ନକଲେ ରଘୁମଣି
ତ୍ରୈଲୋକ୍ୟଠାକୁର ସେ ଅଟନ୍ତି ତିନି ପ୍ରାଣୀ ।
ସତ୍ୟ ବଚନକୁ ନ ଲଙ୍ଘେ ଦାଶରଥି
ଚଉଦ ବରଷ ଗଲେ ଆସିବେ ସେ ଏଥି ।
ପିତା ମାତାଙ୍କ ସତ୍ୟ ରଖିବେ ରଘୁନାଥ
ରାଜ୍ୟ ଛାଡ଼ିଣ ସେ ଗଲେ ବନପଥ ।
ସେ କିମ୍ପା ମୋର ବୋଲ କରନ୍ତେ କେଉଁବାଗେ
ସତ୍ୟବନ୍ତ ପୁରୁଷ ଅଟନ୍ତି ବାସୁଦେବେ ।
ଏତେ କହିଣ ତହୁଁ ଗଲେ ମନ୍ତ୍ରୀବର
ପ୍ରବେଶ ହୋଇଲେ ରାଜାଙ୍କ ନବର ।

ରଥରୁ ଓହ୍ଲାଇ ନବରକୁ ଗଲେ
ଦଶରଥ ନୃପତିଙ୍କ ଦରଶନ କଲେ ।
ଶିରରେ କର ଦେଇ ବାରତା କହଇ
ଗଙ୍ଗାକୂଳରେ ନେଇ ଛାଡ଼ି ଅଇଲଇଁ ।
ଶ୍ୟାମବଟ ମୂଳରେ ଜଟା ସେ ବାନ୍ଧିଲେ
ଶ୍ରୀରାମ ଲକ୍ଷ୍ମଣ ସନ୍ୟାସୀ ବେଶ ହେଲେ ।
ଗୁହ୍ୟ ନାମେ ଶବର ମିଳିଲା ରାତ୍ରେଣ
ସୁପକ୍ୱ ଫଳ ଦେଇ ଚରଚା କଲା ପୁଣ ।
ଅନେକ ପ୍ରକାରେ ସେ ବୁଝାଇ କହିଲା
ସ୍ୱକୁଟୁମ୍ବ ଘେନିଣ ଚରଣେ ଶୋଇଲା ।
ଜନନୀ ପିତା ଦୁଃଖ ଛାଡ଼ି ହେ ମନରୁ
ଦର୍ଶନ କରିବା ଯାଇ ଅଯୋଧ୍ୟା ମହାମେରୁ ।
ତାହାର ବୋଲ ନାସ୍ତି କଲେ ରଘୁନାଥ
ଗଙ୍ଗା ପାରି ହୋଇଣ ପଶିଲେ ବନସ୍ତ ।
ମୋହର ଦେଖୁଁ ଦେଖୁଁ ଗଲେ ପାରିହୋଇ
ତାହା ଶୁଣି ନୃପବର ଚଳିଲେକ ମହୀ ।
ସୁମନ୍ତ ରାଜାଙ୍କୁ ତୋଳିଣ ଧଇଲେ
ଶୀତଳ ଜଳଧାର ମୁଖରେ ସଞ୍ଚିଲେ ।
ରତ୍ନର ବିଞ୍ଚଣା ଧରି ସଧୀରେ ବିଞ୍ଚିଲେ
ଶ୍ୱେତ ଚାମର ସେ ଅନେକ ପକାଇଲେ ।
ଅନ୍ତଃପୁରେ ରାଣୀମାନେ କରନ୍ତି ରୋଦନ
ଥୋକାଏକ ବେଳେ ରାଜା ପାଇଲେ ଚେତନ
ଏସନକ ସମୟେ ଆଦିତ୍ୟ ଅସ୍ତ ଗଲେ
ଦଶରଥ ରାଜନ ପଲ୍ୟଙ୍କେ ପହୁଡ଼ିଲେ ।
ପୁତ୍ର ମନ୍ତ୍ରୀମାନେ ଗଲେ ଯେ ଯାହା ସଦନ
ଶୁଣ ଗୋ ଭଗବତୀ କହନ୍ତି ପଞ୍ଚାନନ ।
ରଜନୀ ପାହିଲା ଉଠିଲେ ସକଳେ
ପାତ୍ର ମନ୍ତ୍ରୀ ପଦାତି ସିଂହଦ୍ୱାରେ ହେଲେ ।
ଫିଟିଲା ସିଂହଦ୍ୱାରେ ପଶିଲେ ସର୍ବଜନ
ଦଶରଥ ରାଜାଙ୍କୁ କରନ୍ତି ଦରଶନ ।
ମନଦୁଃଖେ ମହାରାଜା ମାଜଣା ସ୍ନାନ କଲେ
ତିଳକ ଲାଗିହୋଇ ସିଂହାସନେ ବସିଲେ ।
ସୁମନ୍ତଙ୍କୁ ଅନାଇ କହନ୍ତି ମହୀଧର
ଋଷି ବ୍ରାହ୍ମଣ ତୁମ୍ଭେ ବେଗେ ବରଣକର ।
ଭଣ୍ଡାରୁ କାଢ଼ି ଧନ ଦେଲେ ଦାନ ପୁଣ୍ୟ
ଶୁଭରେ ଥାନ୍ତୁ ରାମ ଲକ୍ଷ୍ମଣ ତିନିଜଣ ।

ଏତେ କହି ରାଜା ଭିତରପୁରେ ଗଲେ
ସୁମିତ୍ରାଙ୍କ ପୁରେ ପ୍ରବେଶ ହୋଇଲେ ।
ଅଳପରେ ମଣୋହି ଫଳମୂଳ ତହିଁ
ଆଚମନ ସାରିଣ ପଲଙ୍କେ ନିଦ୍ରାଯାଇ ।
ସନ୍ଧ୍ୟା ସମୟକୁ ଉଠି ସନ୍ଧ୍ୟା କଲେ
ପଲଙ୍କେ ନିଦ୍ରା ଯାଇଣ ଶର୍ବରୀ ପୁହାଇଲେ ।
ସୁମନ୍ତ ମନ୍ତ୍ରୀ ବ୍ରାହ୍ମଣ ବରଣ କରି ଆଣେ
ବାମଦେବ ମୁନିଙ୍କୁ ବରଣ କଲେ କ୍ଷଣେ ।
ବ୍ରାହ୍ମଣ ଋଷି ସର୍ବେ ହୋଇଲେକ ଠୁଳ
ଅଯୋଧ୍ୟା ପୁରଯାକ ଲାଗିଲା ଚହଳ ।
ଶ୍ରୀରାମ ବନ ଯିବାର ଦଶଦିନ ହେଲା
ନୃପତିର ମୃତ୍ୟୁ ଦୁଇଦିନଟି ରହିଲା ।
ବାର ଦିନକୁ ଆଗେ କରିଛି ପ୍ରମାଣ
କହିଗଲେ ତାଙ୍କୁ ନାରଦ ଋଷି ପୁଣ ।
କାହାରି ଆଗରେ ରାଜା ସେ କଥା ନ କହିଲେ
ପଲଙ୍କରେ ନିଦ୍ରା ଯାଇଣ ସର୍ବରୀ ପୁହାଇଣେ ।
ଏଗାର ଦିନ ସମ୍ପୂର୍ଣ୍ଣ ହୋଇଲା ଯେ ପୁଣ
ବାରଦିନ ଋଷଙ୍କି ଦେଇ ବହୁତ ଧନ ।
ସନ୍ତୋଷ କରାଇଲା ଦେବତା ଭୋଗେ ପୁଣ
ଦେବ ଦେବୀ ଭୁଞ୍ଜି ସନ୍ତୋଷ ହେଲେ ଜାଣ ।
ଋଷି ବ୍ରାହ୍ମଣଙ୍କୁ ମେଲାଣି କରିଦେଲେ
ଦେବଙ୍କର ପୁରେ ମାଜଣା ବିଧି କଲେ ।
ଗ୍ରାମଦେବତୀଙ୍କି ବୋଦା ପୋଢୁଅ ଛାଗଳ
ଦେଇଣ ତୋଷକଲେ ଅଯୋଧ୍ୟା ମହୀପାଳ ।
ଏହି ସମୟରେ ହେଲେ ସୂର୍ଯ୍ୟଅସ୍ତ
ସୁସ୍ୱପ୍ନ ହେଲା ଯେ ଦେବଆଳେ ଶଙ୍କିତ ।
ପାତ୍ର ମନ୍ତ୍ରୀଙ୍କି ସେ ମେଲାଣି ଦେଲେ ପୁଣ
ସକଳ ରାଣୀହଂସ ଡକାଇ ତତକ୍ଷଣ ।
ବୋଇଲେ ସମସ୍ତେ ମୋର ବୋଲକର
ଆଜି ରାତ୍ରେ ମୃତ୍ୟୁ ହୋଇବ ମୋହର ।
ନାରଦ କହିଗଲେ ମୋ ଅଗ୍ରତେ ଜାଣ
ବାରଦିନରେ ମୃତ୍ୟୁ ପାଇବ ରାଜନ ।
ଏତେ କହି ନାରଦ ସ୍ୱର୍ଗ ପୁରେ ଗଲେ
ଆଜ ମୋର ମୃତ୍ୟୁ ହେବ ଶୁଣ ଭଲେ ।
ଶୁଣିକରି ରାଣୀମାନେ କଲେ ରୋଦନ
ସିନ୍ଧୁ ଗରଜନ ପ୍ରାଏ ଉଚ୍ଛୁଳେ ସଦନ ।

ବୈଶାଖ ଶୁକ୍ଳପକ୍ଷ ଦଶମୀର ରାତି
ମୃଦୁସୁଲିଙ୍କି ରାଇ ବୋଇଲେ ନୃପତି ।
କୌଶଲ୍ୟାଙ୍କୁ ନିକଟେ ହକାର ମୋହର
ତାହାର ଆଗତେ କଥାକହିବ ଶ୍ରୀରାମର ।
ଶୁଣିଣ ମୃଦୁସୁଲୀ ରାଣୀଙ୍କି ଡାକି ନେଲା
ଦଶରଥ ରାଜାଙ୍କର ସନ୍ନିଧିରେ କଲା ।
ନୃପତିଙ୍କି ଦର୍ଶନ କଉଶଲ୍ୟା କଲେ
ଚରଣ ଧରିଣ ପଲଙ୍କେ ବସିଲେ ।
ରାଜା ବୋଇଲେ ତୁମ୍ଭେ ଶୁଣ ଗୋ ସୁନ୍ଦରୀ
ବୋଇଲ ରାମ ମୋର ନୋହିଲେ ଦଣ୍ଡଧାରୀ ।
ଅସମୟ କାଳକୁ ଏତେ କଥା ଗଲା
ଏତେକାଳେ ବିଧାତା ଏହା ମୋତେ କଲା
ଶୁଣ ତୁ ଗୋ ସଖୀ ପୂର୍ବରୁ କାହାଣୀ
ପ୍ରଥମରୁ ତୋତେ ବିଭା ହୋଇଲି ମୁଁ ପୁଣି ।
ସେଦିନେ ପିତା ମୋତେ ଯୁବରାଜ କଲେ
ରାଜ୍ୟଭାର ଦେଇଣ ନିଶ୍ଚିନ୍ତେ ରହିଲେ ।
ମୃଗୟା ବିନୋଦ ମୁଁ କରୁଥାଇ ନିତି
ସରଯୂ ନଦୀତୀରେ ହେଲା ନିଶାରାତି ।
କମଣ୍ଡଳେ ପାଣି ପୁରୋଉଛନ୍ତି ଯତି
ମୃଗ ଭାବି ନାରାଚ ବିନ୍ଧିଲି ଝଟତି ।
ହୃଦରେ ବାଜିଣ ନିକିଳେ ପଛକତି
ପଡ଼ିବାରୁ ବାଣବିକଳ ମହାଯତି ।
ମୁହିଁ ଯାଇଣ ଯେ ମିଳିଲ ତାଙ୍କ କତି
ଦେଖିକରି ମନ ମୋର ହୋଇଲା ବିକୋତି ।
ହଂସ ପ୍ରାଏ ବୁଝିଣ ମୁଁ ଝିଙ୍କିଲି ନାରାଚ
ବାଣର ଘାତେ ପଡ଼ିଲା ଋଷିର ତନୁଜ ।
ପିତା ମାତା ସୁମରି ପଡ଼ିଲା ଧରଣୀ
ମୁହିଁ ଯାଇ ତାକୁ ଧଇଲି ଯେ ପୁଣି ।
ବ୍ରହ୍ମହତ୍ୟା କଲି ବୋଲି ମନରେ ହେଲା ଭୟେ
ମୋତେ ବୋଇଲେ ସେ ଋଷିର ତନୟେ ।
ଯାଅସି ଧନୁର୍ଦ୍ଧର ନକର ମନେ ଚିନ୍ତା
ପିତା ମୋର ବ୍ରହ୍ମମୁନି ଶୁଦ୍ରା ମୋର ମାତା ।
ଦୁଇଜଣ ଅନ୍ଧ ଯେ ନଦିଶଇ ପଥ
ଅଜ୍ଞାନେ ଏତେ ଦୋଷ କଲୁ ନରନାଥ ।
କାଣ୍ଡ କାଢ଼ ତୁ ଯେ ଜଳୁଛି ମୋର ଦେହ
ପିତା ମାତାଙ୍କୁ ମୋର ସନ୍ଦେଶ ଯାଇ କହ ।

ଏକଥା ଶୁଣି ମୁଁ କାଢ଼ିଲି ଯେ ଶର
ଦେହରୁ ପ୍ରାଣ ଛାଡ଼ିଗଲାକ ତାହାର ।
ଦେଖିଣ ବିକଳ ହେଲା ମୋର ଦେହୀ
ପିଅର ଜନନୀକି କହିଲି ତାର ଯାଇ ।
ଶୁଣିକରି ଶୋକ କଲେ ବେନିଜନ
ମୋହର ହସ୍ତଧରି କଲେକ ଗମନ ।
ପୁତ୍ରକୁ କୋଳକରି ବହୁତ ଶୋକ କଲେ
ଅଗ୍ନି ସଂଯୋଗ କରି ଜଳାଇଣ ଦେଲେ ।
ପୁତ୍ରକୁ ସଂସ୍କାର କରିବା କଥା ବୁଝି
ଶୁଖିଲା କାଠ ମୁଁ ଆଣିଲି ଯେ ଭାଙ୍ଗି ।
ତହୁଁ ଅଗ୍ନିଶର ସନ୍ଧିଲି ମୁଁ ପୁଣି
ପୁତ୍ର ଘେନି ଅଗ୍ନିରେ ପଶିଲେ ସେ ବେନି ।
ମରିବାବେଳକୁ ଶାପ ଦେଲେ ମୋତେ
ବୋଇଲେ ଏ ଶାପ ପଡ଼ିବଟି ତୋତେ ।
ବୋଇଲେ ପୁତ୍ରମୁଖ ନଦେଖି ତୁ ମର
ଏତେ କହି ମୁନି ଗଲେ ସ୍ୱର୍ଗ ପୁର ।
ସେ କଥା ଗୋଟିକ ମୁଁ ହୃଦରେ ଅଛି ଧରି
ଏତେକାଳେ ମୋତେ ସେ ଘଟିଲା ସୁନ୍ଦରୀ ।
ମୁଁ ଦେହ ଛାଡୁଛି ଆଉ ନ ଧରିବି ପ୍ରାଣ
ନାରଦ ମୁନି ମୋତେ କହିଗଲେ ପୁଣ ।
ଶ୍ରୀରାମ ଲକ୍ଷ୍ମଣ ଜାନକୀ ତିନିଜଣ
ବନସ୍ତେ ଗଲେ ମୋର ସତ୍ୟକୁ ପାଳିଣ ।
ଭ୍ରତ ଶତ୍ରୁଘନ ଅଜାଘର ଗଲେ
ମୋତେ ସର୍ବେ ଏକାକରି ଏଥି ଛାଡ଼ିଗଲେ ।
ଦଇବ ମନ୍ଦ ମୋତେ ବିଚାରିଛି ପୂର୍ବେ
ଚାରିପୁତ୍ର ମୁଖ ମୁଁ ନ ଚାହିଁଲି ଏବେ ।
ସକଳ ପାଟରାଣୀ ଖଟଣିମାନ ନିଅ
ଯତନ କରିଣ ଯେଝା ଘରେ ଥୁଅ ।
ଏତେ ବୋଲି ଧାଇକି ଆଜ୍ଞାଦେଲେ ପୁଣ
ଆଲଟ ଚାମର ବିଞ୍ଚଣୀ ବେଗେ ଆଣ ।
ଆଲ୍ଲତୀ ଧୂପକାଠି ଆବର ବିଞ୍ଚଣୀ
ପଖା ପିକଦାନୀ ପାନ ବିଡ଼ିଆମାନ ପୁଣି ।
କେବେଣ ଦାସୀ ନାନା ସରୁ ଝୀନବାସ
ସମସ୍ତ ନିଯୋଗିଆ ଖଟିଲେ ଚଉପାଶ ।
ଯେଉଁ ପଦାର୍ଥ ଯାହାର ତାହାକୁ ବାଣ୍ଟିଦେଲେ
ସାଇତି ରଖିଥିବ ବୋଲିର ବୋଇଲେ ।

ଯେତେବେଳେ ମନଇଛା ହୋଇବ ତୁମ୍ଭର
ତେତେବେଳେ ଅଗ୍ନିରେ ଝାସିବ ସତ୍ୱର ।
ଏତେ ବୋଲି ରାଜନ ସଭିଙ୍କି ବୋଧକଲେ
ସବୁ ରାଣୀ ବସିଣ ଶୋକଭର ହେଲେ ।
ତାହା ଶୁଣି କୈକୟୀ ଅଇଲା ଖରକରି
ଦେଖିଲା ରାଣୀହଂସ ଅଛନ୍ତି ଯେ ଘେରି ।
ଦାସୀ ପରିବାରୀ ଧାଇ ମୃଦୁସୁଲୀ
ସମସ୍ତେ ବସିଛନ୍ତି ରାଜାଙ୍କୁ ଆବୋରି ।
ସମସ୍ତଙ୍କ ନୟନରୁ ଅଶ୍ରୁଜଳ ବହେ
ଦେଖିକରି କୈକୟୀ ବିଷାଦ ମନ ହୁଏ ।
ବୋଇଲେ ଦଇବରେ ମୋତେ ବାମହେଲୁ
ମରିବା କାଳକୁ ଅକୀର୍ତ୍ତି ଶୁଣାଇଲୁ ।
ଏତେ ବୋଲି ଶୋକ କରନ୍ତି ପାଦତଳେ
ମନ୍ଥଡ଼ୀ ଏହା କଲା କହିଣ ରୋଦିଲେ ।
ଶୁଣିଣ ଦଶରଥ ମନରେ କ୍ରୋଧ ପୁଣ୍
ରାମନାମ ସୁମରଣା କଲେକ ରାଜନ ।
ବସିଥିଲେ ରାଜା ପଡ଼ିଲେ ମୁଖମାଡ଼ି
ସେକ୍ଷଣି ରାଜା ଦେହରୁ ପ୍ରାଣ ଗଲା ଛାଡ଼ି ।
ରାମଚନ୍ଦ୍ର ଯିବାର ବାରଦିନ ରାତ୍ରି
ଦେହ ଛାଡ଼ିଲେ ଦଶରଥ ନରପତି ।
ରାଣୀମାନେ ନ ଜାଣିଲେ ସ୍ୱାମୀଙ୍କ ମରଣ
ରାଜାଙ୍କୁ ବୁଝାଇ କହନ୍ତି ତିଆରିଣ ।
କୌଶଲ୍ୟା ବୋଇଲେ ନ ଜାଣ ସ୍ୱାମୀ କିଛି
ଶ୍ରୀରାମ ପ୍ରାୟେ ପୁତ୍ର କେଉଁଠାରେ ଅଛି ।
ଚନ୍ଦ୍ରସୂର୍ଯ୍ୟ ସହିତେ ଗ୍ରହଗଣମାନ
ଆକାଶରେ ଯେତେ ଅଛନ୍ତି ତାରାଗଣ ।
ରାମ ମନକଲେ ତା ମଞ୍ଚକୁ ପାରେ ଆଣି
ଏକା ନାରାଚକରେ ପକାଇବ ହାଣି ।
ଏତେ ବଳବୀର୍ଯ୍ୟ ଅଟେ ଯେବଣ ବହ
ତୁମ୍ଭ ବୋଲରେ ସେ ବନକୁ ଯାଇଛି ।
ତାକୁ ତେଜିଲ ଗୌରବ ନକଲ ନୃପବର
ସ୍ତିରୀବଶ ହୋଇଲେ ଅଯୋଧ୍ୟା ଈଶ୍ୱର ।
ପୃଥ୍ୱୀ ପର୍ବତ ଯେ ସମୁଦ୍ର ନଦୀମାନ
ଏକା ବାଣକରେ ରାମ କରିପାରେ ଭିନ୍ନ ଭିନ୍ନ
ଏଡ଼େ ସର୍ମଥ ମୋର ପୁତ୍ର ରଘୁନାଥ
ଗାରିମା କରି ସେ ନ ରହିଲା ଏଥ ।

ତୁମ୍ଭର ଆଜ୍ଞାକୁ ସେ ଶିରରେ ଧରିଥାଇ
ତୁ ଯହିଁକି ପେଷିବୁ ତେଣିକି ସେ ଯାଇ ।
ପଣ୍ଡିତ ଜନେ ତାକୁ ପ୍ରଶଂସା କରନ୍ତି
ଗୋଷ୍ଠୀରେ ଶ୍ରୀରାମକୁ ସୁଜନ ବୋଲନ୍ତି ।
ବିଶ୍ୱାମିତ୍ର ମୁନି ମୋତେ ବୋଲେକ ଯେ କହି
ତୋ ରାମ ଲକ୍ଷ୍ମଣ ଅଟନ୍ତି ବେନିଭାଇ ।
ବାସୁଦେବ ଶ୍ରୀରାମ ଲକ୍ଷ୍ମଣ ଅନନ୍ତ
ଜାନକୀ ପରମଲକ୍ଷ୍ମୀ ଅଯୋନୀ ସମ୍ଭୁତ ।
ଦୁଷ୍ଟ ଦୈତ୍ୟ ନାଶିବାକୁ ଜାତହେଲେ ଜାଣ
ମାରିବେ ଅସୁର ଦେବଙ୍କୁ ଉଦ୍ଧରିଣ ।
ତୁମ୍ଭେ ସକଳରାଣୀ ଯିବ ସ୍ୱର୍ଗପୁର
କେତେ କଥା ଦେଖିବ ଶ୍ରୀରାମଚନ୍ଦ୍ରର ।
ଅନେକ କଥା ରାଣୀ ଦେଖାଇ କହିଲେ
ଦଶରଥ ରାଜନ ସମସ୍ୟା ନ ଦେଲେ ।
ରାଜା ନିଦଗଲାପ୍ରାୟେ ବୁଝିଲେ ସର୍ବବାଳୀ
କଉଶଲ୍ୟା ବସିଲେ ମନରେ ପୁଣ ଭାଳି ।
ରାଣୀ ହଂସ କଲେ ସର୍ବେ ଶୟନ ସେଠାରେ
ଧାଈପରିବାରୀ ଗଲେ ଯେ ଯାହାର ପୁରେ ।
କୈକୟା ମନ୍ଥରୀ ସେଠାରୁ ଚଳିଗଲେ ।
ଆପଣା ମନ୍ଦିରରେ ନିଶ୍ଚିନ୍ତେ ଶୋଇଲେ ।
ତେତେବେଳେ ରଜନୀ ତିନି ଯେ ପ୍ରହର
ଶୋଇଲେ ରାଣୀହଂସ ଅଚେତ ଶରୀର ।
ଏଥୁ ଅନନ୍ତରେ ପାହିଲାକ ରାତି
ଦେବଙ୍କଆଳେ ଶଙ୍ଖ ଶୁଭିଲା ଚଉକତି ।
ପଞ୍ଚମସ୍ୱରରେ କରନ୍ତି ଗାୟଣୀ
ବଂଶୀ ଯନ୍ତ୍ର ବଜାଇ ଅଏଁଳା ତାଳ ଘେନି ।
ଭାଟେକଏବାର କରନ୍ତି ଯେ ମିଳି
ଚାମର ବିଞ୍ଚଣୀ ଧରିଣ ଉଭା କେଉଁ ବାଳୀ ।
ପ୍ରକୃତି ସେବକେ ନିଯୋଗ ହୋଇଥାନ୍ତି
ପାତ୍ରମନ୍ତ୍ରୀ ଅମନାତ୍ୟ ଆସିଣ ମିଳନ୍ତି ।
ରାତ୍ର ପାଣିଣ ବେଳ ଦୁଇଘଡ଼ି ହୋଇ
ଶୋଇବାଠାବରୁ ନ ଉଠିଲେ ନରସାଇଁ ।
କଉଶଲ୍ୟା ରାଣୀ ଉଠି ଚାପଇ ଚରଣ
ସକଳରାଣୀ ହଂସ ଉଠିଲେ ତତକ୍ଷଣ ।
କଉଶଲ୍ୟା ବୋଇଲେ ଉଠ ହେ ରାଜନ
ରଜନୀ ପାହି ଦିନ ଆସି ହେଲା ପୁଣ ।

ବେଳ ବହୁତ ହେବାରୁ ଅଇଲେ ପାତ୍ରମନ୍ତ୍ରୀ
ଦେଖିଲେ ଶୋଇଣ ଅଛନ୍ତି ନୃପତି ।
ପୁତ୍ରର ଚିନ୍ତାରେ କି ବହୁତ ନିଦ୍ରାଗଲେ
ଏତେବେଳ ହେଲା ହେ ନୃପ ନ ଉଠିଲେ ।
ଉଠ ଉଠ ପ୍ରଭୁ ହେ ନକର ଅଳସ
ରାତ୍ର ଥାଉ ନିତି ତ ହୁଅ ଅବକାଶ ।
ଆଜି କିମ୍ପା ଶୋଇଛ ନିଦ୍ରାଭର ହୋଇ
ଆପଣେ ଯାହା ତୁମ୍ଭେ ଅର୍ଜିଛ ନରସାଇଁ ।
ଅଭିମାନ କଲେ ଯେ ହେବ ଆଉ କିସ
ଜନମାନଙ୍କ ମୁଖରେ ଉପୁଜିବ ହାସ୍ୟ ।
ଏତେ କହି ରାଣୀ ଭୁଜଧରି ତୋଳି
ଦେହରେ ପ୍ରାଣ ନାହିଁ ରାଜା ପଡିଲେ ଢଳି ।
କଉଶଲ୍ୟା ବୋଇଲେ ବେଗଧର କିନା
ସ୍ୱାମୀଙ୍କର ଜୀବନ ନାହିଁ ଆଉ କିନା ।
ନିଃଶ୍ୱାସ ନବହଇ ନାସାରେ ହସ୍ତ ଦେଲେ
କଣ୍ଠହୃଦ ଦେଖିଲେ ପ୍ରାଣନାହିଁ ଭଲେ ।
କଚାଡି ହୋଇଣ ରାଣୀ ପଡିଲେକ ପୁଣି
ଉଚ୍ଚସ୍ୱରେ ରୋଦନ କଲେ ପୁଣପୁଣି ।
ଆହେ ସ୍ୱାମୀ ମୋହର ଅଯୋଧ୍ୟାର ପତି
ଅରିମର୍ଦ୍ଦନ ତୁମ୍ଭେ ବୀରଚକ୍ରବର୍ତ୍ତୀ ।
ପୁତ୍ରକୁ ନ ଦେଖି ତୁମ୍ଭେ ମଲ ହେ ନୃପବର
ଅନାଥ କରିଗଲ ଏ ଅଯୋଧ୍ୟା ପୁର ।
କଉଶଲ୍ୟା ମୁଖରୁ ଏସନ ବାଣୀ ଶୁଣି
ଆସିକରି ମିଳିଲେ କଇକୟା ରାଣୀ ।
ସୁମିତ୍ରା ସହିତେ ସକଳ ମହାଦେଈ
ଦଶରଥ ଶୟନ ସ୍ଥାନକୁ ସର୍ବେଯାଇ ।
ଦେଖିଲେ ନୃପବର ହାରିଛନ୍ତି ପ୍ରାଣ
କଇକୟା ରାଣୀ କଲେକ କ୍ରନ୍ଦନ ।
ମୁଣ୍ଡରେ ହସ୍ତଦେଇ ପଡିଲେ ଭୂମିଲୋଟି
ଭରତର ଜନନୀ କାନ୍ଦିଲେ କୁହାଟି ।
ସୁମିତ୍ରା ରାଜାଙ୍କର ଧଇଲେ ଅଙ୍ଗୁଷ୍ଠି
ଅଙ୍ଗୁଷ୍ଠି ନଫୁଟିଲା ଦେଖିଲେ ବିମ୍ଭୋଷ୍ଟି ।
ଶିରରେ କରଦେଇ କରନ୍ତି ରୋଦନ
ଆବର କାନ୍ଦନ୍ତି ସକଳ ରାଣୀଗଣ ।
ରୋଦନ କରନ୍ତି ସମସ୍ତେ ମେଳହୋଇ
ଦାସୀ ପରିବାରୀ ମୁଦୁସୁଲୀ ତହିଁ ।

ସାତଶ ପଞ୍ଚାଶ ନୃପତିର ରାଣୀ
ଗୁଣ ସୁମରି ରୋଦନ କରନ୍ତି ତରୁଣୀ ।
ଉଚ୍ଚସ୍ୱରେ ରୋଦନ ପୂରଇ ଆକାଶ
କି କହିବା କେଜାଣି ଉଲ୍ଲୋଳ ସିନ୍ଧୁଘୋଷ ।
ନଗ୍ରଲୋକମାନେ ବାହୁନି କାନ୍ଦନ୍ତି
ଭୋ ସ୍ୱାମୀ ଦଶରଥ ଅଯୋଧ୍ୟା ନୃପତି ।
ଅନେକ ସୁଖ ଦେଇ ଆମ୍ଭଙ୍କୁ ପୋଷିଥିଲ
ନିରାଶ କରି ଏବେ ଛାଡି ପଳାଇଲ ।
କେ ଆମ୍ଭଙ୍କୁ ରକ୍ଷା କରିବ ଗୋସାଇଁ
ଅନ୍ନ ବସ୍ତ୍ର ଆମ୍ଭଙ୍କୁ କେ ଦେବ ଭିଆଇ ।
କିଏ ସେ ରାଜା ହୋଇ ସାଜିବ ଏ ପୁରୀ ।
କେହୁ ଏବେ ସମ୍ଭାଳିବ ଏତେକ ନଗରୀ ।
କେ ବୋଲଇ ଶ୍ରୀରାମ ପାଇବେଣି କାହିଁ
କେ ବୋଲଇ କେହୁ ଅବା ଆଣିବ ବାହୁଡ଼ାଇ
କେ ବୋଲଇ ଭ୍ରତ ତ ନଜାଣେ ଏହା କିଛି
ସାତମାସ ହୋଇଲା ଅଜାଘରେ ଅଛି ।
କେ ବୋଲଇ କଉଶଲ୍ୟାକୁ ହେଲା ଦୁଃଖଭୋଗ
ପୁତ୍ର ବନବାସ ଗଲା ସ୍ୱାମୀଙ୍କ ବିଯୋଗ ।
କେ ବୋଲଇ କଇକୟା ଏତେ କର୍ମ କଲେ
ତାହାଙ୍କର ଯୋଗରୁ ନୃପତି ନାଶଗଲେ ।
କେ ବୋଲଇ ସୁମିତ୍ରା ପୁତ୍ର ବନେ ଗଲେ
ଦଇବର ଯୋଗରୁ ସ୍ନେହ ନ ଛାଡିଲେ ।
ଦୂତେ ବୋଇଲେ ତୁମ୍ଭେ ଏହିକ୍ଷଣି ଆସ
ବିଳମ୍ବ ନକର ସର୍ବ କାର୍ଯ୍ୟ ହେବ ନାଶ ।
ଭରତ ବୋଇଲେ ଚାରମାନେ ଶୁଣ
ଶ୍ରୀରାମ ଲକ୍ଷ୍ମଣ ଦଶରଥ ରାଜନ ।
ମାତୃଗଣ ପାତ୍ର ଅମନାତ୍ୟ ଗଣେ
ଏମାନେ ନିଶ୍ଚିନ୍ତେ ଅଛନ୍ତିଟିକି ପ୍ରାଣେ ।
ଚାର ବୋଇଲେ ତୁମ୍ଭେ ଶୁଣ ବେନିଭାଇ
ପାଞ୍ଚଦିନ ହୋଇଲା ଅଇଲୁ ଆମ୍ଭେ ଧାଇଁ ।
ଆହାର ପାଣି ଯେ ଦେଖିନାହୁଁ ପଥେ
ରାତ୍ର ଦିବା ଅଇଲୁଁ ଅଶ୍ୱ ପିଠିରେ ଏଥେ ।
ରାମଙ୍କୁ ରାଜ୍ୟ ଦେବାକୁ ରାଜନ କହିଲେ
କୈକୟା ଜନନୀ ପିତାଙ୍କୁ ଅଟକିଲେ ।
ବୋଇଲେ ମୋ ପୁତ୍ରକୁ ଆଣ ବେଗକରି
କେମନ୍ତେ ଶ୍ରୀରାମଙ୍କୁ କରିବ ଦଣ୍ଡଧାରୀ ।

ଏହି ସମୟରେ ନାରଦ ମହାରଷି
ରାଜାଙ୍କ ଛାମୁରେ ମିଳିଲେ ସେ ଆସି ।
ବୋଇଲେ ଦଶରଥ ଶୁଣ ମୋର ବାଣୀ
ବାରଦିନରେ ମୃତ୍ୟୁ ହେବ ତୋର ଜାଣି ।
ତାହା ଶୁଣି ରାଜନ ଆମ୍ଭଙ୍କୁ ଦେଲେ ଚାଳି
ବୋଇଲେ ଦଶଦିନେ ଏଠାରେ ଆସି ମିଳି ।
ଚାର ଜଣାଇଲେ ଆଉ ସବୁ ଭଲ
ତୁମ୍ଭେ ଦୁଇ ଭାଇ ଆସ ଯିବା ଚାଲ୍ ।
ଏମନ୍ତ ଶୁଣି ଭ୍ରତ ଶତ୍ରୁଘ୍ନ ଦୁଇ ଭାଇ
କେକୟ ରାଜାଙ୍କୁ ଜଣାଇଲେ ଯାଇ ।
ଭୋଦେବ ଅଯୋଧ୍ୟାରୁ ଦୂତେଛନ୍ତି ଆସି
ଯିବୁ ଆମ୍ଭେ ରାଜ୍ୟକୁ ବହନ ଆଜ୍ଞା ଦେସି ।
ଶୁଣିଣ ରାଜନ ଚାରଙ୍କୁ ହକାରି
ରାଜାଙ୍କ ଭଲମନ୍ଦ ସମସ୍ତ ପଚାରି ।
ଚାର ଜଣାଇଲେ ଶୁଣ ହେ ନୃପବର
ବଶିଷ୍ଠ ଆଜ୍ଞା ଆମ୍ଭଙ୍କୁ ଦେଲେକ ସତ୍ୱର ।
ତୁମ୍ଭର ଦୁହିତା କଇକୟା ରାଣୀ ।
ରାମ ରାଜା ହେବାକୁ ଲଗାଏ କଳି ପୁଣି ।
ବାରଦିନେ ନୃପତି ହୋଇବେ ସ୍ୱର୍ଗ ଲାଭ
ପାଞ୍ଚଦିନ ହେଲାଣି ଅଇଲୁ ଉଦବେଗ ।
ଏହାଙ୍କୁ ଘେନିଣ କରିବେ ବିଚାର
ଦିଅସି ଆଜ୍ଞା ବେଗେ ଯିବୁ ନୃପବର ।
ଶ୍ରୀରାମଙ୍କୁ ରାଜା ରାଜ୍ୟ ଦେବାରେ ମନ
ବଶିଷ୍ଠ ଆମ୍ଭଙ୍କୁ ପେଷିଲେ ବହନ ।
ଆମ୍ଭେ ଯେଉଁ ଅଶ୍ୱରେ ଆସିଛୁ ଆରୋହୀ
ସେ ଅଶ୍ୱ ଚାଲିବାକୁ ଦେହରେ ସଖ୍ୟନାହିଁ ।
ବାହୁଡି ଯିବାକୁ ସେ ନୁହନ୍ତି ସମର୍ଥ
ଆବର ତିନି ଅଶ୍ୱ ଦିଅ ନରନାଥ ।
ଶୁଣିକରି ରାଜନ ପୁତ୍ରଙ୍କୁ ହକାରି
କହିଲେ ଦିଅ ତିନୋଟି ଅଶ୍ୱ ବାଛିକରି
ଆଜ୍ଞା ପାଇଣ ସେ ରାଜାର କୁମର
ବାଛିକରି ଅଶ୍ୱ ଆଣିଲେ ସତ୍ୱର ।
ସଜ କରିଣ ସେ ଯେ ସମର୍ପିଲେ ହୟେ
ଭରତ ଶତ୍ରୁଘନଙ୍କୁ ଡିଆରିଲେ ରାୟେ ।
ତୁମ୍ଭେ ଯାଉଅଛ ଆପଣାର ଦେଶ
ନୃପତିଙ୍କ ଆଗରେ କହିବ ସନ୍ଦେଶ ।

ମାୟା ଜୀବନ ଏତ ଅନିତ୍ୟ ସଂସାର
ନୃପତି ପଣକୁ ସେ ରାମଚନ୍ଦ୍ର ସାର ।
ହୁଅନ୍ତୁ ରାମ ରାଜା ସମସ୍ତେ ବିଚାର
ପିତାଙ୍କୁ ଜଣାଇଣ ଅଭିଷେକ କର ।
ଏତେ ବୋଲିଣ ରାୟେ ଧନରତ୍ନ ଦେଲେ
କରଦୁଇ ଧରିଣ ମୂର୍ଦ୍ଧନ ଆଘ୍ରାଣିଲେ ।
ନୃପତିଙ୍କ ମେଲାଣି ମାଗିଣ ଆସନ୍ତି
ଭିତରେ କୈକୟ ମାତାଙ୍କୁ ଜଣାନ୍ତି ।
ରଥରେ ବସିଣ ଚଳିଲେ ବେନିବୀର
ଅତିବେଗେ ସାରଥି ବାହେ ରହୁବର ।
ଅଯୋଧ୍ୟାର ଅଶ୍ୱଙ୍କୁ ନେଇ ଶାଳରେ ରଖି
କୈକେୟା ରାଜା ତୁରଙ୍ଗ ଆଣିଦେଲେ ବାଛି ।
ଅଶ୍ୱପରେ ବସିଲେ ଦୂତ ତିନିଜଣ
ଚଳିଗଲେ ସେ ଯେ ଭ୍ରତଙ୍କ ଆଗେଣ ।
ରାତ୍ର ଦିବସେ ପଥ ବାହିଗଲେ
ଅନେକ ବିପରୀତ ବାଟରେ ଦେଖିଲେ ।
ଦିବସେ ଗଗନେ ତାରାଗଣ ଦେଖାଯାନ୍ତି
ରଥର ଧ୍ୱଜପରେ ଶାର୍ଗୁଣା ଉଡନ୍ତି ।
ଶୃଗାଳ ବାଟମଧରେ ଆଗରେ ଛିଡାଟି
ସର୍ପ ଫଣା ଟେକିଣ ବାଟ ଓଗାଳନ୍ତି ।
ପଥରେ ଏତେ ଶକୁନ ସବୁ ଦେଖି ଯାନ୍ତି
ପାଞ୍ଚଦିନେ ଅଯୋଧ୍ୟାରେ ପ୍ରବେଶ ହୁଅନ୍ତି ।
ସରଯୁ ପାରିହୋଇ ନଗ୍ରରେ ପଶିଲେ
ବହୁତ ଦୂର୍ଲକ୍ଷଣମାନ ସେ ଦେଖିଲେ ।
ଦେଖିଲେ କଟକ ଦିଶେ ଅମଙ୍ଗଳ
ହାଟବାଟ ଲୋକ ଯେ ହୁଅନ୍ତି ବିକଳ ।
ଡରରେ କେହି କିଛି କହି ତ ନ ପାରି
ବଶିଷ୍ଠ ଋଷି ନକହନ୍ତି ଭୟକରି ।
ସ୍ୱରଶବଦ ଯେ କାହାରି କିଛି ନାହିଁ ।
ବିରସ ମନରେ ଭ୍ରତ ଗଲେ ପଥ ବାହି ।
ହାଟ ବାଟ ଘର ଦିଶଇ ନାରଖାର
ନଗ୍ରଲୋକମାନେ କରନ୍ତି ବିଚାର ।
ପୁତ୍ରମୁଖ ରାଜା ନପାରିଲେ ଚାହିଁ
ଅକାରଣେ ମରଣ ପାଇଲେ ନରସାଇଁ ।
ରାମଙ୍କୁ ବନେ ପେଷିବ ରାଜା ପ୍ରାଣହାରି
ଗୁପତେ କୁହାକୁହି ହୁଅନ୍ତି ନରନାରୀ ।

ସିଂହଦ୍ୱାରେ ରଥ ପ୍ରବେଶ ହେଲା ଯାଇ
ନବରେ ପଶିଲେ ପାଦଗତି ହୋଇ ।
ଦଶଦ୍ୱାର ପରିଯନ୍ତେ ପାଦରେ ଚାଲିଗଲେ
କେହି କାହାକୁ ଯେ ଉତ୍ତର ନଦେଲେ ।
ମନରେ ବିଚାରିଲେ ହୋଇଛି ବିପରୀତ
ବାଟରେ ଦେଖିଲଇଁ ଅସାର ବହୁତ ।
ଏମନ୍ତ ଭାବିଣ କୈକୟୀଙ୍କୁ ଭେଟ ପାଇ
ଶତ୍ରୁଘନଙ୍କୁ ଘେନିଣ ଚରଣେ ଲୋଟଇ ।
କରଦୁଇ ଯୋଡିଣ ପଚାରନ୍ତି ବାଣୀ
କାହିଁ ବିଜେକରି ଅଛନ୍ତି ନୃପମଣି ।
କୈକୟୀ ବୋଇଲେ ଶୁଣରେ କୁମର
ପିତା ତୁମ୍ଭର ଯେ କଲେ ଅଦ୍ଭେଭାର ।
ଶ୍ରୀରାମଙ୍କୁ ଅଯୋଧ୍ୟାରେ ନୃପତି କରିବ
ଭାଳେଣି କଲେ ବସି ପାତ୍ରମନ୍ତ୍ରୀ ସର୍ବ ।
ସେ କଥାକୁ ବାରତା ପାଇଲି ଯେ ମୁହିଁ
ସତ୍ୟକରାଇଲି ରାଜାଙ୍କୁ ବୁଝାଇ ।
ଚଉଦବରଷ ରାମ ବନବାସ ଯାଉ
ଭରତ ଅଯୋଧ୍ୟାରେ ନୃପତି ପଣେ ରହୁ ।
ଶୁଣିଣ ମହାରାଜା ସନମତ କଲେ
ପୁତ୍ର ପୁତ୍ର ବୋଲିଣ ପ୍ରାଣ ହରାଇଲେ ।
ଶ୍ରୀରାମ ବନଗଲେ କୋଡ଼ିଏ ତିନିଦିନ
ତୁମ୍ଭ ପିତା ମଲେ ଏଗାରଦିନ ଜାଣ ।
ବଶିଷ୍ଠ ସୁମନ୍ତ୍ର ଦୂତ ଯେ ପେଷିଣ
ତୁମ୍ଭ ଦୁଇ ଭାଇଙ୍କି ଅଣାଇଛନ୍ତି ଜାଣ ।
ଏବେ ତୁମ୍ଭେ ଅଯୋଧ୍ୟା ସୁଖେ ଭୋଗକର
ଦଶରଥ ନୃପତି ଦେଇଗଲେ ବର ।
ତୋ ନୃପତିପଣ ଦେଖି ହେବି ମୁଁ ଆନନ୍ଦ
ମୁଖ ବିକାଶିବ ମୋର ପୂର୍ଣ୍ଣିମାର ଚାନ୍ଦ ।
ଶୁଣିକରି ଭରତର ଉଡ଼ିଲା ସାହସ
ଶରୀର କମ୍ପି ବହିଲା ଖର ନିସୁଆସ ।
ନୟନରୁ ଅଶ୍ରୁଜଳ ବହେ ଘନ ଘନ
ଢ଼ଳି ପଡିଲେ ଭରତ ଧରଣୀରେ ପୁଣ ।
ଶତ୍ରୁଘନ ଢଳିଣ ପଡିଲେ ତାଙ୍କସଙ୍ଗେ
ଦାସୀ ପରିବାରୀ ଧଇଲେ ତାଙ୍କୁ ବେଗେ ।
ଟୋକି ଧରିଣ ପୁଣ ସଚେତ କରାଇଲେ
ମୁଖରେ ପାଣି ସିଞ୍ଚି ଉଠାଇ ବସାଇଲେ ।

ଚେତା ପାଇଣ ଭରତ ହୋଇ କୋପ ମନ
ଜନନୀଙ୍କି ଚାହିଁଣ ବୋଲନ୍ତି ବଚନ ।
ଧନ୍ୟ ଧନ୍ୟ ତୁ ଯେ ରାଜାର ଦୁଲଣୀ
କେଉଁ ବିହି ତୋତେ ଏ ବୁଦ୍ଧ ଦେଲା ଆଣି ।
ଏଡେକ ବିଘ୍ନ ତୁ କାହିଁପାଇଁ କଲୁ
ଶ୍ରୀରାମଙ୍କୁ ବନବାସ କଷ୍ଟ ଯେ ବିହିଲୁ ।
ଶ୍ରୀରାମ ବନେ ଗଲେ କି ମୁଁ ରାଜପଣ କରଇ
ମୁହିଁ ଛାର କି ଅଯୋଧ୍ୟାପୁରକୁ ଯୋଗ୍ୟହୋଇ
ଏତେ ଅପଯଶ କିମ୍ପାଇଁ ମୋତେ ଦେଲୁ
ଶ୍ରୀରାମ ଭ୍ରତକୁ ତୁ ବେଗଳ କରାଇଲୁ ।
ତୋହର ମନ୍ଦପଣ ନ ଜାଣିବେ କେହି
ମୋତେ ବୋଲିବେ ଭ୍ରତ ଏକଥା କଲାଇଁ ।
ଏ କୁଳକୁ ନାଶ ତୁ କଲୁ ଚଣ୍ଡାଳୁଣୀ
କିପରି ଧରିଛି ତୋତେ ଏ ଧରଣୀ ।
ସୂର୍ଯ୍ୟବଂଶ ଗୋଟାଏକୁ ହେଳେ ତୁ ନାଶ କଲୁ
କାହାଠାରୁ ତୁ ଲୋ ଏକଥା ଶିଖିଲୁ ।
ଦାସୀ ବୋଇଲେ ଦେବ ମନ୍ଥରୀ ଏହା କଲା
ରାତ୍ର ଦିବସ ତୋ ମାତାଙ୍କୁ ଶିଖାଇଲା ।
ଭ୍ରତକୁ ରାଜ୍ୟ ଦେଇ ଶ୍ରୀରାମ ବନ ଯାଉ
ତୋହର ମାତା ଗୁଣ ଯୁଗେ ଯୁଗେ ଥାଉ ।
ସେ କଥାକୁ ସନମତ କଲେ ତୋ ଜନନୀ
ସତ୍ୟ କରାଇଣ ମାଗିଲେ ବର ତିନି ।
ଚଉଦ ବରଷ ରାମ ବନ ଯିବେ
ଭରତ ଅଯୋଧ୍ୟାରେ ନୃପତି ହୋଇବେ ।
ତେଣୁ ସିନା ଶ୍ରୀରାମ ବନବାସ କଲେ
ପୁତ୍ରକୁ ସୁମରିଣ ରାଜା ପ୍ରାଣଦେଲେ ।
ମନ୍ଥରୀକି ବୋଇଲେ ତୋର ଏସନକ କୃତ୍ୟ
ଶୁଣିଣ ଭ୍ରତବୀର ଉଠିଲେ ତ୍ୱରିତ ।
ଦେଖିକରି ଜନନୀ ଭୟରେ ପଳାଇଲା
କବାଟ କିଳିକରି ଭିତରେ ପଶିଲା ।
ଭରତ ଆଜ୍ଞାଦେଲେ ଶତ୍ରୁଘନକୁ ଚାହିଁ
ମନ୍ଥରୀକି ବେଗେ ଘେନିଆସ ଯାଇ ।
ଏଡେକ ପୁଣ୍ୟପୁରେ ଅକୀର୍ତ୍ତି ଭିଆଇଲା
କ୍ଷୀର ମଧ୍ୟରେ ଖାର ମିଶାଇଲା ।
ଶୁଣିଣ ଶତ୍ରୁଘନ ଗଲେ ଖରକରି
ଭ୍ରତ ଛାମୁକୁ ଆଣିଲେ ମନ୍ଥରୀ ବାଳ ଧରି ।
ଘୋସାରି ହୋଇଣ ସେ ନ ଆସଇ ଡରେ
ଭରତ ବୋଇଲେ ଅତି କୋପଭରେ ।
ଖଡଗ ଘେନିଣ ଛେଦ ଯାର ଶିର
କ୍ଷଣେହେ ନ ରଖି ପ୍ରାଣରେ ଯାକୁ ମାର ।
ଏ ପାପିନୀର ମୁଖ ଚାହିଁ ତ ନଯୋଗାଇ
କିଲୋ ପାମରୀ ତୁ ଲୋ କିମ୍ପା ଏହା କହି ।
ପାଣିକି ଦୁଇଭାଗ କରିଣ ତୁ ଲୋଡୁ
ମାରରେ ଶତ୍ରୁଘନ ପାପିନୀ ଶୀଘ୍ର ମରୁ ।
ସ୍ୱର୍ଗେ ଥାଇ ବିଚାର କଲେ ଦେବଗଣ
ମନ୍ଥରୀକି ନିଶ୍ଚୟ ମାରିବ ଭ୍ରତ ଜାଣ ।
ଆମ୍ଭପାଇଁ ମନ୍ଥରୀ ହୋଇଅଛି ଦୂତ
ସ୍ୱରସ୍ୱତୀଙ୍କି ଚାହିଁଣ ବୋଲନ୍ତି ଦଇବତ ।
ତୁହି ଯାଇ ଶତ୍ରୁଘନ ହୃଦୟରେ ବସ
ଯେମନ୍ତେ ମନ୍ଥରୀ ନଯାଏ ପ୍ରାଣେ ନାଶ ।
ଶୁଣିଣ ସରସ୍ୱତୀ ତତକ୍ଷଣେ ଗଲେ
ଶତ୍ରୁଘନ କଣ୍ଠରେ ଦେବୀ ବିଜେକଲେ ।
ଭରତ ଡାକ ଦିଅନ୍ତି ବେଗେ ଶିର ଛେଦ
ଜୀବନ୍ତେ ଥିଲେ ସେ କରିବ ପରମାଦ ।
ଖଡଗ ଘେନିଣ ଛେଦ ଯାର ଶିର
ଏହାକୁ ମାଇଲେ ସ୍ତିରୀବଧ ନୋହିବ ଆମ୍ଭର ।
ଶତ୍ରୁଘନ ବୋଇଲେ ଦେବ ଏ ସ୍ତିରୀଯୋନି
ଏହାକୁ ମାଇଲେ ହେବ ଧର୍ମହାନି ।
ମାଡମାରି ଏହାର ଭାଙ୍ଗିଦେବା ବପୁ
ମାସେ ପକ୍ଷେ ଜୀଇ ସେ ପାଉପଛେ ମୃତ୍ୟୁ ।
ମାଡ ମାଇଲେ ଏତ ମରିବ ଅବଶ୍ୟ
ମାସେ ପକ୍ଷେ ଗଲେ ନ ଲାଗିବ ଦୋଷ ।
ଏତେ କହି ମନ୍ଥରୀକି ଶତ୍ରୁଘନ ଧରି
ଚାରି ପାଞ୍ଚଥର ଦେଲେକ କଚାଡି ।
ଝାଙ୍କି ଘୋଷାଡିଣ ଅନେକ ଦୁଃଖ ଦେଲେ
ଭୟ ନକରିଣ ପୁଣ ମାଡିଣ ବସିଲେ ।
ବାବଲ ଶରେ କାଟିଲେ ତା ମୁଣ୍ଡର ବାଳ
ଲାଣ୍ଡି କରାଇଦେଲେ ମନ୍ଥରୀକି ତତ୍କାଳ ।
ଛାଡିଦେବାରୁ ତାକୁ ଗଲାକ ପଳାଇ
କଇକୟା ପାଶରେ ଲୁଚିଲାକ ସେହି ।
ସେଠାରୁ ଭରତ ଶତ୍ରୁଘ୍ନ ଚଳିଗଲେ
କଉଶଲ୍ୟାଙ୍କ ପୁରେ ପ୍ରବେଶ ହୋଇଲେ ।

ଶ୍ରୀରାମର ମାତା ବସିଣ କାନ୍ଦୁଅଛି
ନୟନରୁ ଅଶ୍ରୁଜଳ ନପାରେ ସେ ପୋଛି ।
ଭରତ ଶତ୍ରୁଘନ ନମିଲେ ପାଦତଳେ
ଚରଣ ଧରି ରୋଦନ କରିଲେ ବିକଳେ ।
କୌଶଲ୍ୟା ବୋଇଲେ କିମ୍ପା ବେନିଭାଇ କାନ୍ଦ
ତୁମ୍ଭର ଏକଥା ବାବୁ ଅଟଇ ଆନନ୍ଦ ।
ତୋର ମାତା ଯେବେ ତୋତେ ରାଜପଣଦେଲା
ଅଯୋଧାରେ ତୋହର ନୃପତି ହେବା ହେଲା ।
ଅକଣ୍ଟକ ରାଜ୍ୟ ବାବୁ ହୋଇଲା ତୋହର
ରାମ ଲକ୍ଷ୍ମଣ ମୋର ପଶିଲେ ବନଘୋର ।
ମଲାପ୍ରାଣୀ ସଙ୍ଗେ ତାଙ୍କୁ ସିନା ଲେଖି
ଜାନକୀ ଦୁଃଖ ଭୋଗିଲା ଶରଦଚନ୍ଦ୍ରମୁଖୀ ।
ବନକୁ ଯିବାରୁ ସେ ନୋହିଲେ ଗଣିତା
ଭାଗ୍ୟ ଅର୍ଜିଲା ତୋର କଇକୟା ମାତା ।
ଏକଛତ୍ର ହୋଇବୁ ତୁହି ତାର ସୁତ
ଆଜି ତାର ଉଦୟ ହେଲାଟି ପବିତ୍ର ।
ଭରତ ବୋଇଲେ କଉଶଲ୍ୟାଙ୍କ କରଧରି
ଭୋ ମାତା ଦୋଷ ଯେ ନାହିଁଟି ମୋହରି ।
ମନେ ଜ୍ଞାନେ ଯେବେ ମୁଁ ଜାଣିଥିବି ଏହା
ଶ୍ରୀରାମ ବନେ ଗଲେ ମୁଁ ହେବି ନରନାହା ।
ଏକଥା ଯେବେ ମୋର ଥିବ ମନେ ଜ୍ଞାନେ
ତୋର ଆଗରେ ମୁହିଁ କହୁଛି ବିଧାନେ ।
ପୁତ୍ର ନଥିବା ଲୋକ ଯେଉଁ ଦୋଷ ପାଇ
ଶ୍ରୀରାମଙ୍କୁ ଯେବେ ମୋର ହୃଦରେ ମାୟାଥାଇ
ତାହାଙ୍କର ତୋଷ ଯେ ମୋତେ ଭୋଗହେଉ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଏକଥା ନ ଯାଉ ।
ଅକାରଣେ ପ୍ରାଣୀଙ୍କି ମାରନ୍ତି ଯେଉଁଜନ
ଏକସୂର୍ଯ୍ୟେ ଦୁଇବେଳ କରେ ଯେ ଭୋଜନ ।
ରଉରବ ସ୍ତିରୀଙ୍କି ଯେ ରମଣ କରନ୍ତି
ରବିବାର ଦିନ ଯେ ଆମିଷ ଭକ୍ଷନ୍ତି ।
ରାତ୍ରର ବେଳକ ଉପରେ ଯେହୁ ଖାଇ
ବାଟରେ ଥିବା ବୃକ୍ଷକୁ ଯେ ପ୍ରାଣୀ ଛେଦଇ ।
ଅମାବାସ୍ୟା ସଂକରାନ୍ତି ଏକାଦଶୀ ଦିନ
ତଇଳ ଘେନି ଯେହୁ କରଇ ସ୍ନାହାନ ।
ଏତେ ପାପ ପାଇବି ରାମଙ୍କୁ ମାୟା ଥିଲେ
ଏକଥା ଆନ ନୁହେ ବ୍ରହ୍ମା ବିଷ୍ଣୁ ବୋଲେ ।

କୀର୍ତ୍ତି ନକରି ପରକୁ ଆଶ୍ରେ କରନ୍ତି ଯେ ଜନ
କ୍ଷୁଧାର୍ତ୍ତୀ ଦେଖିଣ ଯେ ନଦିଏ ଭୋଜନ ।
ଆପଣାର ଧନ ଥାଉ ବନ୍ଧୁ ଯେ ନ ପୋଷନ୍ତି
ପରମ ସୀମା ଯହୁଁ ବଳରେ ହରନ୍ତି ।
ଗୁଣକଲେ ଯେହୁ ଧରନ୍ତି ଅବିଗୁଣ
ଦେବକୁ ନପୂଜି ଭୁଞ୍ଜନ୍ତି ଯେ ଅନ୍ନ ।
ପାଲଟି ବସ୍ତ୍ର ଯେହୁ ନଧୋଇ ପିନ୍ଧନ୍ତି
ଆଗପାଶକୁ ଯେହୁ କେଶ ବାନ୍ଧିଥାନ୍ତି ।
ପାଦ ନପଖାଳି ଯେ ଭୁଞ୍ଜନ୍ତି ଆଧାର
ଦୋଷ ନବୁଝି ଭାର୍ଯ୍ୟାକୁ କରେ ଯେ ପ୍ରହାର ।
ଶତ୍ରୁଙ୍କ ସଙ୍ଗରେ ଯେ କରନ୍ତି ବିଶ୍ୱାସ
ନଜାଣି ପ୍ରାଣୀଙ୍କି ଦିଅନ୍ତି ଅପଯଶ ।
ଲୋକଙ୍କୁ ନିନ୍ଦନ୍ତି ମୂର୍ଖ ମୂଢ଼ପଣେ
ଆପଣାର ସାମର୍ଥ୍ୟ ଯେ କହନ୍ତି ଆପଣେ ।
ସଭାରେ ମିଛଭାଷା କହେ ଯେଉଁ ଜନ
ନିୟମ କରିବାକୁ ଯେ କରେ ଆଗମନ ।
ପାଣିରେ ପଶିଣ ଉଲଗ୍ନ ହୁଏ ଯେହୁ
ସ୍ନାନକରି ମଥା ନପୋଛଇ ଯେହୁ ।
ଅଛବ ଜାତି ସଙ୍ଗେ ଯେ ରମଣ କରନ୍ତି
ମାନନ୍ତୀ ଗଉରବ ଯେ ପ୍ରାଣୀ ନମାନନ୍ତି ।
ଯାହାର ଜୀବିକାକୁ ସେ ଯେବେ ଛାଡଇ
ବ୍ରାହ୍ମଣ ହୋଇ ଯେବେ ନଉତି ଧରଇ ।
କ୍ଷତ୍ରୀ ହୋଇ ଯେବେ ଯୁଦ୍ଧକୁ ନଆସି
ଶୂଦ୍ର ହୋଇଣ ଯେବେ ବ୍ରାହ୍ମଣରେ ଦୋଷୀ ।
ବଣିଜ ନଜାଣନ୍ତି ବଣିଜାର ଜନ
ଗୃହସ୍ଥକୁ ଭାର୍ଯ୍ୟା ଯେବେ ନକରେ ସମ୍ମାନ ।
ପିତାକୁ ଯେଉଁ ପୁତ୍ର ନକରଇ ଭୟ
ରାଜ୍ୟ ନସମ୍ଭାଳନ୍ତି ହୋଇଣ ଯେ ରାୟ ।
ପାଷାଣ୍ଡ ଲୋକଙ୍କର ବଦନ ଯେ ଚାହିଁ
କାର୍ଯ୍ୟ ସରିଲେ ଯେ ଦେବତାକୁ ନିନ୍ଦଇ ।
ଜନନୀ ବର୍ଗଙ୍କୁ ଯେ ପରିହାସ କରେ
ଦେବତାଙ୍କ ଅଳଙ୍କାର ଯେ ପିନ୍ଧେ ଅଙ୍ଗରେ ।
ବ୍ରାହ୍ମଣ ହୋଇଣ ଯେ ବିକଇ ଗୋରସ
ଶରଣ ଲୋକକୁ ନରଖେ ଯେ ପୁରୁଷ ।
ଗୋରୁ ହଜିଲେ ଯେ ନଖୋଜେ ତିନିଦିନ
ବିଷ୍ଣୁଠାରେ ଭକ୍ତି ନକରେ ଯେଉଁଜନ ।

ଦକ୍ଷିଣକୁ ମୁଖ କରି ଯେ ଜନ ଭୁଞ୍ଜନ୍ତି
ଉତ୍ତରକୁ ମୁଣ୍ଡ କରି ଯେ ଜନ ଶୁଅନ୍ତି ।
ଦୁର୍ଭିକ୍ଷକାଳରେ ଯେ ନଦିଏ ଅନ୍ନଦାନ
ନୃପତିକି ନିନ୍ଦା କରଇ ଯେ ଜନ ।
ବଡପଣ ଦେଖାଇ ଯେ ପରଯୁବତୀ ହରନ୍ତି
ଓଦାବସ୍ତ୍ର ପିନ୍ଧି ଯେ ଦେବତା ଦେଖିଯାନ୍ତି ।
ପୁଣ୍ୟକାଳରେ ଯେ ନଦିଏ ପୁଣ୍ୟଦାନ
ସ୍ନାହାନ ନକରି ଯେ କରେ ଦେବାର୍ଚ୍ଚନ ।
ସୂର୍ଯ୍ୟଙ୍କୁ ଅର୍ଘ୍ୟ ନ ଦିଅନ୍ତି ଯେଉଁଜନ
ଘୃତ ନପକାଇ ଯେ ଭୁଞ୍ଜନ୍ତିଟି ଅନ୍ନ ।
ଦେବତାଙ୍କ ପୁଷ୍ପ ଯେ ମଥାରେ ଘେନନ୍ତି
ପରର ମନ୍ଦ ଚିନ୍ତା ଯେ ପ୍ରାଣୀ କରନ୍ତି ।
ବନ୍ଧୁଜନଙ୍କୁ ଯେ କରନ୍ତି ନିରାଶ
କନ୍ୟାମାସେ ଦେବୀଠାରେ ଯେନକରନ୍ତିବିଶ୍ୱାସ
ମଇତ୍ରଠାରେ ପ୍ରୀତି ନୁହେଁ ଯେଉଁ ଜନ
ମଦିରାକୁ ପାନ କରଇ ଯେ ଜନ ।
ଶସ୍ତ୍ର ଧରିଣ ଯେ ଗୋରୁଙ୍କୁ ଦ୍ୟନ୍ତି ହାଣି
ଏତେଲୋକଙ୍କ ଦୋଷ ପାଇବି ମୁଁ ପୁଣି ।
ଦେବତା ବ୍ରାହ୍ମଣେ ହରନ୍ତି ସୁଦ୍ଧ ସିନା
ଏଥୁ ଯେହ୍ନେ ହରନ୍ତି ଦଶବିଂଶ ଚିନା ।
ବ୍ରାହ୍ମଣକୁ ବଧ କରନ୍ତି ଯେ ପୁଣି
ଏତେ ଲୋକଙ୍କର ପାପ ହେଉ ମୋତେ ପୁଣି
ଏତେ ଦୋଷର ପାପ ପାଇବି ଗୋ ମାତ
ମୋର କର୍ଣ୍ଣ ଯେବେ ଶୁଣିଥିବ ଗୋ ଏମନ୍ତ ।
ଶ୍ରୀରାମଠାରେ ମୋର ଥିବ ଯେବେ ମାୟା
ଏତେ ପାପମାନ ବସୁ ମୋର କାୟା
ତୁହି ଗୋ ଭୋ ମାତ ମୋତେ କର ଦୟା
ଏଥକ୍ୟାକ କଲେ ମାତା ଯେ କୈକୟା ।
ମନ୍ଥରୀର ବୋଲେ ସେ କରିଅଛି ଏହା
ଏଥିକି ବିଚାର ନକଲେ ନରନାହା ।
ଯେବେ ଜନନୀ ତାଙ୍କୁ ସତ୍ୟ କରାଇଲା
ମୋତେ ନ ଆଣି ନୃପତି ଅବିଚାର କଲା ।
ବୋଲିଥାନ୍ତେ ତୋର ପୁତ୍ର ଯେବେ ହେବ ରଜା
ତୋ ପୁତ୍ର ଆସିଲେ ରାମ ହେବ ତେଜ୍ୟା ।
ମୋତେ କିମ୍ବା ନୃପତି ଡକାଇ ନ ଆଣିଲେ
ନଗ୍ର ନର ନାରୀ ଅନେକ ଶୋକକଲେ ।

ତୁମ୍ଭେ କାହିଁକି ରୋଦନ କର ବୀରବର
ଧଇର୍ଯ୍ୟ ପଣକରି ମନକର ଧୀର ।
ଲୋକେ ବୋଇଲେ ଯେ ବଶିଷ୍ଠ ଋଷି ଥାନ୍ତେ
ଖଳବଳ ରାଜ୍ୟ ତ ହେଲା ବିପରୀତେ ।
କୈକୟା ରାଣୀ ଯୋଗୁଁ ଭ୍ରତକୁ ଅପଖ୍ୟାତି
ସବୁ ଖଳ ଭିଆଇଛି ମନ୍ଥରୀ ଦୁର୍ମତି ।
ବିଶ୍ୱାସ ହୋଇଣ ସେ ଏକଥା ଭିଆଇଲା
ଶ୍ରୀରାମକୁ ରାଜ୍ୟରୁ ବାହାର କରି ଦେଲା ।
କଉଶଲ୍ୟା ସୁମିତ୍ରାର ଶୋକ ନସରଇ
ବଶିଷ୍ଠ ଋଷି ଯେ ଭ୍ରତଙ୍କୁ ବୁଝାଇ ।
ଏମାନଙ୍କୁ ଶାନ୍ତି କରାଅ ଭ୍ରତବୀର
ଦଶରଥ ରାଜାଙ୍କର ପିତୃକାର୍ଯ୍ୟ କର ।
ନଗ୍ର ନରନାରୀଙ୍କି ପ୍ରବୋଧ କର ଯାଇଁ
ଆଶ୍ୱାସନା କରିଣ ଲୋକଙ୍କୁ ରଖ ତୁହି ।
ବଶିଷ୍ଠଙ୍କ ବଚନରେ ଭ୍ରତ ଦମ୍ଭ ହେଲେ
ଆନନ୍ଦ ହୋଇଣ ଶୋକ ସମ୍ଭାଳିଲେ ।
ରବି ଅସ୍ତ ହୋଇଲେ ପ୍ରବେଶ ତିମିରୀ
ସେହି ପ୍ରାୟେ ଶୋଇଲେ ଉପବାସ କରି ।
ରଜନୀ ପ୍ରଭାତରୁ ଆସ୍ଥାନେ ବିଜେ କଲେ
ପାତ୍ର ମନ୍ତ୍ରୀ ସାମନ୍ତ ଅନେକ ମିଳିଲେ ।
ପରିବାରୀ ସେବକ ନିଯୋଗୀ ଲୋକମାନେ
ରାଉତ ମାହୁନ୍ତ ପଦାତି ଗହଣେ ।
ଲେଙ୍କା ଲମ୍ଭହତା ଖୁଣ୍ଟିଆ ପ୍ରତିହାରୀ
ଚଉକତିରେ ଛନ୍ତି ପଟୁଆର କରି ।
ନିଶବଦ ହୋଇଣ ସଭିଏ ବସିଛନ୍ତି
ଏଥୁଅନନ୍ତରେ ବଶିଷ୍ଠ ବୋଲାନ୍ତି ।
ଦଶରଥ ରାଜାଙ୍କୁ ବେଗେ ବାହାର କର
ଶୁଣିକରି ସନ୍ତୋଷ ହେଲେ ଭ୍ରତବୀର ।
ଏଥୁଅନନ୍ତରେ ସେବକ ଆଣିଲେ
ଚଉଦ ଦିନ ରାଜା ତୈଳଭାଣ୍ଡେ ଥିଲେ ।
ସୁବର୍ଣ୍ଣର କୁଣ୍ଡରେ ତଇଳ ପୂରାଇ
ଦଶରଥ ରାଜାଙ୍କୁ ଥୋଇଥିଲେ ନେଇ ।
ଭଣ୍ଡାରୁ କାଢ଼ିଣ ସଭା ମଧ୍ୟକୁ ନେଲେ
ନାନା ତୀର୍ଥ ଜଳରେ ସ୍ନାନ କରାଇଲେ ।
ଚନ୍ଦନ କସ୍ତୁରୀ ମିଶାଇଣ ଗୋଳି
ଆଙ୍ଗୁଳିକ ବହଲେ ରାଜାଙ୍କ ଅଙ୍ଗେ ବୋଳି

ନାନା ସୁଗନ୍ଧିରେ ଶିରରେ ପୁଷ୍ପରଞ୍ଜି
ନବରତ୍ନ କୁଣ୍ଡଳ କର୍ଣ୍ଣରେ ଶୋଭାପାନ୍ତି ।
କଣ୍ଠରେ ଲମ୍ବାଇଲେ ମୁକୁତାର ମାଳ
ହୀରା ନୀଳା ଜଡିତ ପଦକ ବକ୍ଷସ୍ଥଳ ।
ଭୁଜରେ କିଙ୍କିଣୀ ବାହାରେ ବାହୁଟି
କଟିରେ କଟିମେଖଳା ମୁଦ୍ରିକା ଅଙ୍ଗୁଷ୍ଠି ।
ପୟରେ ନୂପୁର ବୀରବରବାନା
ଲଲାଟରେ ଲିଖନ କସ୍ତୁରୀମାନ ସିନା ।
ସୁଦିବ୍ୟ ପତନୀ ଅମଳାଣ ଯେ ପିନ୍ଧାଇ
ସୁବର୍ଣ୍ଣର ବିମାନରେ ବସାଇଲେ ନେଇ
ନଗ୍ରଲୋକମାନେ ହାହାକାର କଲେ
ବାଦ୍ୟଶବଦରେ ପୃଥିବୀ ଉଚ୍ଛୁଳିଲେ ।
ଦୋହରା ଘରୁ ଅଣାଇଲେ ହୁତାଶନ
ବେଦଧ୍ୱନି କରିଣ ଦେଲେ ଅଗ୍ନିଦାନ ।
ବଶିଷ୍ଠ ପୁରୋହିତେ ସକଳ କାର୍ଯ୍ୟକଲେ
ଭ୍ରତଙ୍କୁ ସଙ୍ଗେ ଘେନି ବିଜେ କରିଗଲେ ।
ମୁଖାଗ୍ନି ଦେଇଣ ସରଯୂ ଜଳେ ପଶି
ସ୍ନାହାନ କରିଣ ଜଳଦାନ ଦେଲେସି ।
କ୍ରିୟା ଧରିଲେ ସେ କୈକୟାଙ୍କ ସୁତ
ଶୀତଳ ପଦାର୍ଥମାନ ଦେଲେ ସେ ବହୁତ ।
ପଥରେ ପଥଶ୍ରାଦ୍ଧ କଲେ ଭ୍ରତବୀର
ପିଣ୍ଡପାଣି ଦେଇ ରାଜାଙ୍କୁ କଲେ ନମସ୍କାର ।
ଦହନ କରିଣ ରାଇ ଶିତଳାଇ
ବିପ୍ରଙ୍କୁ ଶବଦେଇ ନାନା ତୀର୍ଥକୁ ଚଳାଇ ।
ମହାଦେଈମାନେ କାଢ଼ିଲେ ସୁବର୍ଣ୍ଣର ବାହି
ଶୁକଳବସ୍ତ୍ର ପିନ୍ଧି ବିଧବା ବେଶ ହୋଇ ।
ସେହିଠାରୁ ଦିନ ଗଣିଲେ ପୁଣ ପୁଣି
ଶିତଳମଣୋହି ଦେବତା ଆଳେ ଜାଣି ।
ବ୍ରାହ୍ମଣଙ୍କୁ ଭୋଜନ ଦେଲେ ମିଷ୍ଟଅନ୍ନ
ଚରାଚାକାରୀଙ୍କି ଦେଲେ ସେ ଭୋଜନ ।
ଋଷିଙ୍କି ଆମନ୍ତ୍ରିଣ ଫଳମୂଳ ଦେଲେ
ସେହିଦିନଠାରୁ କ୍ରିୟା ଆରମ୍ଭେ ସେ କଲେ ।
ଚାରିଦ୍ୱାରେ ରାଜ୍ୟରେ ଦେଲେ ସଦାବ୍ରତ
ଦୁଃଖୀଲୋକମାନଙ୍କୁ ଡାକିଣ ଦେଲେ ତ ।
ଦଶଦିନ ତ ପୁଣି ଆସି ହେଲା ଯହୁଁ
ନଦୀର କୂଳରେ କ୍ଷୌର ହେଲେ ତହୁଁ ।
ନୂତନ ବସ୍ତ୍ରମାନ ସମସ୍ତେ ପିନ୍ଧିଲେ
ଜଳ ତିଳମାନ ଜ୍ଞାତିଜନ ଦେଲେ ।
ଏକାଦଶଦିନ ବହୁତ ଦାନଦେଲେ
ଜ୍ଞାତିଲୋକମାନେ ଘୃତ ପାନକଲେ
ଦଶଲକ୍ଷ ବ୍ରାହ୍ମଣଙ୍କୁ ଭୋଜନ ସେ ଦେଲେ
ଦଶଲକ୍ଷ ଶୁଦ୍ଧ ସୁବର୍ଣ୍ଣ ବିଳୋହିଲେ ।
ଲକ୍ଷେ ଗୋରୁଙ୍କୁ ବୈତରଣୀ ଦାନଦେଲେ
ଲକ୍ଷେକ ଧେନୁ ସମର୍ପଣ କରାଇଲେ ।
ଦ୍ୱାଦଶ ଦିବସରେ ଦେଲେ ଅନ୍ନଦାନ
ଷଡରସ ପ୍ରକାରେ ଦେଲେ ସେ ଭୋଜନ ।
ତେରଦିନ ଅନ୍ତରେ ମନ୍ତ୍ରୀଗଣେ ଭାଳି
ବଶିଷ୍ଠ ସହିତେ ଭ୍ରତ ଆଗେ ମିଳି ।
ବୋଲନ୍ତି ଶୁଣ ହେ କୈକୟାର ସୁତ
ରାଜ୍ୟରେ ଅଭିଷେକ ହୁଅ ହେ ତ୍ୱରିତ ।
ପିତା ତୁମ୍ଭର ସତ୍ୟରେ ରାଜ୍ୟ ଦେଇଗଲେ
ସିଂହାସନେ ବସ ତୁମ୍ଭେ ଦଶରଥ ବାଳେ ।
ନପୁଣ ତୁମ୍ଭଙ୍କୁ ନୁହେଟି ପ୍ରାପତ
ପିତାଙ୍କର ଶତ୍ରୁ ଅଛନ୍ତି ବହୁତ ।
ଦେଶ ପରଜା ବନ୍ଧୁ ଧନ ଯେ ଭଣ୍ଡାର
ଶବଦ ଶୁଭିଲାଣି ରାଇଜ ଯାକର ।
ଏହା ଯେବେ ଆୟତ କରିଣ ସମ୍ଭାଳି
ତେବେ ସିନା ପ୍ରାପତ ହେବ ମହୀଆଳି ।
ନୃପତିଙ୍କ ନିଧନ ରାମ ବନବାସ
ରାଜ୍ୟର ଲୋକେ ତହିଁ କରିଛନ୍ତି ଆଶ ।
ସିଂହାସନରେ ବସ ହୁଅ ଅଭିଷେକ
ଯେ ଯାହାରେ ନିଶ୍ଚିନ୍ତ ହୁଅନ୍ତୁ ନଗ୍ରଲୋକ ।
ଶ୍ୱେତଛତ୍ର ବାନା ଉଡେ ତୋ ଶରୀର
ବାହୁବଳରେ ତୁମ୍ଭେ ରାଜ୍ୟ ରକ୍ଷାକର ।
ଭରତ ବୋଇଲେ ମନ୍ତ୍ରୀଗଣଙ୍କ ମୁଖ ଚାହିଁ
ଶ୍ରୀରାମ ସିନା ଅଟନ୍ତି ଅଯୋଧାର ସାଇଁ ।
ଶ୍ରୀରାମଙ୍କୁ ନଦେଖିଲେ ତୃପତି ମୋର ନାହିଁ
ସେ ରାମ ଅଟନ୍ତି ମୋର ନିଜ ଦେହୀ ।
ଏ ରାଜ୍ୟରେ ମୋର ଅଛି କିସ ପୁଣ
ଚନ୍ଦ୍ରଉଦୟରେ କି ସୂର୍ଯ୍ୟର କିରଣ ।
ରାଜା ହୋଇବାକୁ ମୁଁ ନୁହଇ ଭାଜନ
ଶ୍ରୀରାମ ଏଥିରେ ଅଟନ୍ତି ରାଜନ ।

ଏଡେ ଭାର କିମ୍ପା ଶିରରେ ବହିବି
ଜଗତରେ ଅପଖ୍ୟାତି ବହୁତ ପାଇବି ।
ଉଚ୍ଚ ବୃକ୍ଷରେ ଯେହ୍ନେ ଫଳ ଫଳିଥାଏ
ବାଙ୍ଗର ଲୋକ ତହିଁକି ହାତ ଯେ ବଢ଼ାଏ ।
ତାର ହସ୍ତ ପାଆନ୍ତା ସେ ଆଣନ୍ତା ଫଳ
ତେମନ୍ତ ହୋଇଣ ମୁଁ ହେବି ମହୀପାଳ ।
ଦୋହରା ଘରେ ଯେହ୍ନେ ପଶୁଛି କୁକୁର
ମୁଁ ରାଜା ହେଲେ ହୋଇବ ତେମନ୍ତ ପ୍ରକାର
ଅନ୍ଧାର କାଳେ ଯେହ୍ନେ ଗୁନ୍ଥେ ପାଟସୂତା
ସଞ୍ଜାଣର ସଙ୍ଗେ କାହିଁ ବଳର ବ୍ୟବସ୍ଥା ।
ରାମ ରାଜା ହେଲେ ଏଥିକି ଶୋଭାପାଇ
ମୁଁ ରାଜା ହେଲେ ଉପହାସ ପାଇ ।
ଶ୍ରୀରାମଙ୍କୁ ଆଣିବି ଚରଣ ତଳେ ପଡ଼ି
ମୋର ବୋଲେ ସ୍ୱାମୀ ଆସିବେ ବାହୁଡ଼ି ।
ଏହିକଥା ହେଲା ନ ପାଇବି ପ୍ରଭୁଙ୍କୁ
ଚାଲ ବାହୁଡାଇ ଆଣିବା ତାହାଙ୍କୁ ।
ଯେବେ ରାମ ଲକ୍ଷ୍ମଣ ନ ଆସିବେ ପୁଣ
ଜାନକୀ ଆଣି ରାଜା କରିବି ଏଥି ଜାଣ ।
ଯାର ନାମ ଧଇଲେ ତ୍ରୈଲୋକ୍ୟ ଜିଣି ହୁଏ
ଦେବଙ୍କ ପାଞ୍ଚିଥିଲେ ନାହିଁ ମୋ ଉପାୟେ ।
ଏତେ ବୋଲି ଭ୍ରତ ସୁମନ୍ତ୍ରକୁ ଚାହିଁ
ପ୍ରଭାତରୁ ଯିବା ଥାଟ ଆଣ ରାଇ ।
ଶ୍ରୀରାମ ଯିବାରେ ମାସେ ଦଶଦିନ ହେଲା
ପିତା ମରଣ ଅଠେଇଶି ଦିନ ବହିଗଲା ।
ମୁହିଁ ଆସିବାର ହେଲାଣି ପକ୍ଷେ ଜାଣ
କେତେ କଷ୍ଟ ଦେଲେ ତାଙ୍କୁ ମୋ ଜନନୀ ପୁଣ
ବଶିଷ୍ଠ ବୋଇଲେ ଆହେ ଭ୍ରତବୀର
ଯେବେ ଲେଉଟି ନ ଆସିବେ ରଘୁବୀର
ପିତା ସତ୍ୟ କେଭେ ନ ଲଙ୍ଘିବେ ରଘୁନାଥ
ଚଉଦ ବରଷ ଅନ୍ତେ ଆସିବେକ ଏଥ ।
ତୁମ୍ଭେ ରାଜା ହୋଇଣ ପାଳ ଏହି ପୃଥ୍ୱୀ
ଦାଶରଥିଙ୍କର ଅନେକ ଶତ୍ରୁଛନ୍ତି ।
ଛିଦ୍ର ପାଇଲେ ସେ କରିବେ କଟକାଇ
ଦୁଃଖୀହେବେ ଅଯୋଧ୍ୟାପୁରରେ ଯେତେଥାଇ
ଭରତ ବୋଇଲେ ବଶିଷ୍ଠଙ୍କ ବଚନରେ
ଭୋ ମୁନି ଏହା କିମ୍ପା ବିଚାର ମନରେ ।

ଏ ମୋହର କାକୁସ୍ଥରେ ଆସିବେ ରଘୁନାଥ
ମୋହର ଯିବାର ତ ଅଟଇ ଯଥାର୍ଥ ।
ଏ କଥାରେ ତୁମ୍ଭେ ମୋତେ ନ ତିଆର ମୁନି
ଶ୍ରୀରାମଙ୍କୁ ଦେଖିଲେ ମୋ ଜୀବନ ହେବ ଧନି ।
ଶ୍ରୀରାମ ରାଜନ ଅଟନ୍ତି ଏହୁ ପୁରୀ
ମୁହିଁ କିମ୍ପା ତାଙ୍କ ରାଜ୍ୟେ ହେବି ଦଣ୍ଡଧାରୀ ।
ପିତାଦୋଷୀହେଲେ ଯେ ଜନେ ହେଲେ ଦୋଷୀ
ମୁହିଁ ଦୋଷୀ ହେଲେ ଥିବି ଅବିଶ୍ୱାସୀ ।
ତିନିକୂଳ ସରି ଅଟେ ମୋହଠାରୁ
ବୋଇଲେ ତିନିଜଣ ବିଚାରରେ ଗରୁ ।
ପିତା ନାଶଗଲେ ଭ୍ରତ ନ ଆସିଲା ମୋରପାଶ
ମୁହିଁ ନଗଲେ ପୁଣ ଦିଅନ୍ତି ସନ୍ଦେଶ ।
ବଶିଷ୍ଠ ବୋଇଲେ ଯେ ତୁମ୍ଭର ଇଚ୍ଛା
ଆମ୍ଭର ଯେ ସମ୍ମତ ହେ ଦଶରଥ ବତ୍ସା ।
ଶ୍ରୀରାମଙ୍କୁ ଦେଖିବାକୁ କି ଆମ୍ଭର ମନ ନାହିଁ
ଏ ବଚନ ଶୁଣି ଯେ ସୁମନ୍ତ୍ର ବୋଲଇ ।
ନୋହିଲେ ଶ୍ରୀରାମଙ୍କୁ ଦେଖିବା ପୁଣି ଯାଇ
ସମସ୍ତ ମନ ସନ୍ତୋଷ ହେଲେ ସେଥିପାଇଁ ।
ତୁମ୍ଭେ ମହାରଷି ହେ ବିଚାର କିମ୍ପା ଆନ
ଭରତ କହିଲେ ଯେବଣ ବିଧାନ ।
ସବୁରି ମନକୁ ସେକଥା ଯୋଗାଇ
ଶ୍ରୀରାମଙ୍କୁ ଯେବେ ଆଣିବା ଲେଉଟାଇ ।
ଅନେକ ଶୁଭକାର୍ଯ୍ୟ ହୋଇବ ପୁଣି ତେଣେ
ନୋହିଲେ ବିଚାର ବା ଭରତ ରାଜାପଣେ ।
ଜାବାଳୀ କଶ୍ୟପ କଲେକ ସନମତ
ବାମଦେବ ବୋଲନ୍ତି ଏ ଅଟଇ ଯୁକତ ।
ମନରେ ଜାଣିବେ ସେ ମୋର ଭାଇ ଭଲ
ମାୟା ନଥିବାରୁ ଅଇଲା ଏତେ ଦୂର ।
ଅଭିଷେକ ନୋହି ସେ ଅଇଲା ମୋତେ ଡାକି
କୈକେୟୀ ଜନନୀମୋର ମାତାଙ୍କୁ କଲେ ଦୁଃଖୀ
ଅଇଲେ ଶ୍ରୀରାମ ଆଣିବା ବାହୁଡ଼ାଇ
ନୋହିଲେ ଶ୍ରୀରାମଙ୍କୁ ଦେଖିବା ତ ଯାଇ ।
କରୁଣା ସାଗର ଅଟନ୍ତି ରାମଚନ୍ଦ୍ର
ଯାହାଙ୍କୁ ପ୍ରଶଂସା କରନ୍ତି ସୁର ଇନ୍ଦ୍ର ।
ଶୁଣିକରି ବଶିଷ୍ଠ ହୋଇଲେ ଆନନ୍ଦିତ
ସୁମନ୍ତ୍ରକୁ ଚାହିଁ କହିଲେ ଭରତ ।

ରଥ ଗଜା ପଦାତି ସମସ୍ତ ସଜକର
କାଲି କଟକାଇ ହେବ ଦିଘଡି ଭିତର ।
ଜ୍ୟେଷ୍ଠାନକ୍ଷତ୍ର ଯେ ଦଶମୀ ସୋମବାର
ଆମ୍ଭରାଶିକି କକଡା ହେବ ସମ୍ପଦ ତାର ।
ଦୁଇ ପାଖରେ ବସାଇଥିବ ନେଇ ପାଣି
ପଥେଯିବା ଲୋକେ ତୃଷା ନିବାରିବେ ପୁଣି ।
ଅପନ୍ତରା ବାଟରେ ଏମନ୍ତ କରି ବିଧି
ଏମାନ ସମସ୍ତ ଯେ କରିଥାଅ ସିଦ୍ଧି ।
ଦୁଧ ଦହି ପଣା ଯେ ପଇଡ ପଣସ
ଆମ୍ବ ତାଳ ସଜ ଥିବ ଦୁଇପାଶ ।
ଫୁଟିକାକୁଡି ସଙ୍ଗରେ ଥିବ ଯେ କଇଁଥ
ଖଣ୍ଡ ଖଣ୍ଡ ଶାକର ସରୁଅନ୍ନ ଭାତ ।
ଘୋଡାପାଇଁ ଘାସ ବିରିଦାନା ସମ୍ପାଦିବ
ହାତୀକି ବିରି ଚାଉଳ ଲବଣ ଆଦି ଦେବ ।
ଓଝାଳରେ ଦୁଇ ଦୁଇ କୂପ ଖୋଳାଇବ ।
କୋଶକରେ ପୋଖରୀ ଚଉରା କରାଇବ ।
ଅନୁକୂଳକୁ ବାଟରେ ରଖିବ ଦଧି ମାଛ
ଶ୍ୱେତପାରୁଆ ଶ୍ୱେତନେଉଳ ରାଜହଂସ ।
ଯୋଜନକ ଅନ୍ତରେ ମଣ୍ଡପ ପୁଣ ତୋଳି
ତିନିଯୋଜନରେ ଦେଉଳ ନିର୍ମାଣି ।
ଭୋଗକରି ପ୍ରସାଦ କରିବ ଅପାର
ସେଠାରେ ସାରିବ ଦେବାର୍ଚ୍ଚନର ବେଭାର ।
ଓଭାଳେକ ସ୍ଥାନରେ ପତ୍ରଦ୍ରୋଣା ଥିବ
ଖାଲଖଣା ବାଟକୁ ସମାନ କରିବ ।
ଶତେକ ହାତୀ ଶଗଡ଼ ଯିବ ସେଥି ଚାଲି
ଦାଣ୍ଡ ସଜକରିବ ପକାଇବ ବାଲି ।
ରାତ୍ରକ ଭିତରେ କରିବ ଭିଆଣ
ଗଙ୍ଗାକୂଳ ପର୍ଯ୍ୟନ୍ତେ କରିବ ନିର୍ମାଣ ।
ଲେଙ୍କା ଲମ୍ବହତା ଆଡ଼ଟିଆମାନ ଗଲେ
ଦେଶ ଦେଶକୁ ଆଜ୍ଞା ରାତ୍ରେ ଚାଳିଦେଲେ ।
ଶୁଣିକରି ଜନପ୍ରଜା ହରଷ ହୋଇଲେ
ରାଜାଙ୍କ ନିମନ୍ତେ ଲୋକ ଲଗାଇଲେ ।
ଯେତେକ ଆଜ୍ଞା ଦେଇଥିଲେ ନୃପବର
ସମସ୍ତ ଭିଆଣ କଲେ ରାତ୍ରକ ଭିତର ।
ବାଉଁଶ କାଠରେ ଦେଉଳ ମଣ୍ଡପ ଅଟାଳି
ପାଣିପଣା ଛତ୍ର ସବୁ ଠିକ କରି ।

ରଜକାରୀ ସହର ବେହେରା ହେଲେ ଠିଆ
ବନକୁ କାଟିଣ ବାଟକଲେ ନୂଆ ।
ଏଥୁଅନନ୍ତରେ ଅଯୋଧ୍ୟା ନଗ୍ରଲୋକେ
ରଜନୀ ଉଜାଗରେ ମନର ଉତ୍ସୁକେ ।
ସୁମନ୍ତ ନିର୍ଭାକଲା ସମସ୍ତ ଯେ ଭଲା
ସଜହୋଇ ଆସିଣ ଟମକ ଦେଇଗଲା ।
ବାଜିଲା ନାଗରା ଟମକ ନିରନ୍ତର
ଶଙ୍ଖ ମହୁରି ବୀଣା ସପତ ଯେ ସ୍ୱର ।
ରାମତାଳି ତାଳ କଂସାଳ ମର୍ଦ୍ଦଳ
ଘଣ୍ଟା ଘାଗୁଡ଼ି ପୁଣ ବୀରକାହାଳ ।
ଦମାଲୁ ଡିବି ଡିବି ଟମକ ଘୋଷବାଜେ
କିଜାଣି ଶରଦରେ ଦ୍ରୋଣମେଘ ଗର୍ଜ୍ଜେ ।
ରଥ ଗଜ ଅଶ୍ୱ ପଦାତି ସଜହୋଇ
ରାଜାଙ୍କ ସିଂହଦ୍ୱାରେ ମିଳିଲେ ସର୍ବେ ଯାଇ ।
ନିତ୍ୟକର୍ମ ସାରିଣ ଭରତ ଶତ୍ରୁଘନ
ରାମଙ୍କୁ ଦେଖିବାକୁ ଉଦବେଗ ମନ ।
ବଶିଷ୍ଠ ବାମଦେବ ଜାବାଳୀ କଶ୍ୟପ
ଏମାନେ ମିଳିଲେ ଭ୍ରତଙ୍କ ସମୀପ ।
ମାତାମାନେ ବୋଇଲେ ଆମ୍ଭେ ସର୍ବେ ଯିବୁ
ଶ୍ରୀରାମ ଯେଣେ ଯିବ ଆମ୍ଭେ ତେଣେ ଯିବୁ ।
ବାଳବୃଦ୍ଧ ଛାଡ଼ିଣ ସର୍ବେ ସଜହେଲେ
ଭରତ ଶତ୍ରୁଘନ ରଥ ଆରୋହିଲେ ।
ମନ୍ତ୍ରୀ ଅମନାତ୍ୟେ ସୁକାସନେ ଚଢ଼ି
କେହୁ ଗଜପରେ କେହୁ ଅଶ୍ୱ ବାଳଧରି ।
କେ ହାନ୍ଦୋଳାଚଢ଼ିଲେ କେ ଚଢ଼ିଲେ ପୁଣଯାନ
ହାନ୍ଦୋଳାରେ ବସିଲେ ଦଶରଥ ରାଣୀମାନ ।
ଧାଇ ମୃଦୁସୁଲୀ ଝଡ଼ା ପରିବାରୀ
ଲୋକ ଚାଲିବାରେ ବାରିତ ନପାରି ।
ଅଯୋଧ୍ୟାରେ ଲୋକେ ନରହିଲେ କେହି
ତୁଚ୍ଛା ହେଲା ପ୍ରାୟେ ଅଯୋଧ୍ୟା ନଗ୍ର ହୋଇ ।
ଭରତ ଶତ୍ରୁଘନ ବିଜେ ଭାଇବେନି
ଦେଖନ୍ତି ସର୍ବଲୋକ ଆନନ୍ଦ ମନ ଘେନି ।
କଉଶଲ୍ୟା ଯିବା ଦେଖି ବଧୂମାନେ ପୁଣି
ମାଳିନୀ ଉର୍ମିଳା ସୁକୀର୍ତ୍ତି ତିନିଭଗ୍ନୀ ।
ଶାଶୁଙ୍କ ଚରଣେ ଓଳଗିଲେ ଯାଇ
ହାନ୍ଦୋଳା ଓଗାଳିଲେ ଆଗରେ ଉଭାହୋଇ ।

କଉଶଲ୍ୟା ବୋଇଲେ ତୁମ୍ଭେ କିମ୍ପା ବଳକର
ତିନିବଧୂ ବୋଇଲେ ଆମ୍ଭେ ଯିବୁଁ ସଙ୍ଗତର
କଉଶଲ୍ୟା ବୋଇଲେ ଶୁଣ କୁଳବଧୂ
ତୁମ୍ଭ ଶାଶୁ ସଙ୍ଗେ ତୁମ୍ଭେ ଚଳ ପୂର୍ଣ୍ଣଇନ୍ଦୁ ।
ମାଳିନୀ ବୋଇଲେ ଆମ୍ଭେ ନ ଜାଣୁ ଆଉଆନ
ତୁମ୍ଭେ ଗୁରୁ ଆମ୍ଭର ମାତା ପୁତ୍ରେ ଜାଣ ।
ତୁମ୍ଭବଧ ଆମ୍ଭର ଠାକୁରାଣୀ ଜାଣ
ଦର୍ଶନ କରିବୁ ଯାଇ ତାଙ୍କର ଚରଣ ।
କୌଶଲ୍ୟାବୋଇଲେ ହାନ୍ଦୋଳାରେ ବିଜେକର
ଶାଶୁ ସିନ ଦୋଷୀ ତୁମ୍ଭେ ତ ମୋହର ।
ଆଜ୍ଞାପାଇ ବେହେରା ଦାଉଣ୍ଡ ଆଣିଦେଲେ
ତହୁଁ ତିନିବଧୂ ରାଣୀଙ୍କ ସଙ୍ଗେ ଗଲେ ।
ଆନନ୍ଦ ହେଲେ ମନେ କଉଶଲ୍ୟା ରାଣୀ
ରାମଙ୍କୁ ଦେଖିବେ ବୋଲି ଚଳିଲେ ସେ ପୁଣି ।
ଭ୍ରତ ଚଳିଗଲେ ଅଯୋଧ୍ୟା ପ୍ରଜାଚଳି
ହାଟୁଆ ବାଟୁଆ ସମସ୍ତେ ଯେ ମିଳି ।
ଫୁଲଖଟଣୀମାନେ ସମସ୍ତ ଘୋଡ଼ାଘାସୀ
ବଣିଜାର ଲୋକେ ସଙ୍ଗେ ବଣିଜ ଘେନିଆସି ।
ଥାଟ ଚଳିଯାନ୍ତେ ଯେ କମ୍ପଇ ମେଦିନୀ
ଆଗରେ ହୁଅଇ ଲକ୍ଷେ ଶଙ୍ଖଧ୍ୱନି ।
ଆଲମ୍ବ ବିଳମ୍ବ ପାଟ ଛତ୍ର ବସ୍ତ୍ର ।
ବିବିଧବର୍ଣ୍ଣେ ତହିଁ ଝଲକନ୍ତି ଅସ୍ତ୍ର ।
ବାଦ୍ୟର ଶବଦରେ କୂରୁମ ଚମକଇ
ଦିଗଦିଗ ଚମକେ ଚମକେ ସୁରସାଇଁ ।
ପାତାଳେ ନାଗଲୋକେ ବାସୁକି ଚମକଇ
ମଧ୍ୟପୁର ଗୋଟି ଚମକେ ଘାତପାଇ ।
ଭରତ ସଙ୍ଗେ ବିଦୁଜନମାନେ ଥାନ୍ତି
ନାନା କଉତୁକେ କଥା ସେ ବୁଝାନ୍ତି ।
ବାଟରେ ନାନାଦ୍ରବ୍ୟ ଠାବେ ଠାବେ ଥୋଇ
ଯେ ଯାହାର ଇଚ୍ଛାରେ ସର୍ବଦ୍ରବ୍ୟ ଖାଇ ।
ପଥେ ଯାନ୍ତେ ପରଜାଏ ଦେଖିଣ ଗୋଡ଼ାନ୍ତି
ନୂଆରାଜା ଦେଖିବାକୁ ଶ୍ରଦ୍ଧାରେ ଧାମନ୍ତି ।
ସେଦିନ ଥାଟ ଯାଇ ଗୋମତୀ ରହିଲେ
ରାତ୍ର ପ୍ରଭାତରୁ ସେଠାରୁ ଚଳିଗଲେ ।
ଗଂଗାର କୂଳରେ ହେଲେ ପରବେଶ
ବୀର ତୂର ଶବଦରେ କମ୍ପଇ ଆକାଶ ।
ଶ୍ରୀରାମଙ୍କ ମଇତ୍ର ଗୁହ୍ୟ ଯେ ଶବର
ଭାଗୀରଥି ଗଂଗାକୂଳେ ଅଟେ ତାର ଘର ।
ବାରବାଦ୍ୟ ଶବଦରେ ଚମକେ ତାର ପୁର
ପଦାତି ବଳ ଡାକିଣ ହେଲେ ଏକମେଳ ।
ଦଶ ସହସ୍ର ବଳ ଘେନି ଓଗାଳିଲା ଆସି
ଭରତ ସୈନ୍ୟଙ୍କୁ ସେ ପଡୁଛନ୍ତି ଝାମ୍ପି ।
ଧନୁରେ ଗୁଣଦେି ବାଣ ସେ ବିନ୍ଧିଲେ
ଯିବାର ପଥକୁ ଯାଇ ସେ ନିରୋଧିଲେ ।
କିଳିକିଳା ରଡ଼ିଦେଲେ ମେଘ ଗରଜନ
ମାରମାର ବୋଲି ଡାକ ଛାଡ଼ନ୍ତି ଅବିଚ୍ଛିନ୍ନ ।
ଭରତ ଆଗରେ ଲୋକ କହିଲେକ ଯାଇ
ଶବର ସୈନ୍ୟ ଘେନିଣ ପଥ ନିରୋଧଇ ।
ଆଗୁଆଣି ବଳ ତାର କାଣ୍ଡ କାଣ୍ଡ କଲେ
ଏ ବଚନ ଶୁଣି ଭ୍ରତ ଶତ୍ରୁ ଘନକୁ ବୋଇଲେ ।
କାହିଁକି ଯୁଝଇ ସେ ପଚାରି ଆସଯାଇ
ବାଟ ପଡ଼ିବ ବୋଲି ସେ ଏଠାରେ ଅଛିରହି ।
ସେ କଥା ଜାଣିଲେ ସିନା ଆମ୍ଭେ କରିବା ଦ୍ୱନ୍ଦ୍ୱ
କାହିଁପାଇଁ ବାଟ ଓଗାଳିଛି କନ୍ଧ ।
ଏମନ୍ତ ବୋଲି ବୀର ରଥ ବାହିନେଲେ
ଗୁହ୍ୟନାମେ ଶବର ଆଗରେ ମିଳିଲେ ।
ଭରତ ବୋଇଲେ ଶୁଣ ହେ ଶବର
ବାଟ ଓଗାଳି କିମ୍ପା କରୁଛ ଅବେଭାର ।
ଶ୍ରୀରାମଙ୍କ ଭାଇ ମୁଁ ମୋ ନାମ ଭରତ
ଅଯୋଧ୍ୟାର ରାଜା ମୋର ପିତା ଦଶରଥ ।
ମାତା ମୋର କୈକୟୀ ମନରେ ହିଂସାକଲା
କପଟରେ ରାଜାଙ୍କୁ ସତ୍ୟ କରାଇଲା ।
ମୋର ପୁତ୍ର ଅଯୋଧ୍ୟା କଟକେ ରାଜାହେଉ
ଶ୍ରୀରାମ ଚଉଦ ବରଷ ବନେ ଯାଉ ।
ଶ୍ରୀରାମ ଲକ୍ଷ୍ମଣ ସୀତା ତିନିଜଣ
ପିତାସତ୍ୟ ପାଳିବାକୁ ଚଳିଲେ ସେ ବନ ।
ରାମ ବନ ଆସନ୍ତେ ପିତା ହେଲେ ହତ
ଅଜାଘରେ ଆମ୍ଭେ ଥିଲୁଁ ବେନି ଭ୍ରାତ ।
ଦୂତଯାନ୍ତେ ଆମ୍ଭେ ଅଇଲୁଁ ଖରକରି
ଦେଖିଲୁଁ ନାରଖାର ଦିଶୁଅଛି ପୁରୀ ।
ଦ୍ୱାଦଶ ଦିବସରେ ଶୁଦ୍ଧ ତାଙ୍କୁ ହେଲୁ
ଅନେକ ଦାନ ପୁଣ୍ୟ ଦ୍ୱିଜବରେ କଲୁ ।

ବଶିଷ୍ଠ ବୋଇଲେ ରାଜା ତୁ ହୁଅସି
ସେକଥାମାନ ମୋର ମନକୁ ନଆସି ।
ଜ୍ୟେଷ୍ଠ ଭାଇ ମୋହର ପ୍ରତ୍ୟକ୍ଷରେ ତାତ
ଭୋ ରାଜା ଏଥିରେ ମୁଁ ତାଙ୍କର ଅଟେ ଭୃତ୍ୟ
ରାମଙ୍କୁ ନ ଦେଖିଲେ ଜ୍ଞାନ ମୋର ନାହିଁ
ଆହାରେ ଭାଇ ମୋର ତୋତେଦେଖିବିକାହିଁ
ଏତେ କହି ଭରତ ରଥରୁ ଢଳିପଡ଼ି
ଉଚ୍ଚସ୍ୱରେ କାନ୍ଦିଲେ ଶିରରେ କରତାଡ଼ି ।
ଶତ୍ରୁଘନ ସୁମନ୍ତ ଧଇଲେ କୋଳକରି
ଦେଖିଣ ଗୁହ୍ୟଶବର କହଇ କରଯୋଡ଼ି ।
ଭୋ ଭାତ୍ର ବୀର ତୁମ୍ଭେ ନଘେନ ମୋର ଦୋଷ
ଶ୍ରୀରାମଙ୍କ ମଇତ୍ର ମୁଁ ଅଟଇ ବିଶ୍ୱାସ ।
ସୁମନ୍ତ ମନ୍ତ୍ରୀ ଜାଣନ୍ତି ସକଳ ବୃତ୍ତାନ୍ତ
ରାତ୍ରକ ଏଠାରେ ରହିଲେ ସୀତାକାନ୍ତ ।
ଏ ପୁଇଁଚାନ୍ଦିଆ ମୂଳେ ବସା କରିଥିଲେ
କୁଶ କାଟିଆଣିଣ ପାଡ଼ିଣ ଶୋଇଲେ ।
ଲକ୍ଷ୍ମଣ ବଞ୍ଚିଲେ ଏହିଠାରେ ବସି
ମୁହିଁ ତାଙ୍କ ସଙ୍ଗରେ ଅନିଦ୍ରା ହେଲି ବସି ।
ମୋହର ଘରଣୀ ସରିତା ନାମେ ବାଳୀ
କର୍ଣ୍ଣରେ ଶୁଣିଲା ରାମ ଲକ୍ଷ୍ମଣ ବ୍ରହ୍ମଚାରୀ ।
ଖାଇବାର ଫଳମୂଳ ରାତ୍ରରେ ଘେନିଆସି
ଶ୍ରୀରାମ ଲକ୍ଷ୍ମଣ ସୀତା ଚରଣେ ନିବେଶି ।
ତାଙ୍କୁ ଦର୍ଶନ କରି ଘରକୁ ଚଳିଗଲା
ଏହିଠାରେ ଜଗିରହ ମୋତେ ସେ ବୋଇଲା
ଏହି ବଟକ୍ଷୀର ଘେନି ଶିରରେ ଜଟ କଲେ
ନାବରେ ବସିଣ ସେ ଗଙ୍ଗା ପାରିହେଲେ ।
ପ୍ରୟାଗଠାବକୁ ମୁଁ ବାଟ କହିଦେଲି
ତାହାଙ୍କର ସଙ୍ଗରେ ଲୋକ ମୁଁ ଭେଦିଲି ।
ବାରତା ପାଇଛି ରାମ ଅଛନ୍ତି ଚିତ୍ରକୂଟେ
ମୁହିଁ ତୋତେ ନଚିହ୍ନଇ ଶୁଣ ଆହେ ଭ୍ରାତେ ।
ଶୁଣିକରି ଭରତ ବିକଳ ମନେ ପୁଣି
ଶ୍ରୀରାମ ଦୁଃଖ ପାଇବା କର୍ଣ୍ଣରେ ତା ଶୁଣି ।
ରଥରୁ ଓହ୍ଲାଇ ଭ୍ରତ ଶବରକୁ କୋଳକରି
ଶ୍ରୀରାମକୁ ତୁମ୍ଭେ ମୋତେ ଦେଖାଅ ବେଗକରି
ପୁଇଁଚାନ୍ଦିଆ ମୂଳରେ ତୃଣ ଶଯ୍ୟା ଦେଖି
ଭରତ ଥନ ଥନ କରଇ ବେନି ଆଖି ।

ବୋଇଲେ ଏହା କଲେ ଜନନୀ ମୋହର
ଶ୍ରୀରାମ ଦୁଃଖ ପାଇଲେ ମୋ ମାତାଙ୍କ ହେତୁର ।
ବଟ ବୃକ୍ଷକୁ ଚାହିଁଣ ଶବରକୁ ପୁଛି
ଏଥିରେ ଶ୍ରୀରମ ଜଟା ବାନ୍ଧିଛନ୍ତି ।
ଏଥୁଅନନ୍ତରେ ଭ୍ରତ ଶତ୍ରୁଘନ ଘେନି
ଆପଣେ ଜଟାକଲେ ବଟକ୍ଷୀର ଘେନି ।
ସୋଦର ଗୁଣ ଘେନି ଶବର ପୂଜାକଲା
ଶ୍ରୀରାମଙ୍କ କଥାମାନ ଭ୍ରତ ସୁମରିଲା ।
ବୋଇଲା ଶ୍ରୀରାମ ତ ହେଲେ ତପସ୍ୱୀ ରୂପ
ଆମ୍ଭେ କିମ୍ପା ନୋହିବୁ ତାଙ୍କର ସ୍ୱରୂପ ।
ଦେଖିଣ ସର୍ବଲୋକେ କଲେ ହାହାକାର
ରୁଚିର କେଶ କିମ୍ପା କଲେ ନାରଖାର ।
କେ ବୋଲଇ ଭାଇର ଭକତି ଭାବଘେନି
ସୋଦରିମାପଣ ଘେନି ତପସ୍ୱୀହେଲେ ବେନି ।
ଗଙ୍ଗାର କୂଳରେ ରହିଲେ ସେହିଦିନ
ଶବର ଯୋଗାଡ଼ ଦେଲାକ ବିଧାନ ।
ରଜନୀ ପ୍ରଭାତରୁ ନିତ୍ୟକର୍ମ ସାରି
ଗୁହ୍ୟ ନାମେ ଶବରକୁ ଆଣିଲେ ହକାରି ।
ହୃଦୟରୁ ପଦକ କାଢ଼ିଲେ ଅଳଙ୍କାର
ଶବରର ଗଳାରେ ଲମ୍ବାଇଲେ ବୀର ।
ଶବରର ମଥାରେ ପାଟେକ ଦେଲେ ବାନ୍ଧି
କୋଳକରି ବୋଇଲେ ତୁହି ମୋର ସନ୍ଧି ।
ମୋତେ ତୁହି ନେଇଣ ମୋ ଭାଇଙ୍କି ଦେଖା
ସୁଯୋଗରେ ଭେଟ ପଡ଼ିଅଛୁ ସଖା ।
ଆଗେ ତୋର ଦଣ୍ଡବଳ ଘେନିଣ ସଙ୍ଗେଥିବୁ
ରାମଙ୍କୁ ଭେଟିବା ଯାଏଁ ମୋର ତୁଳେ ଥିବୁ ।
ଶୁଣିକରି ଶବର କଲାକ ଶରଧା
ଅଙ୍ଗବଳ ତାର ଦଶଲକ୍ଷ ଯୋଦ୍ଧା ।
ଆଜ୍ଞାକୁ ପାଇଣ ନାବ ସଜକଲା
ଭାରତ ସମଦଣ୍ଡେ ଆଗ ସେ ହୋଇଲା ।
ବେନିଗୋଟି ଚାପ ସେହି ନିର୍ଭାକଲା ।
ପାଞ୍ଚଗୋଟି ଚାପ ସେହି ନିର୍ଭାକଲା ।
ଭାରତ ସମଦଣ୍ଡରେ ନେଇ ବେଗେ କଲା
ଚାପ ଗୋଟିକରେ ଶତେକ ବସାଇଲା ।
ଘୋଡ଼ା ହାତୀ ସ୍ଥିରକରି ତହିଁ ଚଢ଼ାଇଲା
ଆରକଳରେ ନେଇ ତାହାଙ୍କୁ ଛାଡ଼ିଲା ।

ଏକଇ ନାବରେ ସହସ୍ରେ ଲୋକ ନେଇ
ନାବର ଗହଳରେ ନଦୀ ନ ଦିଶଇ ।
ଭରତ ଶତ୍ରୁଘନ ନାବରେ ଗଲେ ଚଳି
ମନ୍ତ୍ରୀଗଣ ଆସି ଯେତେକ ଲୋକମିଳି ।
ଦର୍ପଣରେ ଚାମର ମଣ୍ଡଲା ଅଛି ତହିଁ
ବୀରବର ନେତ ଫରଫର ଯେ ଉଡ଼ଇ ।
ଚିତ୍ର ବିଚିତ୍ର ଯେ ସୁବର୍ଣ୍ଣ ରସାଣ
ଗଜଦନ୍ତ ପଟାରେ ଅଗୁରୁ ପଡ଼ିଣ ।
ଘଣ୍ଟ ଘାଗୁଡ଼ି ତହିଁ ରୁଣୁ ଝୁଣ ବାଜେ
କିଜାଣି ପଟାନ୍ତର ସୁବର୍ଣ୍ଣ ରଥ ସାଜେ ।
ଆଗରେ ତାହାର ମଗର ମୁହାଁ କାମ
ଜଉଶାଳ କରିଣ ମଗର ଉପାମ ।
ତହିଁରେ ହିଙ୍ଗୁଳ ଶହେ ବଉଳ କଢ଼ୀ ମଲ୍ଲୀ
ଫୁଲ ମଣ୍ଡିଅଛି ତହିଁରେ ଧାଡ଼ିଧାଡ଼ି ।
ପଛମଙ୍ଗକୁ ଦିଶେ ଆଗମଙ୍ଗ ତୋରା
ଭଲ ସେ ମହାରଣା ଏହା ନିର୍ଭା କଲା ।
କାଙ୍ଗୁ ଯେ କାଙ୍ଗୁଡ଼ା ଯୋଡ଼ାମାନ ଅଛି
ଯୁଦ୍ଧର କାଳରେ ଯୋଦ୍ଧା ବିନ୍ଧୁଛନ୍ତି ଆଞ୍ଚି ।
ଉପରେ ଚିରାଳ ଉଡ଼େ ଫରଫର
ତହିଁରେ ଥାଇ ସଳଖେ ମଙ୍ଗ ମଙ୍ଗୁଆଳ ।
ଶତେକ ଆହୁଲା ପଡ଼େ ଚଉପାଶେ
ନାବ ଚଳିଯାନ୍ତେ ଶବ୍ଦ ଶୁଭଇ ଆକାଶେ ।
ଢାଳୁଆ ଡଙ୍ଗା ଯେ ବୋହିଣ ଆସଇ
ଯିଏ ଯେଣେ ପାରଇ ତେଣେ ପାରିହୋଇ ।
ଗୁହ୍ୟ ନାମେ ଶବର ବେଗେ ଚଳିଗଲା
ସେ ଯାଇ ଭରତର ପାଶରେ ମିଳିଲା ।
ପବନହୁଁ ବେଗେ ଚଳେ ସେ ଗତିକରି
ସାତଘଡ଼ି ସମୟରେ ସ୍ଥାନ ହେଲେ ପାରି ।
ଭରତ ଶତ୍ରୁଘନ ରଥରେ ବିଜେକରି
ସାରଥି ରଥ ବାହେ ଧୀର ଧୀର କରି ।
ଅଗମ୍ୟ ବନରେ ଥାଟ ଚଳିଯାଇ
ବେଳ ଘଡ଼ିଏ ଥାଇ ପ୍ରୟାଗରେ ହୋଇ ।
ଜାଣି ଭରଦ୍ୱାଜ ମୁନି ପାଛୋଟି ଅଇଲେ
ଭରତ ଶତ୍ରୁଘନ ରଥରୁ ଓହ୍ଲାଇଲେ ।
ମୁନିଙ୍କ ଚରଣତଳେ ପ୍ରଣମିତ ହେଲେ
ସମସ୍ତ ସୈନ୍ୟଗଣ ମୁନିଙ୍କି ଓଳଗିଲେ ।

ହରଷେ କଲ୍ୟାଣ କଲେ ତପଶୀଳ
ରାଜ୍ୟର ସମସ୍ୟା ବୁଝିଲେ ସକଳ ।
ବଶିଷ୍ଠ ବାମଦେବ ଜାବାଳୀ କଶ୍ୟପ
ଦେଖିଣ ଏମାନେ ହେଲେ ଯାଗନିକ ।
ଭ୍ରତକୁ ଚାହିଁଣ ବୋଲନ୍ତି ତପଶୀଳ
ରାଜ୍ୟଭ୍ରଷ୍ଟ କଥା ପୁଚ୍ଛନ୍ତି ସକଳ ।
ତୁ କିମ୍ପା ଏ କଥାକୁ ଅଇଲୁ ବୀରମଣି
ତୋର ଆସିବାର ବିହିତ ନୁହେଁ ପୁଣି ।
ପିତା ତୋତେ ରାଜ୍ୟ ସମର୍ପିଲେ ଜାଣ
ରାମଚନ୍ଦ୍ର ବନବାସ କଲେ ଯାଇ ପୁଣ ।
ଅଯୋଧ୍ୟା ଛାଡ଼ିଣ ତୁ ଅଇଲୁ କିସପାଇଁ
କରଯୋଡ଼ି ଭ୍ରତବୀର ବଚନ କହଇ ।
ଶୁଣହେ ମହାମୁନି ଯହିଁକି ଅଇଲି ।
ଏମାନ ନଜାଣଇ ମୁଁ ଅଜାଘରେ ଥିଲି ।
ଶ୍ରୀରାମ ଆସିବାର ନବମଦିନେ ଜାଣ
ନାରଦ କହିଲେ ଦଶରଥଙ୍କୁ ଯାଇଣ ।
ଶ୍ରୀରାମ ଗଲାଠାରୁ ବାର ଯେ ଦିବସ
ମନାସିଲୁ ଆଗେ ହେବାକୁ ବିନାଶ ।
ଆଉ ଏବେ ତିନିଦିନ ଅଛି ତୋର ମୃତ୍ୟୁ
ଏକଥାକୁ ରାଜନ ନକର କିମ୍ପା ହେତୁ ।
ଏତେ କହି ନାରଦ ସ୍ୱର୍ଗପୁର ଗଲେ
ଦଶରଥ ରାଜା ତାହା କାହାକୁ ନ କହିଲେ ।
ଋଷି ବ୍ରାହ୍ମଣଙ୍କୁ ଡକାଇ ଦାନ ଦେଲେ
ଦେବା ଦେବୀ ଦରିଦ୍ରଙ୍କୁ ସନ୍ତୋଷ କରିଲେ ।
ଶ୍ରୀରାମଙ୍କୁ ଚିନ୍ତା କରି ଛାଡ଼ିଲେ ସେ ପ୍ରାଣ
ଚାରିପୁତ୍ର ଆମ୍ଭେ କେହି ନାହୁଁ ପୁଣ
ଦୂତ ଆଣି ଯିବାରୁ ମୁଁ ଅଇଲି ବେଗେ
ଏସବୁ ବିଧାନ କହିଲେ ମୋର ଆଗେ ।
ମୋହର ଜନନୀ ଅଟନ୍ତି କୈକେୟୀ
ଶ୍ରୀରାମଙ୍କୁ ମାୟା ବିଚାରେ ତାର କାୟା ।
ମାତା ହୋଇ ଚଣ୍ଡାଳୁଣୀ ଏ ବୁଦ୍ଧି ପୁଣ କଲା
ଶ୍ରୀରାମ ପରା ପୁଅ ବନକୁ ପେଷିଲା ।
ମୁହିଁ କିମ୍ପା ରାଜା ହେବି ରାମଚନ୍ଦ୍ର ଥାନ୍ତେ
ଯାଇଅଛି ବାହୁଡ଼ାଇ ଆଣିବା ନିମନ୍ତେ ।
ପାଦତଳେ ପଡ଼ି ଆମ୍ଭେ ଆଣିବୁ ବାହୁଡ଼ାଇ
ବାରତା ନ ପାଉଛି ରହିଛନ୍ତି କାହିଁ ।

ମୁନି ବୋଇଲେ ଶ୍ରୀରାମ ଏଠାକୁ ଆସିଥିଲେ
ଫଳ ମୂଳ ଭୁଞ୍ଜଣ ନିଶିରେ ରହିଲେ ।
କହିଲି ରଘୁନାଥ ଏଠାରୁ ଲେଉଟ
ଆମ୍ଭେ ସଙ୍ଗେ ଯାଇଣ କରିବା ସବୁ ଶ୍ରେଷ୍ଠ
ବୋଇଲେ ମୋର ସତ୍ୟଭଗ୍ନ ନୋହୁ
କାଳଯୁଗକୁ କଥା ତିନିପୁରେ ରହୁ ।
ଏହା ଶୁଣି ଆମ୍ଭେ ଯୋଗଧ୍ୟାନ କଲୁ
ଦେବଙ୍କ ସକାଶେ ବନ ଅଇଲେ ଜାଣିଲୁ ।
ଦୁଷ୍ଟଜନ ମାରିଣ ରଖିବେ ସନ୍ଥ ପୁଣି
ସ୍ୱର୍ଗରେ ଦେବସଭା ନୋହିଲାକ ଜାଣି ।
ଏଥିର ନିମନ୍ତେ ଦେବ ଚକ୍ରଧର
ଚତୁର୍ଦ୍ଧା ରୂପେ ଜାତ ଶତ୍ରୁଘ୍ନ ବୀର ।
ତୁହିହେ ଭ୍ରତବୀର ନକର ମନେ ଦୁଃଖ
ତୁମ୍ଭେ ଚାରିଭାଇ ଅଟ ପୁଣ ଏକ ।
ଚଉଦ ବରଷ ରାମ ବନରୁ ନ ଯିବ
ଯେତେବେଳେ ବିଶ୍ରବାର ସୁତ ନାଶ ହେବ ।
ତେତେବେଳେ ଦେଖିବୁ ଅଯୋଧ୍ୟାପୁରେ ତୁହି
ଚଉଦ ଭୁବନ ନବଖଣ୍ଡ ମହୀ ।
ତିନିପୁର ଲୋକେ ହୋଇବେ ନିଶ୍ଚେ ଠୁଳ
ଦେବତା ଅସୁର ବାନର ନାଗବଳ ।
ଅଯୋଧ୍ୟା ମଣ୍ଡଳରେ ସର୍ବେ ହେବେ ଠୁଳ
ଚାରିଭାଇ ରାଜାହେବ ଚାରିଦିଗରେ ସାର ।
ଆସିଲେଣି ଯେବେ ରାମକୁ ଦର୍ଶନ କର ଯାଇ
କ୍ରୋଧ ଛାଡ଼ି ତୋତେ ଦୟା କରନ୍ତୁ ରଘୁସାଇଁ
ଏତେ କହି ମୁନି ଭ୍ରତଙ୍କୁ ବୋଧକଲେ
ଆମ୍ଭଙ୍କୁ ବୋଧ କରି ରାମ ଚଳିଗଲେ ।
ଆମ୍ଭେ ଯାଇ ତାଙ୍କୁ ଦେଖାଇ ଦେଲୁ ବାଟ
ଆଜ ସରିକି ରାମଛନ୍ତି ଚିତ୍ରକୂଟ ।
ଏବେ ବୀର ଭ୍ରତ ମୋର କଥା ଶୁଣ
ତୋହର ଥାଟ ଆଜି କରନ୍ତୁ ଭୋଜନ ।
ଯେହୁ ଯାହା ଭୁଞ୍ଜିବ ମିଳିବ ଏହିକ୍ଷଣି
ଭ୍ରତ ବୋଇଲେ ମୁନିଙ୍କର ବାଣୀ ଶୁଣି ।
ଅକଳିତ ବଳ ମୋର ଥାଟ ଅକଳିତ
ସାତଶ ପଚାଶ କୋଶ ଅଛନ୍ତି ସମ୍ଭୁତ ।
ବାର ଲକ୍ଷ ଅଟନ୍ତି ପଦାତି ସରଦାର
ସତୁରି କୋଟି ପଦାତି ଦଶରଥଙ୍କର ।
ଦଶଲକ୍ଷ ହସ୍ତୀ ଅଶୀ ଲକ୍ଷ ରଥୀ ଜାଣ
ତିନିଲକ୍ଷ ଅଶ୍ୱ ଯେ ଅଟନ୍ତି ପ୍ରମାଣ ।
ଦଶବିଶ୍ୱା ରହିଲେ ରାଜ୍ୟଜନ ଜାଣ
ଛ ବିଶ୍ୱା ଆସିଣ ଅଛନ୍ତି ମୋ ସଙ୍ଗେଣ ।
ପାଞ୍ଚଲକ୍ଷ ସର୍ଦ୍ଧାର ଜଗିଛନ୍ତି ପୁର
ଶରିତାନାମେ ସର୍ଦ୍ଧାର ତାଭାରିଜା ବଳୀୟାର
ଅଯୋଧ୍ୟାରେନାୟକମୋ ନୀଳାବତୀନାମତାତ
ଫେରିବା ଯାଏଁ ରକ୍ଷା କରିବେ ସେ ରାଷ୍ଟ୍ର ।
ଶତ୍ରୁଘନକୁ ସେ ଅଛି ପୁତ୍ରକରି
ମଗଧ ଦେଶ ରାଜାର ଅଟେ ସେ କୁମାରୀ ।
ଶୁଣିକରି ମୁନି ସନ୍ତୋଷ ହୋଇଲେ
ଜନନୀମାନଙ୍କୁ ଏକଠାବକୁ ଅଣାଇଲେ ।
ପାଞ୍ଚଦିନ ହେଲା ଆହାର ସୁଦ୍ଧ ନାହିଁ
ଦେବି ପକ୍ୱଦ୍ରବ୍ୟ ମୁଁ ଭୁଞ୍ଜନ୍ତି ସର୍ବେ ରହି ।
ଭ୍ରତ ବୋଲେ ତୋତେ କିମ୍ପା ଘଞ୍ଚାଳିବି ମୁହିଁ
ମୁନି ବୋଇଲେ ତହିଁକି କିଛି ଚିନ୍ତା ନାହିଁ ।
କ୍ଷଣେକ ମାତ୍ର ବସି ଦେଖ ଭଦ୍ରବୀର
ତରଚା ହେବେ ସର୍ବେ ସୁରଭି ପ୍ରସାଦର ।
ଏତେ କହି ଋଷି ମଢ଼ିଆରେ ପଶି
ଦୋହରା ଘର ଭିତରକୁ ସେ ଯାଇ ବସି ।
ମନ୍ତ୍ରଉଚ୍ଚାରଣ କଲେ ଘେନି ଜଳ
ତକ୍ଷଣେ ମୁନି ନିର୍ମ୍ମାକଲେ ସେ ସକଳ ।
ରାଜାଙ୍କୁ ନବର ପାତ୍ରଙ୍କୁ ଉଆସ
ଆଉ ସର୍ବଲୋକଙ୍କୁ ଅନୁରୂପେ ବାସ ।
ରାଜାଙ୍କ ନବର ମଣ୍ଡିଲେ ଯତ୍ନ କରି
ଚିତ୍ର ପନ୍ତି ପନ୍ତି ସକଳ ପୁର କରି ।
ସୁବର୍ଣ୍ଣର କଳସ ନେତର ଚିରାଳ
ଉଭା ରି ତୋରଣା ମୁକୁତା ମାଳମାଳ ।
କାନ୍ଥମାନଙ୍କରେ ଚିତ୍ର ଲିଖନ ପନ୍ତି ପନ୍ତି
କେବଣ ପୁର ଯେ ଅରୁଣ ପ୍ରାୟେ ଜ୍ୟୋତି ।
କାଚର ପୁରଗୋଟି ସ୍ୱସ୍ତିକ ନିର୍ମାଣ
କେବଣଇଁ ଘର ଯେ ମର୍କତ ରସାଣ ।
ଦେଖିକରି ସନ୍ତୋଷ ହେଲେ ବୀରଭ୍ରତ
ଧନ୍ୟ ଧନ୍ୟ ମହିମା ତୁମ୍ଭର ତପୋବନ୍ତ ।
ଏତେବୋଲି ଜଗତୀରେ ଉଠିଲେ ସେ ଯାଇ
ଦେଖିଲେ ନବର ମଣ୍ଡଣି ହୋଇଛଇଁ ।

ଉକୁଚିଛନ୍ତି ତହିଁ ଗଜଦନ୍ତ ଦୋଳି
ଚଉକତିରେ ଦେଖିଲେ ଶୋହେ ପାଟ ଫୁଲି ।
ଉପରେ ତାହାର ଶେଯାଇଛନ୍ତି ଶେଜ
ଦେଖିଣ ଭରତ ହେଲେକ ଆଶ୍ଚର୍ଯ୍ୟ ।
ଚାନ୍ଦୁଆ କିରଣ ଶୋହେ ସୁଚନ୍ଦ୍ର କିରଣ
ଚଉପାଶେ ମଣ୍ଡଣି ଶ୍ୱେତ ଚାମର ପୁଣ ।
ଭରତ ବୋଇଲେ ଏ ଦେବଙ୍କ ଆସନ
ଶ୍ରୀରାମଚନ୍ଦ୍ର ଏଥିକି ବସିତ ଭାଜନ ।
ନମସ୍କାର କରିଣ ତହୁଁ ବାହୁଡ଼ିଲେ
ଆନ ପଲ୍ୟଙ୍କରେ ଯାଇଣ ବସିଲେ ।
ଏଥୁଅନନ୍ତରେ ଶତ୍ରୁଘନଙ୍କ ପୁର
ତହିଁରେ ଯାଇ ବିଜେ କଲେ ବୀରବର ।
ମାୟାଲୋକଙ୍କୁ ଯେ ବଶିଷ୍ଠ ଋଷି ରାଇ
ବାମଦେବ କଶ୍ୟପ ଜାବାଳୀ ହକରାଇ ।
ସୁମନ୍ତ ସହିତେ ମନ୍ତ୍ରୀଗଣ ଗଲେ
ଯେ ଯାହା ଅନୁରୂପେ ଠାବ ତାଙ୍କୁ ଦେଲେ ।
ତଇଳ ନଦୀ ଯେ ବହିଲାକ ତହିଁ
ଘୃତ ନଦୀରେ ଯେ ଥଳକୂଳ ନାହିଁ ।
ଧୂପ ଦୀପ ଚତୁଃସମ ସୁଗନ୍ଧ ଚନ୍ଦନ
ସୁଗନ୍ଧ ଚତୁଃସମ କୁଢ଼ କୁଢ଼ ଜାଣ ।
ଏ ସବୁ ଭିଆଣ ଭରତ ଦେଖିଣ
ଅତି ଆନନ୍ଦିତ ହୋଇଲା ତାଙ୍କ ମନ ।
ସୁପାରି କୁଢ଼ ତାମ୍ବୁଳ ଲେଖାନାହିଁ
ମାଦକ ଦ୍ରବ୍ୟ ଖୋଜିଲେ ସବୁ ପାଇ ।
ମାୟା ଲୋକମାନେ ତହିଁରେ ଅଛନ୍ତି
କେହୁ ନଡପ ଧରି ମର୍ଦ୍ଦନ କରନ୍ତି ।
ସ୍ନାହାନ ସାରିଣ କେ ଲୁଗା ପିନ୍ଧନ୍ତି
ସୁବାସରେ ଲୁଗାମାନ ଆଣିଣ ଯୋଗାନ୍ତି ।
ଚତୁଃସମ ଲେପିଣ ଗନ୍ଧା ଯୋଡ଼ଲାଇ
ରତନ ଝରିଲେ ନୀର ନେଇ ଦେଇ ।
ସମସ୍ତେ ବସିଲେ ବ୍ରାହ୍ମଣ ପରଶିଲେ
ଘୃତ ଲବଣ ଅଦା ଅମୃତ ସେ ଦେଲେ ।
ନିରାମିଷ ଆମିଷ ଅନେକ ତିଉଣ
ଭୁଞ୍ଜିକରି ସନ୍ତୋଷ ହେଲେ ସର୍ବଜନ ।
ହିଙ୍ଗୁଜୀରି ମେଥି ଯେ ନଟୀକାଲ ଛେନା
ଘୃତର ସଂଯୋଗରେ ବ୍ୟଞ୍ଜନ ରଚନା ।

ମାଏଁସ ତିଅଣ ନେଇଣ ଦିଅନ୍ତି
ପାଣିପଣା ପଡ଼ିଣ ଇଚ୍ଛାମତେ ଦ୍ୟନ୍ତି ।
ମାଲପୁଆ ଛେନା ଲଡୁ କକରା ବରାଗୁଳି
ନାନାବର୍ଣ୍ଣରେ ଡାଳିମ୍ବ ଖଜା ଯେ ସୂପୁଳି ।
ସରପୁଳି ଅଟାମଣ୍ଡା ନାଡ଼ି ପୁରି
ସରପାଡ଼ିଆଦି କେହୁ ଅନ୍ତକରି ।
ଗୁଡ଼ ସଙ୍ଗରେ ଦେଲେ ଦୁଧର ଗଇଁଠା
ଫେଣା ଆରିଶାଯେ ବିବିଧ ବର୍ଣ୍ଣେ ପିଠା ।
ପରାଶନ୍ତି ବ୍ରାହ୍ମଣେ ଭୁଞ୍ଜନ୍ତି ସୁଖପାଇ
ଗଙ୍ଗବାଣ ପଇଡ଼ ଦେଲେ ତୋଷ ବହି ।
ଖିରିସା ଖଣ୍ଡଶାକର ଆବର ଯେ ପୁଳି
ଫେଣା ଖଣ୍ଡ ଖଜା ଟାକୁଅ ଆଦିକରି ।
କାହାକୁ ଦିଅନ୍ତି ଭାତ ଯେ ତିଅଣ
ଛେନା କାକରା ଯେ ଗୋଟିକା ଅଧାମ ।
ଗୁଡ଼ ଛେନା ବହଳ ଦୁଧ ନେଇ ଦ୍ୟନ୍ତି
ନାରିକେଳ ପଣସ ସପୁରୀ ପରଶନ୍ତି ।
ତାଳସଜ ଖଜୁରୀ ଫଳ ଆମ୍ବ ଦେଲେ
ଖରୁଡ଼ ନଡ଼ିଆ ଟଭା ନାରଙ୍ଗ ସେ ଦେଲେ ।
ନାହିଁକଲେ ପେଲିଣ ପରଶନ୍ତି ସେହି
ପାପୁଡ଼ି ବଡ଼ି ଯେ ଦିଅନ୍ତି ଯୋଗାଇ ।
ଗଙ୍ଗବାଣ ପଇଡ଼ ପାଣି ଆଣିଦ୍ୟନ୍ତି
ପାଚିଲା ଆମ୍ବ କଦଳୀ ଯତ୍ନେ ପରଶନ୍ତି ।
କେନ୍ଦୁ କଇଁଥ ଭଇଁଚ ପଦ୍ମମୁଳି
ଆଖୁର ସଙ୍ଗରେ ସୁଆଦ ପିଜୁଳି ।
ଯେ ଯାହାର ସୁଖରେ ଭୁଞ୍ଜିଲେ ଯେ ତହିଁ
ଲୋଭୀ ଲୋକମାନେ ମନରେ ତୋଷ ହୋଇ ।
ଅପୂର୍ବ ପଦାର୍ଥ ଦେଲେ ମୁନିବର
ସଂକ୍ଷେପି କହିବାକୁ ସାମର୍ଥ କାହାର ।
ଆଚମନ ସାରିଣ ସମସ୍ତେ ସୁସ୍ଥହେଲେ
ଗୁଆପାନ ବିଡ଼ିଆ ସମସ୍ତେ ସାରିଲେ ।
କନ୍ଧଲୋକମାନଙ୍କୁ ଦେଲେ କଷାଫଳ
ସ୍ତିରୀମାନଙ୍କୁ ଦେଲେ ଯେ ଇଚ୍ଛା ଯାହାର ।
ଚନ୍ଦନ କର୍ପୂର ସଙ୍ଗରେ ସାମଳୀ
ବୋଲି ହେଲେ ଲୋକେ କୁଙ୍କୁମ ବିଚାରି ।
ପଞ୍ଚ ସାତଲୋକେ ଯାଆନ୍ତି ନଗ୍ରବୁଲି
ଦେଖନ୍ତି ଲୋକେ ଯେ ନଗ୍ରମାନ ଫେରି ।

ହସ୍ତୀଙ୍କର ଗରଜନ ଘୋଡ଼ାଙ୍କ ରିଶାଳୀ
ଲୋକଙ୍କର ଗହଳ ଶୁଭଇ ଚହଳି ।
ହାତୀରେ ମାହୁନ୍ତ ଗୋଡ଼ ଲମ୍ବାଇ ବସନ୍ତି
ଆନନ୍ଦ ହୋଇଣ ସମସ୍ତେ ବୁଲନ୍ତି ।
ସିପାହୀମାନେ ଘୋଡ଼ା ଉପରେ ବସି ଚାହିଁ
ଭାବନ୍ତି ଅଯୋଧ୍ୟାକୁ ନଯିବା ଫେରାଇ ।
ଶ୍ରୀରାମଠାକୁ ଆମ୍ଭେ ଗଲେ କରିବୁ ଯେ କିସ
ଏହିଠାରେ ଥିବା ଏଥି ଘରବାସ ।
କେ ବୋଲନ୍ତି ଆମ୍ଭେ ଋଷିର ଘରେ ଥିବୁ
ଭ୍ରତରାଜା ନୋହିଲେ କିମ୍ପା ଆମ୍ଭେ ଯିବୁ ।
ଏଥୁଅନନ୍ତରେ ଭଗବତୀ ଶୁଣ
ବଶିଷ୍ଠ ଆଦିକରି ସମସ୍ତ ମନ୍ତ୍ରୀଗଣ ।
ଭରତ ଶତ୍ରୁଘନ ସହିତେ ଯେ ଗଲେ
ଖଟଦୋଳି ବାଙ୍କିଆରେ ଯାଇଣ ବସିଲେ ।
ଏମନ୍ତ ସମୟରେ ଅଇଲେ ଅପସରୀ
ବିବିଧ ପରକାରେ ବାଦ୍ୟରବ କରି ।
ଏସନେକ ସମୟେ ଲାଗିଲାକ ଦୀପ
ଦିହୁଡ଼ି ଅନ୍ତରେ ଜଳେ ଚନ୍ଦ୍ର ଦୀପ ।
ସମସ୍ତଙ୍କ ଛାମୁରେ କଲେ ନୃତ୍ୟଗୀତ
ଚାମର ଢାଳନ୍ତି ଭରତ ସମୀପ ।
କେହୁ ବିଞ୍ଚଣୀ କେହୁ ଦର୍ପଣ ଦେଖାନ୍ତି
କେବଣ ନାରୀ ଚିତ୍ରପଟ୍ଟ ଘେନୁଛନ୍ତି ।
କେବଣ ନାରୀ ଯେ ପୁଷ୍ପ ଘେନି ପୁଣ
କେ ଚନ୍ଦନ ଲିପେ କେ ଆଲଟ ଚାଳିଣ ।
କେ ଶେଜ ସଜାଇ ଦିଅନ୍ତି ଅବିଚ୍ଛନ୍ନ
କାହାକୁ ସରୁ ଶୋହେ କାହାକୁ ମୋଟ ଜାଣ
ସବୁରି ଗଳାରେ ମଣି ମୁକୁତାର ହାର
ହୃଦକୁ ଶୀତଳ ଦେହକୁ ଦିଶେ ତୋରା ।
ରଜନୀ ଅର୍ଦ୍ଧ ହୁଅନ୍ତେ ଘୋଟିଲା ଯେ ନିଦ
ଥାଟର ଲୋକେ ଯେ ହେଲେ ନିଶବଦ ।
ରାତ୍ର ପାହିଲେ ଦେଖିଲେ ସେଠାରେ କିଛିନାଶ
ସମସ୍ତେ ଭୂମିର ପରେ ଛନ୍ତି ଶୋଇ ।
ଘରଦ୍ୱାର ଯାକ ସବୁ କେଣେ ଗଲା
ଫୁଲଚନ୍ଦନ ଯେ ଗଳାରେ ନାହିଁ ମାଳା ।
ଯେଉଁ ଲୋକମାନେ ଚରଚା କରୁଥିଲେ
ଜଣେହେଁ ନାହାନ୍ତି ସଭିଏ କେଣେ ଗଲେ ।

ଦୁଧ ଦହି ଘୃତେ ଯେତେକ ବଳିଥିଲା
ସୁନା ରୂପାମାନ କେହୁ ହରି ନେଲା ।
ନାଚିବାର ଲୋକ ତ ଜଣେ ନ ଦିଶନ୍ତି
ଫୁଲ ଚନ୍ଦନର ବାସନା ବସାନ୍ତି ।
କାଲିର ବିଧାନ ଏଥିକେ ନାହିଁ କିଛି
କେ ବୋଲେ କିମ୍ଭୁତ ଏ ଜଣା ନଗଲା କିଛି ।
କେ ବୋଲଇ ସ୍ୱପନ କେ ବୋଲଇ ସତ
କେ ବୋଲଇ ଉପାୟେ କଲେ ତପୋବନ୍ତ ।
ସୁବାସ ବାସନାମାନ ଦେହରେ ବାସୁଛି
ଭ୍ରତର ସନ୍ନିଧିରେ ମିଳିଲେକ ଋଷି ।
ଭ୍ରତ ଶତ୍ରୁଘନ ହେଲେ ନମସ୍କାର
ଧନ୍ୟ ଧନ୍ୟ ମହିଷା ତୁମ୍ଭର ମୁନିବର ।
ଏତେ ସୈନ୍ୟଙ୍କୁ ତୁମ୍ଭେ ଯୋଗାଡ଼ ଯେ ଦେଲ
ନିମିଷକ ଭିତରେ ସକଳ ଭିଆଇଲ ।
ଆଜ୍ଞାଦିଅ ମୋତେ ମୁଁ ଶ୍ରୀରାମଙ୍କୁ ଦେଖିବଇଁ
ଏଡ଼େ ଭାରାରୁ ମୁଁ ଉଶ୍ୱାସ ପାଇବଇଁ ।
ଏ ମୋହର ଜନନୀ ଅଟନ୍ତି କଇକୟା
କୁଳପାଂଶୁ ପ୍ରତିମା ଦେହଯାକ ମାୟା ।
ଏହାଙ୍କ ସକାଶରୁ ରାମ ବନବାସ
ଦଶରଥ ରାଜା ମଲେ ଏ ନାରୀର ଦୋଷ ।
ଶୁଣିଣ ମୁନିବର କହିଲେ ଭ୍ରତ ଶୁଣ
କୈକୟା ଜନନୀ ତୋର କୁଳ ଉଦ୍ଧାରଣ ।
ତାହାର ଆୟତରେ ନୁହଇ ଏହା କରି
ବାସୁଦେବ ଜନ୍ମିଛନ୍ତି ସ୍ୱଦେହକୁ ଧରି ।
ଦେବତାମାନେ ତୋର ମାତାଦେହେ ବସି
ସତ୍ୟ କରାଇଲେ ଦଶରଥଙ୍କୁ ଆସି ।
ଦେବଙ୍କର ଦୂତ ମନ୍ଥରା ଅଟେ ପୁଣି
ଆଗରୁ ରହିଛି ସେ ଦେବଙ୍କ ହିତ ମଣି ।
କିଛି ନ ବୋଲିବୁ ଭ୍ରତ ତୋର ଜନନୀକି
ଦେବଙ୍କର ସକାଶେ ଏହା ଘଟିଛିଟି ।
ଶ୍ରୀରାମଙ୍କୁ ଦେଖି ତୁମ୍ଭେ ଆସିବ ବାହୁଡ଼ି
କେତେବେଳେ ଶ୍ରୀରାମ ନ ଆସେ ଆଉ ଫେରି
ଦେବତାମାନେ ଆସି କହିବେ ତୋ କାନେ
ତେବେ ତୋର ମନ ସନ୍ତୋଷ ହେବ ଏଣେ ।
ଚଉଦ ବରଷ ଯେ ଅଛଇଁ ତୋତେ ଯୋଗ
ରାଜା ହୋଇ ଅଯୋଧ୍ୟାରେ ପାଇବନା ଭୋଗ ।

ଦଶ ସହସ୍ର ବରଷ ରାମଙ୍କୁ ସେବିବୁ
ଭ୍ରତଖଣ୍ଡ ମଣ୍ଡଳରେ ତୁ ରାଜା ହୋଇବୁ ।
ତୋହର ସାନ ଅଟେ ଶତ୍ରୁଘନ ବୀର
ସେହି ରାଜା ହେବ ମଧୁନା ନଗର ।
ଶ୍ରୀରାମ ଅଯୋଧ୍ୟାରେ ଲକ୍ଷ୍ମଣ ବଇଧୃତି ପୁରେ
ଜାନକୀ ମନାସି ଅଛି ଶ୍ୟାମ ବଟ ତଳେ ।
ରାମ ଆଜ୍ଞାଦେଲେ ସୀତା ବଟମୂଳକୁ ଯାଅ
ବାଞ୍ଛା ବଟ ମୂଳରେ ବାଞ୍ଛା ସିଦ୍ଧି କରାଅ ।
ତେଣୁକରି ଜାନକୀ ମନାସି ଅଛି ଏହା ।
ଶୁଣ ହେ ଭରତ କହୁଛି ମୁଁ ଯାହା ।
ମୁନି ବୋଲନ୍ତି ଭ୍ରାତ ନଜାଣ ତୁମ୍ଭେ କିଛି
ବିଧାତା ଯାହା ସିନା ଭିଆଣ କରିଛି ।
ଏହାକୁ ବୋଇଲେ ହେବ ଏବେ କିସ
ଏହି ନ୍ୟାୟରୁ ଯେ କର୍ମର ଭବିଷ୍ୟ ।
ତୁମ୍ଭେ ତ ପୁଣ୍ୟଜନ ଅଟ ସତ୍ୟବାଦୀ
ସାବତ ହିଂସା କଲା ନଜାଣି କିଛି ବୁଦ୍ଧି ।
ସ୍ୱର୍ଗର କଥା ତୋତେ ଗୋଚର ନୁହେଁ ଧୀର
ଧନ୍ୟ ଧନ୍ୟ ତୋ ମହିମା ଅଟଇ ମହାବୀର ।
ଶ୍ରୀରାମଚନ୍ଦ୍ର ଚିତ୍ରକୂଟରେ ଛନ୍ତି ରହି
କେତେହେଁକ ଦୂରେ ତୁ ଦେଖିବୁ ବୀର ଯାଇ
ଏତେ ବୋଲିଣ ମୁନି କଲ୍ୟାଣ ବାଞ୍ଛାକଲେ
ଏହିବାଟେ ଯାଅ ବୋଲିଣ ବୋଇଲେ ।
ଭ୍ରାତ ଶତ୍ରୁଘନ ରଥ ଆରୋହିଲେ
ପଶ୍ଚିମ ମୁଖ ହୋଇଣ ତହୁଁ ଚଳିଗଲେ ।
ହସ୍ତୀପରେ ବସିଣ ନଦୀକି ପାରିହେଲେ
ଭରତ ଶତ୍ରୁଘନ ଆବର ମନ୍ତ୍ରୀ ତୁଲେ ।
ଭେଳା ବାନ୍ଧି ଲୋକେ ପାରି ହୋଇଗଲେ
ପହଁରି ଜାଣିବା ଲୋକେ ତହିଁ ପହଁରିଲେ ।
ଗୁହ୍ୟନାମେ ଶବର କଲା ଏକ ବୁଦ୍ଧି
ଦୁଇ କିଳା ତହିଁରେ ଦୁଇକୂଳେ ବାନ୍ଧି ।
ଦୁଇକୂଳ ଗଛରେ ଦଉଡ଼ି ଲଗାଇଲେ
ନିଗୁଢ଼େ ବାନ୍ଧିଣ ତହିଁ ଲୋକେ ପାରିହେଲେ ।
ସେ ଦଉଡ଼ି ଧରି ବହୁତ ଲୋକେ ପାରି
ଦେଖିକରି ସମସ୍ତେ ପ୍ରଶଂସା ତାକୁ କରି ।
ଶବରକୁ ପ୍ରଶଂସା କରନ୍ତି ଭ୍ରତବୀର
ଧନ୍ୟ ଧନ୍ୟ ବୁଦ୍ଧି ଅଟଇ ତୁମ୍ଭର ।

ଏଥୁ ଅନନ୍ତରେ ନିତ୍ୟକର୍ମ ସାରି
ଭ୍ରତ ଶତ୍ରୁଘନ ତହୁଁ ଗଲେ ବିଜେ କରି ।
ଗହନ ବନରେ ଗମନ କରି ଯାନ୍ତି
କହନ୍ତି ସଦାଶିବ ଶୁଣ ଗୋ ପାର୍ବତି
ଚିତ୍ରକୂଟ ପର୍ବତେ ରାମ ଛନ୍ତିରହି
ବିବିଧ ବିନୋଦ କରୁଛନ୍ତି ସେହି ।
ସେ ପର୍ବତର ତଳ ନନ୍ଦନ ବନ ଜାଣି
ପୁଷ୍ପର ନାମ ଧରି କେ ପାରିବ ଗଣି ।
ମଲ୍ଲୀ ମାଳତ ଯେ ମନ୍ଦାର ବକୁଳ
ଛୁରୀଅନା ଚମ୍ପା କେତକୀ ଉତ୍ପଳ ।
ନାଗେଶ୍ୱର ପାଟଳୀ ପୁନାଗ ଜାଇ ଜୁଇ
କଞ୍ଚଣ କନିଅର ମନ୍ଦା ମନ୍ଦା ହୋଇ ।
ସେବତୀ ପାଟଳୀ ପୁଣ ଆବର କୁଞ୍ଜଲତା
କୁନ୍ଦ ବିକୁନ୍ଦ ଯେ ଲବଙ୍ଗ ଫୁଲ ଜିତା ।
କୁରୁବେଲୀ ଧାତୁକୀ ଅଶୋକ ବିଶୋକ
ଦୟଣା ବୀରଭଦ୍ର ତୁଳସୀ ବଧୁକ ।
ବରେହ୍ନାଦାଢ଼ ଲୀଳା ବାହୁକର୍ଣ୍ଣ ନିଜ
ଶ୍ୱେତ ମନ୍ଦାର ଯେ ରଙ୍ଗଣୀ ମନସିଜ ।
ପୁଷ୍ପରେ ପର୍ବତଟି ଦିଶୁଅଛି ଶୋଭା
ଫଳଙ୍କର ମହିଁମା କି ଅବା କହିବା ।
ଟଭା ଲେମ୍ବୁ ପଣସ ଯେଉଠ କପିଥ
ଆମ୍ବ କରମଙ୍ଗା ତହିଁରେ ବହୁତ
ନାରଙ୍ଗ ଜମ୍ବିଲ ନଡ଼ିଆ କରୁଣା
ଏକର ଗଛ ଫଳକୁ ଆରକ ଗଛ ଜିଣା ।
ଅଁଳା ବରକୋଳି ମୁରୁଗା ଭଇଁଚ
ଆଙ୍କୁ କୋଳି କେଶର ବଡ଼ ବୃକ୍ଷ ଉଚ ।
କ୍ଷୀର କୋଳି ବାହାଡ଼ା ହରିଡ଼ା ଯେ ଫଳ
ସୁନାରୀ ବଡ଼ଆଙ୍କୁ ବରୁଣ ଆଖଣ୍ଡଳ ।
ତାଳ ଖଜୁରୀ ଯେ କଦଳୀ ବନେ ବନ
ଏହି ବନେ ରାମ ନେଉଥିବେ ଦିନ ।
ଷଡ଼ପ ମହୁଲ ଭାଲିଆ କସି ଗଛ
କଂସାରି ଜାମୁଁକୋଳି ତହିଁରେ ବେଲଗଛ ।
ଜାଇଫଳ ପିପ୍ପଳୀ ଗଣ୍ଡିଅନା ବଚ
ହଳଦୀ ସାବିତ୍ରୀ ଯୁଆଣୀ ଅଳାଇଚ ।
ମରିଚ ଲୁଣ କୋଳି ବଥୁଆ ଯେ ପାରା
ଜମରା ସାନଜୀରା ବଡ଼ଜୀରା କଳାଜୀରା

ଯବକାଙ୍ଗୁଲ ଯେ ମେଥିଟି ସଜ୍ଜବାସି
ବଢ଼ିଆଳ ନିଳକଂସ ଦେବଦାରୁ କଷି ।
ବୃଦ୍ଧତାଳଗଳ ପିପ୍ପଳୀ ମାଳ ମାଳ
ଆବର ଅଛନ୍ତି ବିବିଧ ବର୍ଣ୍ଣେ ଫଳ ।
ବୃକ୍ଷମାନେ ଲତାରେ ହୋଇଛନ୍ତି ଘୋଟି
ବୃକ୍ଷଙ୍କର ତଳରେ ଜୀବମାନେ ଲୋଟି ।
ରକତ ଚିତା ଗଛ ନୀଳ କଳା ଚିତା
ଓଲୁଣ ବଣସାରୁ କଡ଼ବା ଆଳୁ ପୋତା ।
ତହିଁ ମଦାଗ୍ନି ନଦୀ ବହେ ଝର ଝର
କୂଳରେ ଶିମିଳି ଗଛ ଅଛି ଯେ ଅପାର ।
ଉତ୍ପଳ ବେତଶାଳୁକ ଶୋହେ ପାନଲତା
ବିବିଧ ବର୍ଣ୍ଣରେ ଜାତ କେ କରୁ ଗଣିତା ।
ଜଳରେ ଜଳଚର ଭାଷନ୍ତି ଅନୁମତେ
ଏକଇ ଆରେକ ଛୁଅନ୍ତି ଉନ୍ମତେ ।
କୋମଳ ଦଳ ତହିଁରେ କୋମଳ ଫଳଛନ୍ତି
ନଦୀର ବେନି ତୀରରେ ଆମ୍ବଗଛ ପନ୍ତି ।
ହଂସ ଡାହୁକ ତେଣ୍ଡେଇ ଦଳ ଫାମ୍ପୁ ଥାନ୍ତି
ପୁଞ୍ଜି ପୁଞ୍ଜି ହୋଇ ଯୋଡ଼ି ଯୋଡ଼ି ଯେ ଚରନ୍ତି
ଶୁଆ ସାରୀ ଡାହୁକ କୋକିଳ ଚରନ୍ତି
ରାଜହଂସ ପାତିହଂସ ଅନେକ ବୁଲୁଛନ୍ତି ।
କୁକୁଟ ମୟୁର ଗୋବରା ରାଜବଣୀ
ଏ ପକ୍ଷୀ ଜନ୍ତୁଙ୍କର ରାବ ଶୋଭା ପୁଣି ।
ଅଏଁଳା ନେଳିବସନ୍ତ ଶାରଙ୍ଗ ଚଢ଼େଇ
ଭଦଳିଆ ଭରଆଡି ଝଙ୍କାର ପକ୍ଷୀଥାଇ ।
ନାନା ବର୍ଣ୍ଣରେ ପକ୍ଷୀ ତହିଁରେ ଅଛନ୍ତି
ବାହୁଡ଼ି ଚେମେଣିଆ ଦୋଳି ଖେଳୁଛନ୍ତି ।
ଘର ଚଟିଆ ବାଇଆ କରୁଛନ୍ତି ଗୋଳ
ଶ୍ୱେତପାରା ରାଜହଂସ ଚରନ୍ତି ମାଳ ମାଳ ।
ବଡ଼କାଙ୍କ ବଢ଼ିଆଳ ବକପକ୍ଷୀ ଛିଡ଼ା
ଶଙ୍ଖ ଚିଲ ନାଲିଆ ଚିଲ ଅଛନ୍ତି ଯୋଡ଼ା ଯୋଡ଼ା
ପାଣିକୁଆ ମାଛରଙ୍କା ଅଛନ୍ତି ଚିତ୍ରଗମ
ଏମାନଙ୍କ ଚରିତ ଅଟେ ଅନୁପମ ।
ଶରକରଣ୍ଡା ଚଢ଼େଇ ଦିଶନ୍ତି ପୁଣ ଉଚ୍ଚେ
କ୍ରୀଡ଼ାକରି ଜଳରେ ବିହରନ୍ତି ସଞ୍ଚେ ।
ଉବୁଇ ଟୁବାଇ ହୋଇ ଉଡ଼ନ୍ତି ବୁଡ଼ନ୍ତି
ପକ୍ଷୀଙ୍କର ଶବଦରେ ଜଳ ଚହଟନ୍ତି ।

ମୃଗ ଶୁକର ଯେ ଶଶାଙ୍କ ବନ ଗୋରୁ
ସାଳେହ ଜିଆଦ କେତେକ ଅନ୍ତ କରିପାରୁ
ଶାର୍ଦ୍ଦୂଳ ବ୍ୟାଘ୍ର ଯେ ସିଂହ ଯୋଡ଼ା ଯୋଡ଼ା
ବହୁତ ଜୀବ ଅଛନ୍ତି କେ କରିପାରେ ଲୋଡ଼ା
ନେପାଳ ମୂଷା ଯେ ନେଉଳ କସ୍ତୁରୀ
କୃଷ୍ଣବର୍ଣ୍ଣେ ବାହୁଟିଆ ଆସନ୍ତି କେତେ ଚରି ।
ଦେଖିକରି ପ୍ରଶଂସା କରନ୍ତି ରଘୁନାଥ
ଧନ୍ୟ ଧନ୍ୟ ବନ ଧନ୍ୟ ତୁ ହେଲୁ ଜାତ ।
ଲକ୍ଷ୍ମଣଙ୍କୁ ବସାରେ ବସାଇ ରଘୁପତି
ସୀତାଙ୍କୁ ସଙ୍ଗେ ଘେନି ବୁଲନ୍ତି ହୋଇ ସାଥୀ
ନିର୍ମଳ ସ୍ଥାନ ଦେଖି ବସନ୍ତି ବେନିଜନ
ସୀତାଙ୍କ କେଶରେ ଖଞ୍ଜନ୍ତି ଫୁଲମାନ ।
କେଉଁଠାରେ କୋମଳ ପାତ୍ର ପାରିଣ ଶୁଅନ୍ତି
ସୀତା ଜାନୁପରେ ରାମ ସୀମସ୍ଥାନ ଦ୍ୟନ୍ତି ।
କେଉଁଠାରେ ପାଷାଣରେ ଘୋରନ୍ତି ଚନ୍ଦନ
ସୀତାଙ୍କ ଅଙ୍ଗରେ କରାନ୍ତି ଲେପନ ।
କର୍ପୂର ଅଗୁରୁ ଘେନି କରନ୍ତି ଦୁହେଁ କେଳି
ମିଛରେ ବେନିଜନ ଲାଗନ୍ତି ଯେ କଳି ।
ଜାନକୀ କୁଚପରେ ଲେଖନ୍ତି ପତ୍ରାବଳୀ
ଦୁହେଁ ବେନି ଗଲେ ହୋଇ ହାତ ଧରାଧରି ।
ସେଠାବରୁ ପୁଣ ଉଠି ଥୋକେ ଦୂରଯାନ୍ତି
ହୁଡ଼ ମାରିକରି ରାମ ଲୁଚା ପୁଣି ଦ୍ୟନ୍ତି ।
ନାଗେଶ୍ୱର ଗଛ ମୂଳରେ ମିଳନ୍ତି
ବୃକ୍ଷକୁ ଅନାଇଁ ସେଠାରୁ ଚଳିଯାନ୍ତି ।
ଗୁଳୁଚି ଲତାତଳେ ଲୁଚିଲେ ରାମ ଯାଇ
ଡିମିରୀ ଗଛ ତଳକୁ ଚଳିଲେ ରଘୁସାଇଁ ।
ସୀତୟା ଦେଖିଣ ନାସାରେ ହସ୍ତ ଦେଇ
କହନ୍ତି ଡିମିରୀ ଗଛକୁ ଅନାଇଁ ।
ଦେଖିଲି ଦେଖିଲି ବୋଲନ୍ତି ବୈଦେହୀ
ଶୁଣିକରି ରଘୁନାଥ ଅଇଲେ ଓହ୍ଲାଇ ।
ଆଉ ଥରେ ଖୋଜ ଗୋ ମୁହିଁ ଥରେ ଲୁଚି
ବେଗୁନିଆ ବୁଦା ମୂଳରେ ସେ ଛପି ।
ସେଠାରୁ ରାମ ଲବଙ୍ଗ ଲତା ତଳେ ବସି
ଶିମୁଳି ଉହାଡ଼ରେ ଲୁଚିଲା ରଘୁବଂଶୀ ।
ସେ ସ୍ଥାନକୁ ଠାବକଲେ ଶୁଭ୍ରକେଶୀ
ଦେଖିଲି ଦେଖିଲି ବୋଲି ଦେବୀ ଭାଷୀ ।

ଦୁଇଜଣ ହସିଲେ କରତାଳି ମାରି
ସେଠାରୁ ଶ୍ରୀରାମଙ୍କୁ ସୀତୟା କୋଳକରି ।
ସେଠାରୁ ଦୁଇଜଣ ଥୋକେଦୂର ଗଲେ
ପୁଷ୍ପକୁ ତୋଳିଣ ଫିଙ୍ଗାଫିଙ୍ଗି ହେଲେ ।
ପାରୁଆ ଯୁଥେକ ଚରନ୍ତି ତହିଁ ଦେଖି
ଦେଖି ଧରିବେ ବୋଲିଣ ଧାଇଁଲେ ଶଶୀମୁଖୀ ।
ସୀତା ଯାନ୍ତେ ପାରୁଆ ଉଡ଼ି ପଳାଇଲେ
ଧରିତ ନ ପାରିଲେ ଶ୍ରୀରାମ ବୋଇଲେ ।
ଧରା ନ ଦେଲେ ସେ ବଢ଼ାଇ ଦୁଇଗୋଟି
ହସିଣ ଶ୍ରୀରାମଙ୍କୁ କହିଲେ ବିମ୍ବୋଷ୍ଠୀ ।
ଉଡ଼ି ନଗଲେ ସିନା ଧରନ୍ତି ମୁଁ ଯାଇ
ଏ ବଚନ ଶୁଣିଣ ହସିଲେ ରଘୁସାଇଁ ।
କେତକୀ ବନରେ ହୋଇଲେ ପରବେଶ
ଦେଖିଲେ ଫୁଟିଣ ଅଛଇଁ ଦିବ୍ୟ ପୁଷ୍ପ ।
ଶ୍ରୀରାମ ସୀତା ଶିରେ ଖୋସିଲେକ ନେଇ
ମୁଖକୁ ଚାହାନ୍ତି ରାମ ସ୍ନେହଭର ହୋଇ ।
କେଉଁଠାରେ ଚନ୍ଦନ ଘୋରିଣ ସୀତୟା
ଶ୍ରୀରାମ ଶ୍ରୀଅଙ୍ଗରେ ଲେପନ୍ତି ସେ ପ୍ରିୟା ।
କଳାଦେହ ଗୋଟି ଯେ ସୁନ୍ଦର ଦିଶିଲା
ରାମଙ୍କର ମୁଖରେ ଚୁମ୍ବିଲେ ରଷିଦୁଲା ।
ଶ୍ରୀରାମଙ୍କୁ ଚାହିଁଣ ବୋଲନ୍ତି ମହାସତୀ
ପାଣିର ଭିତରେ ତୁମ୍ଭେ ପଣ ରଘୁପତି ।
ଏ ନଦୀରେ ପଶି ମୁଁ କରିବି ସ୍ନାହାନ
ଶୁଣିକରି ନଦୀରେ ପଶିଲେ ରଘୁନାଥ ।
ସୀତା ସ୍ନାନ କରିଣ ହୋଇଲେ ବାହାର
ଶ୍ରୀରାମ ସ୍ନାନ କଲେ ପଛରେ ତାଙ୍କର ।
କୂଳରେ ନାଗେଶ୍ୱର ବୃକ୍ଷ ତହିଁ ଅଛି
ଶରଧାରେ ଡାଳ ଭାଙ୍ଗିଲେ ରଘୁବଂଶି
ଷଡ଼ଗୋଟି ପୁଷ୍ପ ଯେ ଅଛି ତହିଁ ଲାଗି
ଜାନକୀ ଶରଧାରେ ମାଗିଲେ ଯେ ବେଗି ।
ରାମ ବୋଲନ୍ତି ସଖୀ କିମ୍ପା ତୁମ୍ଭଙ୍କୁ ଦେବି
ଏହି ଫୁଲକୁ ମୁଁ ଘେନିଣ ଖେଳିବି ।
ତୁମ୍ଭର ଶରଧା ଥିଲେ ତୁମ୍ଭେ ଡାଳେ ଆଣ
ଶ୍ରୀରାମ ବଚନ ଶୁଣି ସୀତା ଗଲେ ପୁଣ ।
ନାଗେଶ୍ୱର ପୁଷ୍ପକୁ ବଢ଼ାଇ ଦେଲେ ହାତ
ଫୁଟିଲା ଡାଳଟି ଭାଙ୍ଗି ଆଣିଲେତ ।

ପାଞ୍ଚଗୋଟି ପୁଷ୍ପ ତହିଁରେ ଲାଗିଛି ।
ରାମଙ୍କ ଅଙ୍ଗେ ତାହା ପିଟିଲେ ରସବତୀ ।
ସୀତାଙ୍କୁ ଶ୍ରୀରାମ ମାଇଲେ ପୁଷ୍ପ ଡାଳି
ସରଧାରେ ଦୁହେଁ କରୁଛନ୍ତି କଳି ।
ଧରାଧରି ହୋଇ ତହୁଁ ଖଣ୍ଡେ ଦୂର ଗଲେ
ବଇଦେହୀ କପୋଳରେ ରାମ ଚିତା ଦେଲେ ।
ଚନ୍ଦ୍ର ଉପରେ କି ଅରୁଣ ଅଛି ଉଇଁ
ସୀତାଙ୍କ କପୋଳରେ ତେମନ୍ତ ଦିଶଇ ।
ଏହି ସମୟରେ ଯେ ବହିଲା ପବନ
ବୃକ୍ଷରୁ ପତ୍ରମାନ ପଡ଼ିଲେ ଅବିଚ୍ଛନ୍ନ ।
ଶ୍ରୀରାମ ସୀତାଙ୍କର ଉପରେ ପଡ଼ନ୍ତି
ଦେଖିକରି ବୈଦେହୀ କର ଯେ ଯୋଡ଼ନ୍ତି ।
ଭୋ ଶ୍ରୀରାମ ତୁମ୍ଭର ମୋହର କଳି ଦେଖି
ଆନନ୍ଦରେ ଏମାନେ ପଡ଼ିଛନ୍ତି ଖସି ।
ଏତେ କହିଣ ଯେ ସେଠାରୁ ଚଳିଗଲେ
ସୀତାଙ୍କୁ ଆଗକରି ଶ୍ରୀରାମ ଚଳିଲେ ।
ଗହନ ବନରେ କରନ୍ତି ଗମନ
ମର୍କଟ ପଲେକ ଦେଖିଲେ ଯାଆନ୍ତେଣ ।
ତାଙ୍କୁ ଦେଖିଣ ସୀତା ଭୟରେ ବାହୁଡ଼ିଲେ
ଶ୍ରୀରାମ ଠାକୁରଙ୍କୁ କୋଳ ସେହୁ କଲେ ।
ସୀତାଙ୍କର କପୋଳରେ ଗେରୁ ଚିତା ଥିଲା
ଶ୍ରୀରାମ ଶ୍ରୀଅଙ୍ଗରେ ଯାଇଣ ଲାଗିଲା ।
ପ୍ରଭାତର ସୂର୍ଯ୍ୟ ଯେହ୍ନେ ଉଦୟରେ ଦିଶି
ତାହା ଦେଖିଣ ଯେ ବେନିଜନେ ହସି ।
ଥୋକାଏକ ବେଳରେ ତହୁଁ ଚଳିଗଲେ ।
ଫୁଟିବାର କେତକୀ ବହୁତ ଦେଖିଲେ ।
ସରଧାରେ ସୀତା ଯେ ଆଣିଲେ ତାହା ତୋଳି
ଶ୍ରୀରାମଙ୍କୁ ବୋଲନ୍ତି ଜନକ ଦୁଲାଳୀ ।
ଏହି ଛୁରୀଅନା ତଳରେ ରାମ ବସ
କେତକୀ ତୁମ୍ଭରେ ବାନ୍ଧିବି ତୁମ୍ଭ କେଶ ।
ସେ ସ୍ଥାନରେ ରଘୁନାଥ ଯାଇଣ ବସନ୍ତି
ଜାନକୀ ଶ୍ରୀରାମଙ୍କ ଜଟାକୁ ଫେଡ଼ନ୍ତି ।
ଶ୍ରୀରାମର ଜଟାରେ କେତକୀ ଖୋସିଲେ
ମୁଖ ଚାହିଁଣ ବୋଲନ୍ତି ସୁନ୍ଦର ଦିଶିଲେ ।
ହସ୍ତ ଧରାଧରି ହୋଇ ତହୁଁ ଚଳିଗଲେ
ଇଚ୍ଛାରେ ବନସ୍ତ ଭିତରେ ବୁଲିଲେ ।

ବିବିଧ ବିନୋଦ କରନ୍ତି ବେନିଜନ
ତୃତୀୟ ପ୍ରହର ହୋଇଲାକ ଦିନ ।
ପର୍ଣ୍ଣକୁଟୀରେ ପ୍ରବେଶ ହୋଇଲେ ଯେ ଯାଇ
ଲକ୍ଷ୍ମଣ ମାଂସ ରାନ୍ଧିଅଛନ୍ତି ବାଟଚାହିଁ ।
ଦେଖିକରି ଶ୍ରୀରାମଙ୍କୁ କଲେ ନମସ୍କାର
ସୀତାଙ୍କୁ ପ୍ରଣମିଲେ ସୁମିତ୍ରା କୁମର ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରଘୁନାଥ
ଭିଆଇଅଛୁ ବାବୁ କେବଣ ପଦାର୍ଥ ।
ବୋଲନ୍ତି ସଉମିତ୍ରି ଆଣିଛି ମୃଗମାରି
ରନ୍ଧନ କରିଛି ଅତି ଯତ୍ନକରି ।
କମଣ୍ଡଳରେ ଜଳ ପୂରାଇ ଅଛି ରଖି
ତୁମ୍ଭେ ଆସିବାକୁ ମୁଁ ବାଟଚାହିଁ ଅଛି ।
ଶୁଣିକରି ଆନନ୍ଦ ହେଲେ ରଘୁବୀର
ପବିତ୍ର ଜଳରେ ଧୋଇଲେ ପୟର ।
ଜାନକୀ ଚରଣ ଧୋଇ ମଢ଼ିଆରେ ବସି
ଲକ୍ଷ୍ମଣ ମୁଖକୁ ଚାହିଁ ଅଳ୍ପଅଳ୍ପ ହସି ।
ମଣୋହିଁ ଠାବରେ ବସିଲେ ଭାଇ ବେନି
ଆପଣେ ପରସିଲେ ଜନକନନ୍ଦିନୀ ।
ଭୋଜନ ସାରିଣ ଆଚମନ କଲେ
ପିଆଶଳ ବୃକ୍ଷ ତଳରେ ବସିଲେ ।
ରାମଙ୍କର ପତ୍ରରେ ସୀତା ଭୁଞ୍ଜିବସି
ମାଏଁସ ନେଇଣ ଲକ୍ଷ୍ମଣ ପରସି ।
ଭୁଞ୍ଜିକରି ତୃପତି ହେଲେ ତିନିଜଣ
ଏଥୁ ଅନନ୍ତରେ ବିଚିତ୍ର କଥା ଶୁଣ ।
ଯେତେକ ମାଏଁସ ନିତ୍ୟ ବଳୁଥାଇ
ଆର ଦିନକୁ ତାକୁ ରଖନ୍ତି ଶୁଖାଇ ।
ଆପଣେ ସୀତୟା ଜଗିଲେକ ବସି
ମାଂସଦେଖି କାକ ଝାମ୍ପଦେଲା ଆସି ।
ଯହୁଁ ମହିଥିଲୀ ତାକୁ ଦେଲେ ଘଉଡ଼ାଇ
ମାଂସର ଲୋଭରେ ସେ ପୁଣି ଆସଇ ।
ଏହି ସମୟରେ କାକ ପୁଣି ଝାମ୍ପଦେଇ
ମାଂସର ଲୋଭ କାକ ଛାଡ଼ି ନ ପାରଇ ।
ଦେଖି ବଇଦେହୀ ଉଡ଼ାଇ ଦେଲେ କାକ
ମୁରୁଛି ନପାରି କାକ ଦେଲା ପାଖପାଖ ।
ସୀତୟା ନିଗୂଢ଼ରେ ମାଂସ ଛନ୍ତି ଜଗି
ତାହାକୁ ଘଉଡ଼ି ଦିଅନ୍ତି ବେଗି ବେଗି ।
ଲୋଭରେ କାକ ଯେ କେବେହେଁ ନ ଯାଇ
କାକର ମନଟି ମାଂସରେ ରହିଛି ।
ସାହସପଣ କରିପାଖକୁ ଅଇଲା
ଦେଖିଣ ଜାନକୀ ଘଉଡ଼ଇ ଦେଲା ।
ବୋଇଲେ ଦଇବର ମାଡ଼ପଡୁ ତୋତେ
ଏହିପରି କେତେ ଝଗଡ଼ା କରୁ ମୋତେ ।
ଅନେକ ଦୁଃଖରେ ସ୍ୱାମୀଦେବର ଯାନ୍ତି ବନ
ମୃଗ ବରେହା ମାର ଆଣନ୍ତି ସେ ଜାଣ ।
ଯେ ଖାଉଁ ଆମ୍ଭେ କେତେକ ରାନ୍ଧିଖାଇ
ବଳିଲାର ମାଂସକୁ ରଖୁ ଯେ ଶୁଖାଇ ।
ନପାଇଲା ଦିନ ସେ ମାଂସ ରାନ୍ଧିଖାଉ
ଏହିପରି ଭାବରେ ଦିନକୁ କଟାଉ ।
ଏ ମାଂସ ନେବାକୁ କରୁଛୁ ତୁ ମନ
ଅକାଳ କାଣ୍ଡ ପଡ଼ିବ ତୋହର ନୟନ ।
ଏତେ କହି ତାକୁ ଦେଲେ ସେ ଉଡ଼ାଇ
ଦୁଷ୍ଟକାକ ଶୁଣିଣ ମନରେ କୋପ ହୋଇ ।
ଜାନକୀ ଉପରକୁ ପଡ଼ିଲା ସେ ଧାଇଁ
ସୀତାଙ୍କ ଓଷ୍ଠକୁ କାମୁଡ଼ିଲା ଯାଇ ।
ଦୁଇ ଡେଣା ଫେରାଇ ପିଟିଲା ଆଣ୍ଡକରି
ଲଉଡ଼ଲାଗି ସ୍ତନ ହେଲା ଯେ ବିଦାରୀ ।
ସ୍ୱାମୀ ସ୍ୱାମୀ ବୋଲି ସୀତା ଡାକିଲେକ ପୁଣି
ଶ୍ରୀରାମ ଆସନ୍ତେ କାକ ପଳାଇଲା ଜାଣି ।
ମନ୍ଦାର ବୃକ୍ଷ ଉପରେ କାକ ବସେ ଯାଇ
ସୀତାଙ୍କୁ କୋଳକରି ଧରି ରଘୁସାଇଁ ।
ରୁଧିର ଝର ଝର ବହେ ସ୍ତନତଟ
ଦେଖିଲେ ଛିଡ଼ିଅଛି ଜାନକୀଙ୍କ ଓଷ୍ଠ ।
କୋପରେ ବଇରାଗ ହୋଇ ରଘୁବୀର
ଗୁଗୁଟିଆ ଗୋଟିଏ ବସାଇ ଗୁଣର ।
କୌଶିକ ସୁମରି ଧନୁର୍ବେଦ ପଢ଼ି
ବୋଇଲେ ଏ କୁଆର ଚକ୍ଷୁ ପକା ତାଡ଼ି ।
ମନ୍ଦାର ବୃକ୍ଷପରେ କାକ ବସିଥିଲା
ବାଣ ବିନ୍ଧିବାରୁ ତହୁଁ ଯେ ପଳାଇଲା ।
ଶ୍ରୀରାମଙ୍କ ନାରାଚ ପବନ୍ନୁ ବେଗେ ଯାଇ
ବୋଇଲା କେଉଁଠାକୁ ଯିବୁ ତୁ ପଳାଇ ।
ସେହିଠାରେ ତୋର ଖୋଳିବି ବେନି ଆଖି
ଶ୍ରୀରାମ ଜାନକୀ ଉଷତ ହେଲେ ଦେଖି ।

ତାହା ଶୁଣି କାକ ପଳାଇ ଡହୁଁ ଯାଏ
ସେହି କାକ ସଙ୍ଗରେ ଶର ଗୋଡ଼ାଇଥାଏ ।
ସୂର୍ଯ୍ୟଙ୍କ ମଣ୍ଡଳରେ କାକ ପାଏ ଯାଇ
ବୋଇଲା ଧର୍ମଦେବତା ରକ୍ଷାକର ତୁହି ।
ବାୟସ ବୋଇଲା ମୋର ଶ୍ରୀରାମ ଭଗାରୀ
ଛାୟାପତି ବୋଲେ ମୁଁ ନପାରେ ରକ୍ଷା କରି ।
ସେଠାରୁ ବାୟସ ଖରେ ଚଳିଗଲା
ସପତ ଋଷିଙ୍କର ପାଶେ ପ୍ରବେଶ ହୋଇଲା ।
ବୋଇଲା ପ୍ରାଣ ମୋର ରଖ ମୁନିବର
ଅଜ୍ଞାନେ ଦୋଷୀ ମୁଁ ହେଲି ରାମଙ୍କର ।
ଋଷି ବୋଇଲେ ଆମ୍ଭେ ନପାରୁ ତୋତେ ରଖି
ସେଠାରୁ କାକ ଯେ ପଳାଇଲା ଘୁଞ୍ଚି ।
ପ୍ରବେଶ ହେଲା ଯାଇ ଇନ୍ଦ୍ରଙ୍କ ଭୁବନ
ସେ ବୋଇଲେ ତୋତେ ରଖି ନ ପାରଇ ଜାଣ
ନଳଙ୍କ ଭାରିଜା ଦମୟନ୍ତୀ ନାରୀ
ତ୍ରୈଲୋକ୍ୟ ସୁନ୍ଦରୀ ସେ ଅତି ସୁକୁମାରୀ ।
ତାହାକୁ ହରିଲୁ ତୁ ବାଟରେ ଯାଉ ଯାଉ
ତୋତେ ଶାପ ଦେଲା କୁବେର କୁଳ ବୋହୂ ।
ସେ ଦୋଷରେ ସହସ୍ରେ ବରଷ ହେଲୁ କାକ
ଏବେ ଜାନକୀଠାରେ କରିଅଛୁ ପାପ ।
ବେଗେ ଏଠାରୁ ପଳା ନଦେଖା ତୋର ମୁଖ
ଏହି ସମୟରେ ମିଳିଲା ତୃଣ ଧାପ ।
ଦେଖିଣ ପଳାଇଲା ଚିତ୍ରସେନ ଗନ୍ଧର୍ବ
ପ୍ରବେଶ ହେଲା ଯାଇ ବୃହସ୍ପତିଙ୍କ ଆଗ ।
ଦେଖିଲା ବୃହସ୍ପତି କାକ ପଛେ କାଣ୍ଡ ତ
ଯୋଗରେ ଜାଣିଲେ ରାମଙ୍କ ଶତ୍ରୁତା ।
ବୋଇଲେ ବାୟସରେ ତୋ ଦୁଷ୍ଟ ପ୍ରକୃତି
ତିନିପୁର ଲୋକେ ତୋତେ ନପାରିବେ ରଖି ।
ତୁ ଯାଇ ରାମପାଶେ ଶରଣ ପଶଟି
ତେବେ ରକ୍ଷା ପାଇବୁ କାକରେ ତୁହିଟି ।
ତ୍ରୈଲୋକ୍ୟର ଠାକୁର ଅଟନ୍ତି ରଘୁନାଥ
ଅସୁର ମାରିବାକୁ ମର୍ତ୍ତ୍ୟରେ ହେଲେ ଜାତ ।
ଅଜୟ ରାବଣ ଦେବତାଙ୍କୁ ବନ୍ଦି କଲା
ସ୍ୱର୍ଗରେ ସଭା ଯେ କେବେହେଁ ନ ବସିଲା ।
ଆମ୍ଭେ ତପସ୍ୟା କଲୁଁ ସହସ୍ରେ ବରଷ
ତେବେ ସେ ବାସୁଦେବ ହୋଇଲେ ସନ୍ତୋଷ
ବୋଇଲେ ଅଯୋଧ୍ୟାରେ ମୁହିଁ ହେବି ଜାତ
ମୋ ପିତା ଦଶରଥ କୌଶଲ୍ୟା ହେବେ ମାତ ।
ଭରତ ଶତ୍ରୁଘନ ଲକ୍ଷ୍ମଣ ତିନିଭାଇ
ଚତୁର୍ଦ୍ଧା ମୂର୍ତ୍ତି ମୁଁ ହୋଇବି ତୁମ୍ଭ ପାଇଁ ।
ତାଙ୍କଠାରେ ଦୋଷୀହେଲୁ କେ କରିବ ଦ୍ରୋହି
ତ୍ରିଭୁବନ ମଧ୍ୟରେ ତାଙ୍କ ତୁଲେ କେ ନାହିଁ ।
ଜଗତ ଜନନୀ ଅଟନ୍ତି ତାଙ୍କ ନାରୀ
ହେଲୁରେ ଚିତ୍ରସେନ ସବୁରି ଭଗାରୀ ।
ଦ୍ରୋହ ପାପ ଅର୍ଜିଲୁ ଜାନକୀଠାରେ ଜାଣ
ଅଭିଶପ୍ତ ତୁହିରେ ହେଲୁ ଅକାରଣ ।
ପଳାଅ ଏଠାରୁ ଚନ୍ଦ୍ର ପାଖକୁ ପୁଣ
ରକ୍ଷା କରିପାରିବ ସେ ଅବା ଯେ ପୁଣ ।
ଶୁଣିଣ ଚିତ୍ରସେନ ପଳାଏ ବେଗେ ବେଗେ
ପଛରେ ରାମକାଣ୍ଡ ଗୋଡାଇ ଅଛି ରାଗେ ।
ଚନ୍ଦ୍ରଙ୍କର ପୁରେ କାକ ପ୍ରବେଶ ହେଲା ଯାଇ
ଦେଖିଲେ ଶଶାଙ୍କ ରୋହିଣୀ ପାଶେ ଥାଇ ।
ଚରଣ ତଳେ ବାୟସ ଶୋଇଲା ଯେ ଯାଇ
ରକ୍ଷାକର ମୋତେ ଅନ୍ୟ ସାହା ନାହିଁ ।
ନିଶାକର ବୋଇଲେ ଏଠାରୁ ବେଗେ ଯା ଯା
ବାସୁଦେବ ଉପରେ ନୋହୁ ଆମ୍ଭେ ରାଜା ।
ଦେବତାମାନଙ୍କଠାରୁ ହୋଇଲା ନିରାଶ
କେଉଁ ଦେବତା ଯେ ନୋହିଲେ ତାକୁ ତୋଷ
ସ୍ୱର୍ଗପୁର ଛାଡ଼ିଣ ପଳାଏ କାକପକ୍ଷୀ
ଜନ୍ତୁପତି ପାଶରେ ପ୍ରବେଶ ହୁଏ ଧାଡି ।
ଜନ୍ତୁପତି ବୋଇଲା ତୁ କାହାକୁ ଭୟ କରୁ
ବାୟସ ବୋଇଲା ମୁଁ ଶ୍ରୀରାମ ଶତ୍ରୁରୁ ।
ଯମ ବୋଇଲେ ମୋ ଦୁଃଖ କହିଲେ ନସରେ
ଧର୍ମବନ୍ତ ଲୋକକୁ ଆଣିଲେ ଦୂତ ମୋରେ ।
ସେ ଆସନ୍ତେ ପ୍ରାଣୀମାନେ ଗଲେ ସ୍ୱର୍ଗପୁର
ସେ ଧର୍ମବନ୍ତ ପାଦରେ ମୁଁ କଲି ନମସ୍କାର ।
କ୍ରୋଧରେ ଧର୍ମବନ୍ତ ମୋତେ ଯେ କହିଲା
ତୋହର ସଭା ରବିବାର ଦିନ ମନା ହେଲା ।
ସେହି ଦିନୁଁ ରବିବାରେ ନକରେ ମୁଁ ନ୍ୟାୟ
ତାର ଭକତଜନକୁ ମୋର ବଡ ଭୟ ।
ମୁଁ ତୋତେ କେମନ୍ତେ ରଖିବିରେ ପୁଣ
ପଳା ଏବେ ଏ ପୁରୁ ଅଧର୍ମରେ ଜାଣ ।

ସେଠାବରୁ ପଳାଇ ବରୁଣପୁରେ ହେଲା
ଦେଖି ବରୁଣ ଯେ ତହୁଁ ତଡିଦେଲା ।
ବରୁଣପୁରରୁ ଗଲା ସେ ବେଗରେ
ପୁଣି ମିଳିଲା ସେ ଗରୁଡ ଛାମୁରେ ।
ବିନତା ସୁତ ବୋଇଲା ଆରେ କାକ ଶୁଣ
ରଖିବା ଥାଉ ଦେଖିବା ନୁହେ ଭାରଜନ ।
ନିରାଶବାଣୀ ଶୁଣି ସେଠାରୁ ସେ ଗଲା
ବ୍ରହ୍ମାଙ୍କର ପୁରରେ ପ୍ରବେଶ ହୋଇଲା ।
ଦେଖିଲା ବିଧାତା ବସିଛନ୍ତି ପୂଜାକରି
ଚରଣେ ଶୋଇ ବୋଇଲା ରଖ କୁଶଧାରୀ ।
ବିଶ୍ୱାମିତ୍ର ବୋଇଲେ ତୁ ଜାନକୀରେ ଦୋଷୀ
ଏଠାରେ ରହିଲେ ବାଣ ପକାଇବ ଧ୍ୱଂସି ।
ବିଧାତାର ଯୋଗ ଯେ ଭାଙ୍ଗିବ ନାହିଁ ଜାଣ
ତୋତେ ନାଶ କରିବ ଏଠାରେ ରାମବାଣ ।
ଶୁଣିକରି ବାୟସ ସେଠାରୁ ଚଳିଗଲା
ଭୂଷଣ୍ଡକାକା ପାଶେ ପ୍ରବେଶ ହୋଇଲା ।
କହିଲା ସର୍ବକଥା କାକସଙ୍ଗେ ଉଡି
ଭୂଷଣ୍ଡ ବୋଇଲା ମୋର ବସିବା ନାହିଁ ବାଡ଼ି ।
ମୋହର ଦିନତ ନସରେ ଉଡିଉଡି
ବସିବାକୁ ଠାବ ନମିଳଇ ଏହୁ ପୁରୀ ।
ଏଠାବରେ କାର୍ଯ୍ୟ ନୋହିବ ତୋହର
ଜୀବନ ରଖିବୁ ଯେବେ ପଳାଅ ବେଗର ।
ଶୁଣିଣ କାକ ଯେ ପଳାଇଣ ଗଲା
ବଳିର ପୁରରେ ଧସାଇ ପଶିଲା ।
ବାମନ ନିରୋଧ କଲେ ତହିଁ ବାଟ
ସେଠାବରୁ ବାୟସ ପଳାଇଲା ଚଟ୍ ।
ବାସୁକୀର ପୁରେ ପ୍ରବେଶ ହେଲା ଯାଇ
ଦେଖିଣ ନାଗରାଜା କ୍ରୋଧରେ ବୋଲଇ ।
ନିର୍ଲଜ କାକ ତୁରେ ଏପୁରେ କିମ୍ପା ପଶୁ
ଶ୍ରୀରାମଠାରେ ଦୋଷୀ ଅନ୍ୟକେ ତୋତେ ରଖୁ
ଯେଉଁ ରାମ ବିଚାରିଲେ ତ୍ରୈଲୋକ୍ୟ ପାରେ ଦହି
ତାହାକୁ କହିବାକୁ କାହାର ବଳହୋଇ ।
ଏବେ ଏତ ଧରଣୀ ମୋର ଶିରେ ରହେ
କେମନ୍ତେ ମୁହିଁ ଯିବି ଆସିଛୁ ମୋ ଯାଏ ।
ଏଠାରୁ ଫେରିଣ ତୁ ଈଶ୍ୱର ପୁରେ ଯାଅ
ପଞ୍ଚମୁଖ ପାଶେ ନିଉନ ଭାବେ କହ ।

ସେ ଅବା ରଖି ପାରିଲେ ରଖଇ ମହେଶ
ଦୟାଳୁ ଠାକୁର ସେ ଅଟନ୍ତି ବିଶ୍ୱବାସ ।
ଶୁଣିଣ ଗନ୍ଧର୍ବ ବେଗେ ଚଳିଗଲା
କପିଳାଶ ପୁରରେ ପ୍ରବେଶ ହୋଇଲା ।
ଈଶ୍ୱର ପାର୍ବତୀ ବିଜେ ଏକଠାରେ
ଦେଖିକରି କାକ ଶୋଇଲା ଦୂରରେ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ବାୟସ ପକ୍ଷୀ କିମ୍ପା ହେଲା ହତଜ୍ଞାନ ।
ଈଶ୍ୱର ବୋଇଲେ ଶୁଣ ଗୋ ପାର୍ବତୀ
ଇନ୍ଦ୍ର ରାଜାଙ୍କର ଅଟେ ସେ ପୁତ୍ରଟି ।
ମେନକା ଅପସରୀ ନବିଯୁବ କାଳେ
ଶଚୀଦେବୀ ଅଶଉଚ ହୋଇବାଉ ବେଳେ ।
ରାଜା ଆସି ତାହାର ସଙ୍ଗରେ ସଙ୍ଗ ବେଲେ
ବିବିଧ ରଙ୍ଗରେ ସେ ରସକେଳି କଲେ ।
ତାହାଠାରୁ ଜନମ ହେଲା ଏହିପୁତ୍ର
ଏହାର ନାମଟି ଚିତ୍ରସେନ ରଥ ।
ଏ ପାପୀ ନଳର ଭାରିଜା ନାଶକଲା
ସେ ଦୋଷରେ କାକଜନ୍ମ ମର୍ତ୍ତ୍ୟରେ ହୋଇଲା
ଏବେ ଦୋଷୀ ହୋଇଲା ଜାନକୀଠାରେ ପୁଣ
ଲୋଭରେ ଜାନକୀଙ୍କି ଦେଲା ସେ ଚୁମ୍ବନ ।
ଦେଖିଣ ଦାଶରଥି ପେଶିଛନ୍ତି ଶର
ଏହାର ଆଖି ଖୋଳି କରିବେ ଅନ୍ଧାର ।
ତେବେ ସିନା ଏ ଦୋଷକୁ ଦଣ୍ଡପାଇ ପୁଣ
ଚେତା ଥାଉ ଥାଉ ଅନ୍ଧ ହୋଇଲା ସେ ଜାଣ
ତିନିପୁର ବୁଲିଣ ସେ ଏଠାରେ ହୋଇଲା
ଦଶା ଥିବାଯାଏଁ ସାତଦିନ ସେ ବୁଲିଲା ।
ଏବେ ପଶୁ ଜାନକୀ ପାଦରେ ଶରଣ
ତେବେ ସିନା ସୁଦୟା କରିବେ ନାରାୟଣ ।
ଆମ୍ଭଠାରେ ଏହାର ଗତି ଆଉ ନାହିଁ
କାହିଁଥିଲୁ କାକ ତୁରେ ଚଳ ବେଗ ହୋଇ ।
ଏହି ସମୟରେ ସେ ରାମବାଣ ଆସି
ଆକର୍ଷନ୍ତେ ସେଠାରୁ ପଳାଏ ଇନ୍ଦ୍ରବଂଶି ।
ସବୁ କାକ ପାଶରେ ପ୍ରବେଶ ସେ ହୋଇ
ଶରଆସି ସବୁ କାକ ନୟନ ଖୋଳଇ ।
ଜଣେ ଦୋଷକଲା ସବିହେଁ ନାଶଗଲେ
ସବୁ କାକକୁ ବାୟସ ଡାକିଣ କହିଲେ ।

ସବୁକାକଙ୍କୁ ସେ ଘେନିଣ ସଙ୍ଗର
ପ୍ରବେଶ ହେଲା ଯାଇ ଚିତ୍ରକୂଟ ପୁର ।
ସବୁକାକ ଅନ୍ଧ ହୋଇ ପଡିଲେ ଭୂତଳେ
ବୋଇଲେ ଦେବୀ ଆତ୍ମଦୋଷ ହର ହେଳେ ।
ଏମନ୍ତ ଶୁଣି ଜାନକୀ ସୁଦୟା ଯେ କଲେ
ରାମଙ୍କ ଛାମୁରେ ବିକଳେ କହିଲେ ।
ଭୋ ରଘୁନାଥ ଏ ଜଣେ ଦୋଷ କଲା
ସବୁଙ୍କର ଚକ୍ଷୁକୁ କିମ୍ପା ନଦିଶିଲା ।
ସମସ୍ତେ ନିରକ୍ଷ ହୋଇ ମରିବେ ଏକ୍ଷଣି
ଏହାଙ୍କୁ ଦୟାକର ରଘୁକୁଳମଣି ।
ଶ୍ରୀରାମ ବୋଇଲେ ପରା ତୋଠାରେ ଦ୍ରୋହକଲେ
ତହିଁର ଦୋଷରେ ସର୍ବ ନାଶ ଗଲେ ।
ଶୁଣି ଜାନକୀ ରାମ ପାଦତଳେ ପଡ଼ି
କାର୍ପୂଣ୍ୟ ହୋଇଣ ବେନିକର ଯୋଡ଼ି ।
ଭୋ ପ୍ରାଣନାଥ ଏବେ ଯାଙ୍କୁ ଦୟାକର
ଆଜ୍ଞାଦେଲେ ଲୋଚନ ପାଇବେ ତାଙ୍କର ।
ସଖା ସୋଦର ଯାଙ୍କର ନାହାନ୍ତି ଯେ କେହି
ଉପବାସେ ମଲେ ଏବେ ଆମ୍ଭଙ୍କୁ ଦୁଃଖଦେଇ
ସୀତାଙ୍କ ବିନୟଭାବ ରାମ ଶୁଣି
ସୁଦୟା ଭାବ ମନରେ ଆସିଲାକ ପୁଣି ।
ଚିତ୍ରସେନ ଗନ୍ଧର୍ବ ବୋଇଲା ଭୋ ରାମ
ବୁଲିଲି ତ୍ରିପୁର କେ ନ ରଖିଲେ ଶରଣ ।
ଜାଣିଲୁ ତୁ ଏବେ ମୋହର ମହିମା
ପିତା ତୋର ନକଲା କି ଜାଣିଣ ଗାରିମା ।
ପାଆନ୍ତୁ ନୟନ ଚାହାଁନ୍ତୁ ବକ୍ରକରି
ଯେତେ କାକ ଥିବେ ଯେ ବାୟସ ରୂପଧରି ।
ଆଜିଠାରୁ ଯେତେକ ବଂଶରେ ଜାତ ହେବେ
ସେହି ଟେରା ହୋଇଣ ସଭିଙ୍କି ଚାହିଁବେ ।
ତେବେ ଗୋ କୀରତି ଥିବ ଯୁଗେ ଯୁଗେ
ଦୋରେହାର ଜନ୍ମ ପାଇଲେ ପରାଭବେ
କ୍ଷୀନ୍ନ ନୟନ ହେଲା ଚାହାଁନ୍ତୁ ବକ୍ରକରି
ଏସନକ ଆଜ୍ଞାଦେଲେ ଚାପଧାରୀ ।
ତତକ୍ଷଣେ କୁଆଙ୍କୁ ପ୍ରାପତ ହେଲା ଆଖି
ଉଡି ପଳାଇଲେ ସେ ନିକଟଲୋକ ଦେଖି ।
ଏଥୁ ଅନନ୍ତରେ ଶୁଣ ଦିବ୍ୟରସ
ଯାହା ଘଟଣା ଘଟିଲା କହିବି ତୋ ପାଶ ।

ଅଯୋଧ୍ୟାକୁ ଭୃତ ଯେ ରାମଙ୍କୁ ଆଣିଗଲେ
ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ଥିଲେ ।
ରଜନୀ ପ୍ରଭାତରୁ ସେଠାରୁ ଆସିଲେ
ଯମୁନା ପାରିହୋଇ ଅଗମ୍ୟ ବନେ ହେଲେ ।
ଗୁହ୍ୟ ଶବର ଯେ କଢ଼ାଉଛି ବାଟ
ଚିତ୍ରକୂଟ ନିକଟରେ ମିଳିଲେକ ଥାଟ ।
ଲୋକଙ୍କର ଗହଳ ବୀରତୂର ଯାଏ
ବନର ଜନ୍ତୁମାନେ ପଳାନ୍ତି ଯେ ଭୟେ ।
ଆଶ୍ରମ ଛାଡିଣ ପଳାଇଣ ଥାନ୍ତି
ଏକକୁ ଆରେକ କିଛି ଭୟ ନ କରନ୍ତି ।
ମୃଗ ଶମ୍ବର ଯେ ଶୂକର ମଇଁଷୀ
ଗଧ ସିଂହ ଶାର୍ଦ୍ଦୂଳ ହୋନ୍ତି ମିଶାମିଶି ।
ଶଚାକସ୍ତୁରୀ ଛିଆଦ ଶୃଗାଳ ଖୁରଙ୍ଗ
ଏମାନେ ଚରିଣ ଛାଡିଲେ ନିଜସଙ୍ଗ ।
ଶୁଆ ଡିମ୍ବ ଛାଡିଣ ଚଢ଼ାଇ ରାବଦ୍ୟନ୍ତି
ଝିଙ୍କା ଝିଙ୍କି କରିଣ ସେ ଉପରେ ଉଡନ୍ତି ।
ଲକ୍ଷ୍ମଣ ପଚାରନ୍ତି ଶ୍ରୀରାମଙ୍କୁ ଚାହିଁ
ବିଜୁଳିର ପ୍ରାୟେ ତ ଏବେ ସେ ଦିଶଇ ।
ଜୀବଜନ୍ତୁମାନେ ପଳାଇ ଯାଉଛନ୍ତି
ନାନାଦି ପକ୍ଷୀମାନେ ବୋବାଳୀ ଛାଡନ୍ତି ।
ବନସ୍ତ କମ୍ପଇ ଶୁଭେ ଘୋର ନାଦ
ଅଯୋଧ୍ୟାର ପ୍ରାୟ ଯେ ବାଜୁଅଛି ବାଦ୍ୟ ।
ଶ୍ରୀରାମ ବୋଇଲେ ସେ କେଉଁ ନରପତି
ମୃଗୟା ବିନୋଦରେ ବନେ ବୁଲୁଛନ୍ତି ।
ଉଚ୍ଚ ବୃକ୍ଷରେ ଉଠି ଦେଖିଲେ ଲକ୍ଷ୍ମଣ
ତଥ୍ୟ ବାରତାଟି ଜାଣିବା ଏହିକ୍ଷଣ ।
ଦେଖିଣ ଶାଳ ବୃକ୍ଷରେ ଉଠିଲେ ସଉମିତ୍ରୀ
ଶିଖଡ଼ାଳେ ଚଢ଼ିଣ ଚାହିଁଲେ ଚଉକତି ।
ପୂର୍ବଭାଗେ ସୈନ୍ୟ ଯେ ଦିଶନ୍ତି ଅପାର
ଗଜ ଅଶ୍ୱ ପଦାତି ବଳ ଅସୁମାର ।
ଉଦଣ୍ଡ ଆଳମ୍ବ ବିମଳ ଅପାର
ଦେଖିଣ ସଉମିତ୍ରି କ୍ରୋଧେ ଜରଜର ।
କଣୟର ରଥଧ୍ୱଜ ଦିଶିଲାକ ଯହୁଁ
ତରତର ହୋଇଣ ଓହ୍ଲାଏ ବେଗେ ତହୁଁ ।
ଶ୍ରୀରାମଙ୍କୁ ଚାହିଁଣ ବୋଲନ୍ତି ସଉମିତ୍ରି
ବେଗେ ଧର ସ୍ୱାମୀ କୋଦଣ୍ଡ ଭାରତୀ ।

ଭରତ ଶତ୍ରୁଘନ ଆସୁ ଯେ ଅଛନ୍ତି
ଆମ୍ଭଙ୍କୁ ପ୍ରାଣରେ ମାରିବେ ଏଘାନ୍ତି ।
କୈକୟୀର ବୁଦ୍ଧି ନୁହଇ ଯେ ଆନ
କେତେବେଳେ ଭ୍ରତକୁ ରାଜ୍ୟ ଦେଲା ଜାଣ ।
ବିଚାର କଲା ଭ୍ରତ ମନ୍ତ୍ରୀଗଣ ଘେନି
ଶ୍ରୀରାମ ଥିଲେ ମୋର ନୋହିବ ଅବନୀ ।
ଶ୍ରୀରାମଙ୍କୁ ଯେବେ ପ୍ରାଣରେ ମାରିପାରି
ତେବେ ଭୋଗକରିବ ଅଯୋଧ୍ୟାର ଶିରୀ ।
ଦଶରଥ ସେ କଥାକୁ ସନମତ କଲେ
ତେଣୁ ସେ ସମଦଣ୍ଡ ଚଳାଇ ଆସିଲେ ।
ଯଦ୍ୟପି ଏଥକୁ ସେହି ଆସିଛନ୍ତି
କେହୁ ଶ୍ୟାମଳ କେ ବକ ବୁଝିବା ଏଘାନ୍ତି ।
ମଦାଗ୍ନି ନଦୀକି ମୁଁ ରକତେ ବୁହାଇବି
ଗୃଧ୍ରପକ୍ଷୀମାନଙ୍କୁ ମାଂସ ଦାନଦେବି ।
ଖଣ୍ଡଖଣ୍ଡ କରିଣ କାଟିବି ରଥମାନ
ଗଜ ଅଶ୍ୱମାନଙ୍କୁ କରିବି ଭିନ୍ନଭିନ୍ନ ।
ଭ୍ରତ ଶତୃଘନର ଛେଦିବି ମୁଁ ଶିର
ଦଶରଥଙ୍କ ଜୀବନ ଯିବ ଯମପୁର ।
ବଶିଷ୍ଠ କଶ୍ୟପ ଜାବାଳୀ ବାମଦେବ
ଚିତ୍ରକୂଟେ ପକାଇବି ଏହାଙ୍କର ଶବ ।
ସୁମନ୍ତ ମନ୍ତ୍ରୀକି ନଥୋଇବି କ୍ଷଣେ
ଧର୍ମ ଅଧର୍ମ ବିଚାରିବେ ସୁରଗଣେ ।
ବନକୁ ପେଶିଣ ପୁଣ ଆସିଛନ୍ତି ମାରି
ଆଜି ସେ ଜାଣିବା ପ୍ରତିଜ୍ଞା ତାଙ୍କରି ।
ଏତେ ଦୁଃଖରେ ଆମ୍ଭେ ହରୁଥାଇ ଦିନ
ଏଥକୁ ଅହନ୍ତା କଲା ଯେବଣ ହିଁ ଜନ ।
ରାଜ୍ୟକୁ ଯାଉ ଅବା ଜୀବନ ଦେଇ ଯାଉ
ଏ ଦୁଇ କଥାରୁ କଥାଏ ପୁଣ ହେଉ ।
ଅକ୍ଷୟ ତୂଣୀ ସେ ଭିଡିଣ ଆଗ ହୋଇ
ଧନୁରେ ଗୁଣକୁ ଦୃଢ଼ରେ ଚଢ଼ାଇ ।
ଶ୍ରୀରାମ ବୋଇଲେ ଶୁଣ ଆରେ ଭ୍ରାତ
ଅଯୋଧ୍ୟାର ବୋଲି କେହ୍ନେ ଜାଣିଲୁ ତୁହି ତ ।
ଲକ୍ଷ୍ମଣ ବୋଇଲେ ଦେବ ପିତାଙ୍କ ରଥ ଅଛି
ଉପରେ କାୟର ପକ୍ଷୀ ବିରାଜୁଛି ।
ତେଣୁକରି ପରତେ ମୁଁ କଲି ରଘୁନାଥ
ଅଳସ ନକର ହୁଅ ଧନୁହସ୍ତ ।
ପର୍ବତ ଉପରେ ସେ ଉଠିଲେଣି ଆସି
ହେଳାକରିଣ ଦେବ କିମ୍ପା ଅଛ ବସି ।
ଶ୍ରୀରାମ ବୋଇଲେ ଲକ୍ଷ୍ମଣ ହାଦେ ରହ
ଭରତର ମୋର ଯେ ଅଟେ ଏକ ଦେହ ।
ସେହୁ କିମ୍ପା ମୋତେ ଆସିବ ଯେ ମାରି
କେମନ୍ତେ କଥା ତୁରେ କହୁ ନବିଚାରି ।
ମୋହର ମନକୁ ପ୍ରତେ ନ ଆସଇ
ଭ୍ରତ କେବେ ଅଯୋଧ୍ୟାରେ ନୃପତି ନ ହୁଅଇ
ମାତାର ବୋଲ ସେ ନକଲା କଦାଚିତେ
ମୋତେ ନେବାକୁ ଭ୍ରତ ଆସୁଅଛି ଏଥେ ।
ଏହିକଥା ସତ ଯେ ନୁହେ ଆନ କିଛି
ତୋହର ପାଇଁ ଭ୍ରତ ଏଥକୁ ଆସୁଅଛି ।
ବନକୁ ଆସିଣ ପାଇଲୁ କେତେ ଦୁଃଖ
ରାଜ୍ୟକୁ ଯାଇ ଏବେ ଭୁଞ୍ଜ ତୁହି ସୁଖ ।
ଭରତ ପଛେ ମୋତେ ସେବାକରି ରହୁ
ଶତ୍ରୁଘନ ଭାଇ ତୋର ସଙ୍ଗତରେ ଯାଉ ।
ଶୁଣିକରି ଲକ୍ଷ୍ମଣ ଶ୍ରୀରାମ ପାଦେପଡ଼ି
ଭୋ ରଘୁନନ୍ଦନ କିରୂପେ ଯିବି ଛାଡି ।
ତୁମ୍ଭ ଚରଣେ ସେବା କରିଥିବି ମୁହିଁ
ତୁମ୍ଭେ କିମ୍ପା ଆଜ୍ଞା ଦିଅ ରାଜ୍ୟେ ଯିବାପାଇଁ ।
କିପାଇଁ ଉପ୍ରୋଧ ମୋତେ ଛାଡୁଛ ରଘୁନାଥ
ଏତେ କହି ଲକ୍ଷ୍ମଣ ଯୋଡ଼ିଲେ ବେନିହସ୍ତ ।
ଶ୍ରୀରାମର ଚରଣରେ ନମେ ପୁଣ ପୁଣି
ସଉମିତ୍ରିଙ୍କି ଚାହିଁ ବୋଇଲେ ରଘୁମଣି ।
ତୁ ଏବେ ଲକ୍ଷ୍ମଣରେ କହିଲୁ ଯୁକତି
ଋଷ୍ୟଶୃଙ୍ଗ ଦେଲେ ଯେବଣ ଆହୁତୀ ।
ଏକା ଗୋଟିଏ ଚରୁରୁ ହେଲଇଁ ଭିନ୍ନଭିନ୍ନ
ଚାରିଯୁଗେ ଆମ୍ଭେ ଦଶରଥଙ୍କ ନନ୍ଦନ ।
ଅନଳରୁ ଚରୁ ଯେ ହୋଇଲା ସମ୍ଭୁତ
ଏକଇ ବୀଜରୁ ହେଲେ ସିନା ଜାତ ।
ଆପଣାର ଦେହକୁ ଆପଣେ ଜାତକରି
ତୁ କେମନ୍ତେ ବୋଇଲୁ ଭ୍ରତ ଆସୁଛି ମାରି ।
ଏକଇ ବୀଜରୁ ଆମ୍ଭେ ଚତୁର୍ଦ୍ଧା ମୂର୍ତ୍ତି ଜାଣ
ତୁହି କେମନ୍ତେ ଅନ୍ୟ କହୁଛୁ ଲକ୍ଷ୍ମଣ ।
ଲକ୍ଷ୍ମଣ ବୋଇଲେ ଦେବ ବିଚାର ଯେବା ଏହା
ମାନକରି ବନକୁ ଆସିଲ ରଘୁନାହା ।

ଆମ୍ଭର ମନରେ ଯେବେ ନ ଥିଲାଟି ଛଳ
କିମ୍ପାଇ ବନକୁ ଅଇଲ ଆଦିମୂଳ ।
ଭ୍ରତକୁ ଡକାଇ କିମ୍ପା ନ ବୁଝିଲ ବାଣୀ
ଅଯୋଧ୍ୟାରେ ନ ରହି ବନକୁ ଆସ ପୁଣି ।
ଭ୍ରତର ଦେହେ ଯେବେ ମାୟା ହିଁ ନଥିବ
ନୃପତିବୋଇଲେ ସେରାଜା କେବେହେଁ ନୋହିବ
ତୁମ୍ଭଙ୍କୁ ଯେବେ ଏଠାରୁ ନେବହେ ଦାଶରଥି
ତେବେ ଯେ ଜାଣିବାନା ଭ୍ରତର ତୋର ପ୍ରୀତି
କରଯୋଡ଼ି ଚରଣରେ ନମିବ ସେ ତୋର
ସଙ୍ଗେ ଆଣିଥିବ ଯେବେ ଜନନୀ ସକଳ ।
ଅଯୋଧ୍ୟା ପୁର ଯେବେ ଆକଟେ ରଖିଥିବ
ଏହିକଥା ଶୁଣିଲେ ମୋ ମନ ବୋଧହେବ ।
ତାର ବୋଲେଯେବେତୁମ୍ଭେ ଯିବ ଅଯୋଧ୍ୟାକୁ
ରାଜା ହୋଇ ପାଳିବଟି ଅଯୋଧ୍ୟା ଲୋକଙ୍କୁ ।
ତେବେ ଜାଣିବି ତୁମ୍ଭର ଦେହେ ନାହିଁ ଛଳ
ତୁମ୍ଭର କଥା ଏବେ ତୁମ୍ଭଙ୍କୁ ହେବ ମୂଳ ।
ଶୁଣିକରି ଜାନକୀ ଅଳପ ହସିଲେ
ଶ୍ରୀରାମ ହୃଦୟରେ ଆପଣେ ବିଚାରିଲେ ।
ବିଚାରି ଲକ୍ଷ୍ମଣ କଥାଏ କହିଲା
ଶ୍ରୀରାମ ବୋଲନ୍ତି ଶୁଣ ସୁମିତ୍ରାଙ୍କ ବଳା ।
ତୁହି ଯାହା କହିଲୁ ସେକଥା ନୁହେ କିଛି
ମୁଁ ଅଯୋଧ୍ୟା ଗଲେ ପିତା ସତ୍ୟ ରହିବକି ।
ଆପଣାର ସତ୍ୟମାନ ନ ଲଙ୍ଘନ୍ତି ଆପେ
ପିତା ସତ୍ୟ ଲଙ୍ଘିବାକୁ କାହାର ସକ୍ଷପେ ।
ସତ୍ୟ ଯେବେ ଲଙ୍ଘନ୍ତେ ସିନ୍ଧୁଜଳ ପୁଣି
ଖଣ୍ଡ ଖଣ୍ଡ ହୋଇ କିମ୍ପା ରହନ୍ତେ ଧରଣୀ ।
ସତ୍ୟ ଯେବେ ଲଙ୍ଘନ୍ତେ କାଶ୍ୟପର ପୁଏ
ଭିନ୍ନ ଭିନ୍ନ ହୋଇ ରାତ୍ର ଦିବସ କିମ୍ପା ହୁଏ ।
ସତ୍ୟରେ ସମସ୍ତେ ଜାଣ ମିଛ ଅଟେ କାୟା
ମାୟା ହେଲେ କାୟା ଭ୍ରଷ୍ଟ ଜାଣ ଭାଇ ଏହା
ଅସୁରଙ୍କ ମାୟାକୁ ଡରନ୍ତି ଯେ ସୁରେ
ନରଲୋକେ ମାୟା କଲେ ଯାଏ ଯମପୁରେ ।
ଜୀବମାନେ ଦେଖ ଏକଧାରାକେ ରହୁଛନ୍ତି
ଯେ ଯାହା ଭକ୍ଷନ୍ତି ଆଉ ସ୍ୱାଦ ନ ଲୋଡ଼ନ୍ତି ।
ଯେ ଯାହା କଥାକୁ ମାନି ସତ୍ୟ ଘେନି ରହେ
ପିତା ସତ୍ୟ କେ ଲଙ୍ଘିବ ଏହା ମୋର ନୁହେ

ରାଜା ହେବା ନାହିଁ ମନ ଧନରେ ନାହିଁ ଆଶ
କନ୍ଦମୂଳ ମୃଗମାଂସ କରିବି ମୁଁ ଗ୍ରାସ ।
ଚଉଦ ବରଷ ମୋର ଅଟଇ ପ୍ରମାଣ
ନ ଖାଇବି ଅନ୍ନ ମୁଁ ନ ଯିବି ଦେଶେଣ ।
ଯେବେ ସେ ରାଜନ ନୋହିବଟି ଭ୍ରତ
ଚଉଦ ବରଷେ ଯିବି ଅଟଇ ନିୟତ ।
ଲକ୍ଷ୍ମଣ ବୋଇଲେ ଦେବ ଅପାପୀ ତୁମ୍ଭେ ତ
ଏକଥା ବିଚାର ନକର ରଘୁନାଥ ।
ଚାପପାଣି ବୋଇଲେ ଲକ୍ଷ୍ମଣ ତୁରେ ଶୁଣ
ଗଛ ପରେ ଉଠି ତୁ ଦେଖରେ ତକ୍ଷଣ ।
ନିକଟ ହୋଇବେଣି ଦିଶିବେଣି ସର୍ବେ
ତୁଛା ରଥ ଆସୁଛି କି ଭରତ ତହିଁରେ ବିଜେ
ସଙ୍ଗରେ ଦୋଳାହାନ୍ଦୋଳାକି ଏକା ଆସେଭାଇ
ପାତ୍ର ମନ୍ତ୍ରୀ ସଙ୍ଗରେ ଛନ୍ତିଟିକି ରହି ।
କେତେକ ପଦାତି କେତେ ଗଜ ଅଶ୍ୱ
କେତେକ ନାରୀ ଯେ ଅଛନ୍ତି ତାର ପାଶ ।
କେତେକ ଋଷି ବ୍ରାହ୍ମଣ କେତେକ ବଜାରୀ
ଏହା ମୋତେ ସମ୍ପାଦି କହିବୁ ଦେଖିକରି ।
ଶୁଣିକରି ଲକ୍ଷ୍ମଣ ବୃକ୍ଷପରେ ଚଢ଼ି
ଦେଖିଲେ ନିକଟରେ ଥାଟ ଆସୁଛନ୍ତି ମାଡି ।
ପାତ୍ର ମନ୍ତ୍ରୀ ସାମନ୍ତ ଋଷି ବ୍ରାହ୍ମଣ ନରନାରୀ
ଅଯୋଧ୍ୟାରୁ ଦଶ ବିଶ୍ୱା ସଙ୍ଗରେ ଛନ୍ତି ଘେରି
ଗଜ ଅଶ୍ୱ ପଦାତି ବାଣୁଆ ଫଡିକାର
ହଟାରୀ ବଜାରୀ ଯେ ଅଛନ୍ତି ସଙ୍ଗର ।
ମାତାମାନେ ଆଗରେ ପଛରେ କୁଳବଧୂ
ତହିଁ ପଛେ ଶତ୍ରୁଘନ ଦିଶେ ପୂର୍ଣ୍ଣଇନ୍ଦୁ ।
ତାରପରେ ତୁଛା ରଥ ଛତି କାହାଳୀ ମୃଦଙ୍ଗ
ରଥରେ ଭ୍ରତବୀର କାନ୍ଦି କରେ ଶବ୍ଦ ।
ଦେଖିକରି ଲକ୍ଷ୍ମଣକୁ ରଥରୁ ଓହ୍ଲାଏ
ଗୁହ୍ୟନାମେ ଶବର ପ୍ରବୋଧ କରାଏ ।
ଲକ୍ଷ୍ମଣ ବୋଇଲେ ସ୍ୱାମୀ ମୋର କଥା ମିଛ
ତୁମ୍ଭର କହିବା କଥା ସବୁ ହେଲା ସ୍ୱଚ୍ଛ ।
ଆଗରେ ଜନନୀ ପଛରେ କୁଳବଧୂ
ପଛରେ ଶତ୍ରୁଘନ କାହାଳୀ ମୁଦା ସବୁ ।
ତହିଁ ପଛେ ପଦାତି ଅଶ୍ୱ ଗଜ ପାତ୍ର
ସାମନ୍ତ ବିପ୍ର ନାରୀ ଋଷି ସେ ସମ୍ଭୁତ ।

ଦଶବିଶ୍ୱା ରାଜ୍ୟରୁ ଆସିଛନ୍ତି ବଳ
ଗୁହ୍ୟ ଶବର ଆସିଛି ଘେନି ତାର ବଳ ।
ସମସ୍ତ ପଛରେ ଛନ୍ତି ଭ୍ରତ ଭାଇ
ଶୋକଜଳେ ଭାସୁଛନ୍ତି ଶବର ବୋଧ ଦେଇ ।
ଶ୍ରୀରାମ ଲକ୍ଷ୍ମଣ କଥା ହୁଅନ୍ତେଣ ବସି
ନିକଟରେ ଥାଟ ଯେ ମିଳିଗଲେ ଆସି ।
ପର୍ବତ ଉପରେ ସୈନ୍ୟ ପଡିଲେକ ମାଡି
ଭ୍ରତ ଶତ୍ରୁଘନ ଦୁଃଖେ ଛାଡୁଛନ୍ତି ରଡ଼ି ।
ସଙ୍ଗରେ ପାତ୍ର ମନ୍ତ୍ରୀ ମିଳିଲେ ସମସ୍ତ
ବଶିଷ୍ଠ ଆଗକରି ଉଠିଲେ ପର୍ବତ ।
ମାତୃଗଣ ସହିତେ ସକଳ ନରନାରୀ
ପର୍ବତ ତଳରେ ତାଙ୍କୁ ରଖିଲେ ବିଚାରି ।
ସକଳ ଜନ ପ୍ରଜା ଗିରିରେ ଚଢ଼ିଯାନ୍ତି
ଥୋକେ ଦୂରେ ରାମଙ୍କର ମଢ଼ିଆ ଦେଖନ୍ତି ।
ଦେଖି ଭରତ ବିକଳେ କଲେକ ରୋଦନ
ବଶିଷ୍ଠ ବୋଇଲେ ଜନନୀ କଲେକ ଏସନ
ତୁମ୍ଭେ ତ ଜାଣିଛ ମୁନି ସକଳ ବୃତ୍ତାନ୍ତ
ମୋହର ଦୋଷନାହିଁ ଜାଣନ୍ତି ଦୈବତ ।
ଋଷି ବୋଇଲେ ବାବୁ ତୁ କିମ୍ପାଇ ଡରୁ
ଚାରିଦେହ ତୁମ୍ଭେ ଅଟ ଏକଚରୁ ।
ରାମର କି ମାୟା ଯେ ଅଛି ତୋତେ ମନେ
କିମ୍ପାଇଁ ଭ୍ରତ ତୁ ଭାବୁଅଛୁ ଆନେ ।
ଭ୍ରତକୁ ଏହିପରି ବଶିଷ୍ଠ ବୁଝାନ୍ତି
କହନ୍ତି ଶୂଳପାଣି ଶୁଣ ହୈମବତୀ ।
ଏଥୁଅନନ୍ତରେ ପଥ ବହିଗଲେ
ଚିତ୍ରକୂଟେ ରାମ ମଢ଼ିଆ ପାଖରେ ମିଳିଲେ ।
ଶ୍ରୀରାମ ଲକ୍ଷ୍ମଣ କୁଟୀରେ ଛନ୍ତିବସି
ଏକା ହୋଇ ବସିଛନ୍ତି ସୀତା ଶୁଭ୍ରକେଶୀ ।
ତଳକୁ ବଦନ କରି ବସିଛନ୍ତି ସତୀ
ନୟନରୁ ଅଶ୍ରୁଜଳ ବହି ପଡ଼େ କ୍ଷିତି ।
ଭରତ ଶତ୍ରୁଘନ ସକଳ ଲୋକ ରଖି
ବଶିଷ୍ଠଙ୍କ ସଙ୍ଗରେ ଦୁଇଭାଇ ଉଠି ।
ଶ୍ରୀରାମଙ୍କ ସନ୍ନିଧରେ ମିଳିଲେ ସେ ଯାଇ
ଦେଖିକରି ଉଠିଲେ ରଘୁ କୁଳସାଇଁ ।
ବଶିଷ୍ଠଙ୍କ ଚରଣରେ କଲେ ନମସ୍କାର
ଆବର ନମିଲେ ବାମଦେବଙ୍କ ପୟର ।

ଲକ୍ଷ୍ମଣ ଏମାନଙ୍କୁ କରିଲେ ପ୍ରଣାମ
ଭୁଜ ଧରି ଲକ୍ଷ୍ମଣର ଉଭା ଯେ ଶ୍ରୀରାମ ।
ଲାଜଭର ହୋଇଣ ଭ୍ରତ ଶତ୍ରୁଘନ
ଆତ୍ମାରେ ସଂକୋଚ କରନ୍ତି ମନେ ମନ ।
ଶ୍ରୀରାମଙ୍କ ଚରଣେ ପଡ଼ିଣ ନମନ୍ତି
ଭ୍ରତ ଶତ୍ରୁଘ୍ନଙ୍କୁ ରାମ ସମ୍ମାନ ଦିଅନ୍ତି ।
ରୋଦନ କରେ ଭ୍ରତ ଧରି ରାମପାଦ
ଦେଖିଣ ରାମଚନ୍ଦ୍ର ହୋଇଲେ ବିଷାଦ ।
ବଶିଷ୍ଠଙ୍କୁ ଚାହିଁଣ ବୋଲନ୍ତି ରଘୁପତି
ଭ୍ରତକୁ କିମ୍ପାଇଁ ନ ତିଆର ଯତି ।
ରାଜ୍ୟ ଛାଡିଣ କିମ୍ପା ଏଠାକୁ ଅଇଲେ
ଦଶରଥ ରାଜା କିମ୍ପା ଏହାଙ୍କୁ ଆଜ୍ଞାଦେଲେ ।
ଶତ୍ରୁଘନ ତୁଲେ କିମ୍ପା ଅଇଲେ ମନ୍ତ୍ରୀଗଣ
ବଶିଷ୍ଠ ବୋଇଲେ ଶୁଣ ରଘୁରାଣ ।
ଭ୍ରତକୁ ଘେନିଣ ତୁମ୍ଭେ ଚାରିଭାଇ ବସ
ମୋହର ଠହୁଁ ତୁମ୍ଭେ ଶୁଣ ହେ ସନ୍ଦେଶ ।
କୈକେୟୀ ସୁତଙ୍କୁ ଲକ୍ଷ୍ମଣ ପ୍ରଣମି
ଲକ୍ଷ୍ମଣ ପାଦରେ ଶତ୍ରୁଘନ ନମି ।
ପତ୍ର କୁଡ଼ିଆରେ ବସିଲେ ଚାରିଭାଇ
ସୀତୟା କିଛିଦୂରେ ଅଛନ୍ତି ଏକା ହୋଇ ।
ବଶିଷ୍ଠଙ୍କୁ ଘେନିଣ ମନ୍ତ୍ରୀଗଣ ବସି
ଶ୍ରୀରାମ ବୋଇଲେ ଗ୍ରହଣ କରସି ।
ଭରତ ବନକୁ ଅଇଲା କାହିଁପାଇଁ
ରାଜ୍ୟ କରିଥାନ୍ତା ତ ସେ ଅଯୋଧାରେ ରହି
ପିତା ମାତାଙ୍କୁ ଏ ଯେ ସେବା କରିଥାନ୍ତା
ଏ କିମ୍ପା ଏଥକୁ କରିଅଛି ଚିନ୍ତା ।
ପ୍ରଜାଙ୍କୁ ପାଳନ କରିଥାନ୍ତା ଏତ
ଏହା ଶୁଣି କହିଲେ ବଶିଷ୍ଠ ତପୋବନ୍ତ ।
ତୁମ୍ଭେ ବନକୁ ଆସିଣ ପାଇଲ କି ସୁଖ
ଅଯୋଧା ପୁର ଲୋକ କଲେ ବହୁଶୋକ
ତମସା ନଦୀକୂଳରେ ଅଇଲ ଲୁଚା ଦେଇ
ତୁମ୍ଭଙ୍କୁ ନ ଦେଖି ଲୋକେ ବ୍ୟାକୁଳିତ ହୋଇ
କେବଳ ଅଯୋଧାରେ ଦିନାକେତେ ଥିଲୁଁ
ତୁମ୍ଭଙ୍କୁ ଦେଖିବାକୁ ଏଠାକୁ ଆସିଲୁଁ ।
ତୁମ୍ଭଙ୍କ ଗଙ୍ଗାକୂଳେ ସୁମନ୍ତ୍ର ଛାଡିଗଲା
ରାମ ବନକୁ ଗଲେ ରାଜ୍ୟରେ କହିଲା ।

ତୁମ୍ଭେ ଏଣେ ଅଇଲ ଭ୍ରତ ହିଁ ନ ଥିଲେ
ତୁମ୍ଭେ ଆସିବାର ବାରଦିନେ ପିତାମଲେ ।
ପାତ୍ର ମନ୍ତ୍ରୀ ବସିଣ ସମସ୍ତେ ବିଚାରିଲୁଁ
ତଇଳ କୁଣ୍ଡରେ ଶବକୁ ରଖିଲୁଁ ।
ଚାର ବରଗି ଆରିଲୁଁ ଶତ୍ରୁଘନ ଭ୍ରତ
ସେ ଆସି ଶୁଣିଲେ ଏସନ ସଂଘାତ ।
ମନ୍ଥରୀକୁ ଦଣ୍ଡଦେଇ ମାତାକୁ କୋପକରି
ଅମନାତ୍ୟଗଣଙ୍କୁ ବହୁତ ଧିକ୍‌କାରୀ ।
ଆମ୍ଭଙ୍କୁ କହିଲେ ଶୁଣ ହେ ମୁନିବର
ପିତାଙ୍କ ସତ୍ୟରେ ରାମ ଗଲେ ବନନ୍ତର ।
ଲକ୍ଷ୍ମଣ ସଙ୍ଗରେ ଗଲେ ସେ କଥା ଭଲହେଲା
ଜନକ ଦୁହିତା କିମ୍ପା ବନବାସ କଲା ।
ଅଯୋଧ୍ୟାରେ ରାଜା ଏବେ ହୋଇବ ଯେ କିଏ
ସୀତା ଥିଲେ ଭୟ ନୁହନ୍ତା କେବେହେଁ ।
ଚଉଦ ବରଷ ଜାନକୀ ରାଜା ହୋନ୍ତେ
ସେବକ ପଣେ ଆମ୍ଭେ ଖଟନ୍ତେ ସମସ୍ତେ ।
ଏତେ କହି ରୋଦନ କଲେ ଭ୍ରତବୀର
ମାତାଙ୍କୁ ବୋଇଲେ କେଣେ ଗଲେ ପ୍ରଭୁମୋର
ଅନେକ ଶୋକ କଲେ ବନକୁ ଆସିବାରୁ
ପିତା ମୃତ୍ୟୁ ପିଣ୍ଡ ଦେଖିଲେ କହିବାରୁ ।
ଗୁଣ ସୁମରି ଭ୍ରତ ଭୂମିରେ ଢଳିପଡ଼ି
ଅନେକ ପ୍ରବୋଧନା ନ ଶୁଣିଲେ ମୋରି ।
ପିତାଙ୍କୁ ଅଗ୍ନିରେ କଲେ ସେ ସଂସ୍କାର
ବିଧିମତେ ଦାନ ପୁଣ୍ୟ କଲେ ସେ ଅପାର ।
ଅଯୋଧ୍ୟା ରାଜା କେବେ ନୋହିଲେକ ସେହି
ବୋଇଲେ ମୋର ପ୍ରଭୁ ଶ୍ରୀରାମ ଅଟଇ ।
ଏକଦେହ ଗୋଟି ମୋର ଅଟନ୍ତି ରଘୁନାଥ
ତାଙ୍କୁ ଜଣା ମୁହିଁ ଅଟେ ତାଙ୍କ ସେବକ ତ
ମୋତେ ନଅଣାଇଁ କିମ୍ପା ବନକୁ ସେ ଗଲେ
ଜାନକୀ ଠାକୁରାଣୀଙ୍କୁ କିମ୍ପା ସଙ୍ଗେ ନେଲେ ।
ଲୋକଙ୍କୁ କିମ୍ପା ଏତେ ଦୁଃଖ ଦେଲେ ଜାଣି
ସର୍ବଜ୍ଞା ଅଟନ୍ତି ତ ରାମ ଗୁଣମଣି ।
ମୁହିଁ ଯାଇ ପଶିବି ଚରଣେ ଶରଣ
ଫେରାଇ ଆଣିବି ମୁଁ ଅଯୋଧ୍ୟାପୁରେ ପୁଣ ।
ତୁମ୍ଭଙ୍କୁ ନେବାକୁ ସେ ଏଠାକୁ ଆସିଲେ
ସଙ୍ଗରେ ବଳନ୍ତି ଦେଖ ହେ କୌଶଲ୍ୟେ ।

ମାତାଗଣ ସହିତେ ଅଯୋଧ୍ୟା ନରନାରୀ
ତୁମ୍ଭଙ୍କୁ ନେବାକୁ ଆସିଛୁଁ ଚାପଧାରୀ ।
ଶ୍ରୀରାମ ପଚାରିଲେ କହ ମୁନିବର
ବାରଦିନ ଉତ୍ତାରେ ତ ଆସେ ଭ୍ରତବୀର ।
ଚିନ୍ତାକରି ମଲେ କି ପିତା ମୋର ପୁଣ
କିସ କିସ କଲ ବାର ଦିନରେ ଭିଆଣ ।
ସୁମନ୍ତ ବୋଲେ ବନରୁ ମୁହିଁ ଫେରିଗଲି
ରାଜାଙ୍କ ଛାମୁରେ ବସି ସକଳ କହିଲି ।
ଦୁଃଖ ପରେ ଦୁଃଖଟି ହୋଇଲା ତାଙ୍କର
ସେହିଦିନ ରାତ୍ର ଦଶଘଡ଼ିଠାର ।
ପ୍ରବେଶ ହୋଇଲେ ନାରଦ ମୁନିବରେ
ରାଜାଙ୍କୁ କହିଲେ ଶ୍ରୀରାମ ବନେ ଗଲେ ।
ଲକ୍ଷ୍ମଣ ସୀତାଙ୍କୁ ନେଲେ ସଙ୍ଗତରେ
ଭରତ ଶତ୍ରୁଘନ ଅଛନ୍ତି ଅଜାଘରେ ।
ଅନ୍ଧର ଶାପ ତୋତେ ପ୍ରାପ୍ତ ହେଲା ବଳେ
ସେ ସମୟଟି ଆସି ଯୁଟିଗଲା ହେଳେ ।
ଚାରି ପୁତ୍ର ତୋହର ଦେଖ ଯେ କେହି ନାହିଁ
ସାତଦିନରେ ମୃତ୍ୟୁ ପାଇବୁ ନରସାଇଁ ।
ଦାନ ପୁଣ୍ୟକର ପାପ କ୍ଷୟ ଯାଉ
ଏତେ କହି ନାରଦ ଚଳିଗଲେ ତହୁଁ ।
ରଜନୀ ପ୍ରଭାତୁଁ ରାଜା ନିତ୍ୟକର୍ମ ସାରି
ବ୍ରାହ୍ମଣ ଋଷି ଦେବତା ଆଣିଲେକ ବରି ।
ସାତଦିନଠାରୁ ଏଗାରଦିନ ଯାଏଁ
ମନଇଚ୍ଛାରେ ଦାନଦେଲେ ନରରାୟେ ।
ଦେବତାଙ୍କୁଦିବ୍ୟଭୋଗଦେବୀଙ୍କୁଦେଲେବୋଦା
ଧନରତ୍ନ ବହୁତ ଋଷିଙ୍କୁ ଦେଲେ ରାଜା ।
ଦଶମୀ ଗୁରୁବାର ସେଦିନ ରାତ୍ରରେ
ରାମ ସୁମରି ପ୍ରାଣ ଛାଡ଼ିଲେ ନୃପବରେ ।
ପିତାଙ୍କର ମରଣ ଯହୁଁ ଶୁଣିଲେ ଶ୍ରୀରାମ
ଦେହଯାକ ତାଙ୍କର ହେଲା ଦମଦମ ।
ଜ୍ଞାନଭ୍ରଷ୍ଟ ହୋଇଣ ପଡ଼ିଲେ ତଳେ ଢ଼ଳି
ଧାଇଁଣ ସୁମନ୍ତ ଧଇଲେକ ତୋଳି ।
ଯମ ଅଇଲା ପରାଏ ଦିଶେ ରାମ
ରାମ ବୋଲନ୍ତି ମୋ ମନ ହେଲା ଭ୍ରମ ।
ବିପରୀତ ଶବଦ ଶୁଭୁଅଛି ମୋତେ
କି ଅବା ଆସୁଣ ଅଛନ୍ତି ଯମଦୂତେ ।

ଯମରାଜା ମୋତେ କି ନେବାକୁ ଆଜ୍ଞାଦେଲା
ଏହିକଥା ମୋତେ ଦିଶେ ହେ ମନ୍ତ୍ରୀ ଭଲା ।
ଜନ୍ତୁପତି ମୋତେ ପ୍ରତିକାର କର
ପିତା ଯେବେ ମୋର ଗଲେ ତୋରପୁର ।
ମୁହିଁ ଏଥିପାଇଁ କରିବି ଯେ କିସ
ମୋତେ ତୁ ସୁମରଣା କର ସୂର୍ଯ୍ୟଶିଷ୍ୟ ।
ଏମନ୍ତ ବୋଲି ରାମ ବହୁତ ଶୋକ କଲେ
ପୁନଃପୁନ ଅନେକ ସନ୍ତାପି ହୋଇଲେ ।
ଭୋ ତାତ ଦଶରଥ ନୃପତି ଶିରୋମଣି
ବୀରଶୂର ପଣରେ ତ୍ରୈଲୋକ୍ୟ ତୋତେ ଗଣି
ଦେବରେ ଦୁର୍ଲଭ କରିବାପାଇଁ ରଣ
ଚତୁର୍ଦ୍ଦିଗେ ବିଖ୍ୟାତ ଅଟେ ତୁମ୍ଭ ଗୁଣ ।
ସ୍ୱୟମ୍ବର ଦୈତ୍ୟ ସଙ୍ଗରେ ଯୁଦ୍ଧ କଲ
ନବସହସ୍ର ବରଷେ ଏବେ ନାଶ ଗଲ ।
ଧନୁ ଧରନ୍ତେ ତୁମ୍ଭଙ୍କୁ କେହି ନୁହେଁ ସମ
ତୁମ୍ଭ ପ୍ରାଣ କେହ୍ନେ ହରିନେଲା ଯମ ।
ଶବଦଭେଦୀ ବାଣ ଜଗତେ ବିଖ୍ୟାତ
ଅକାରଣେ ମୃତ୍ୟୁ ତୁମ୍ଭେ ପାଇଲ ଭୋ ତାତ
ପୁତ୍ରଙ୍କୁ ନ ଦେଖିଣ ମଲା ମହୀପତି
କିମ୍ପାଇଁ ଜନ୍ତୁପତି କଲାକ ଅନୀତି ।
ଆୟୁଷ ନପୂରୁଣୁ କିମ୍ପାଇଁ ସେ ନେଲା
ଏକଥା ତାହାରତ ଅନୀତି ହୋଇଲା ।
ବେଦ ଶାସ୍ତ୍ର ପ୍ରମାଣେ ଅଟେ ବେଦମତ
ଏବେ ତୁମ୍ଭଙ୍କୁ କିମ୍ପାଇଁ ହେଲା ବିପରୀତ ।
ରାମଙ୍କ ରୋଦନ ଦେଖି ସୀତା ରୋଦନ କଲେ
ଲକ୍ଷ୍ମଣ ଭୂମିରେ ପଡ଼ିଣ ରୋଦିଲେ ।
ଭରତ ଶତ୍ରୁଘନ କାନ୍ଦିଲେ ଭୂମିଲୋଟି
ଶ୍ରୀରାମ ପାଦପଦ୍ମ ଭରତ ଧରିଛିଟି ।
ରଘୁନାଥଙ୍କ ଶୋକ କହିଲେ ନ ସରଇ
ବଶିଷ୍ଠ ପ୍ରବୋଧି କହନ୍ତି ବୁଝାଇ ।
ତୁମ୍ଭେ କିମ୍ପା ଅଧୈର୍ଯ୍ୟ ହେଉଛ ରଘୁନାଥ
ଶୋକକଲେ ଆଉ କି ଦେଖିବ ତୁମ୍ଭ ତାତ ।
ସଂସାର ଧର୍ମ ଅଟେ ପୁଣ୍ୟ ବଡ଼ ମାୟା
ଯେତେ କଥା କହ ରାମ ସେହିମତି ଏହା ।
ଧନ ଜନ ସମ୍ପଦ ଆଦି ପରା ଘର
ସେ ପୁଣି କିଛି ଯେ ନୁହନ୍ତି କାହାର ।
ବିଧାତାର ଉପାୟ ନ ଜାଣନ୍ତି କେହି
ମୋହର ବୋଲୁଛନ୍ତି ଲୋଭରେ ମନଦେଇ
ମାୟା ସଂସାର ଏ ଯେ ଅଟଇ ଅନୀତି
ଯାହାକୁଯେତେବେଳେଉତ୍ପତ୍ତିକରୁଛିବେଦପତି
ଅତି ଦୁଃଖରେ ମାତା ପୁତ୍ର ଉପୁଜାନ୍ତି
ଅତି ଯତ୍ନକରିଣ ସେ ପୁତ୍ରକୁ ପାଳନ୍ତି ।
ସେ ପୁତ୍ର ମାତାଠାରେ ପ୍ରିୟକରେ ପୁଣ
କଦାଚିତେ ମନରେ ନ କରନ୍ତି ଆନ ।
ଯେତେବେଳେ ପ୍ରାପ୍ତ ତାକୁ ହୁଅଇ ଯୁବତୀ
ପିଅର ଜନନୀକି ସେ କରଇ ଅନୀତି ।
ପିତା ମାତା ବଚନକୁ କରନ୍ତି ଉପହାସ
ଯୁବତୀ ରମଣୀଠାରେ ରଖନ୍ତି ମୁହାଁସ ।
ସେହି ସ୍ତିରୀକି ରଖଇ ପ୍ରାଣ ସମକରି
ଶ୍ରମପାଇ କାମରେ ବୋଧେ ସମସରି ।
ମାତା ପିତାଙ୍କୁ ଛାଡି ଯୁବତୀ ଘେନି ମାତି
କ୍ଷଣେ ହେଁ ଯୁବତୀକି ନଛାଡନ୍ତି କତି ।
ବେଳୁଁ ବେଳ ସେହି ପ୍ରୀତି ବଢ଼ଇ ଅପାର
ବାରଣ ନ ଯାଇ ପୁଣ ଏକଇ ଶରୀର ।
କାଳେ ପୁଣି ଯେ ସେହୁ ହୁଏ ଗର୍ଭବତୀ
ଦିନୁଁ ଦିନୁଁ ସ୍ୱାମୀରେ ହୁଏ ସେ ଭକତି ।
ନାନାଦି ଦ୍ରବ୍ୟମାନ ସ୍ୱାମୀ ଆଣିଦିଏ
ଦଶମାସ ଉତ୍ତାରୁ ଗର୍ଭ ପ୍ରସବଏ ।
କ୍ଷୀରପାନ ଯହୁଁ ପୁତ୍ରର ମୁଖେ ଦ୍ୟନ୍ତି
ନାନା ବିନୋଦ କରି ସେ ପୁତ୍ରକୁ ଧରନ୍ତି ।
ସ୍ୱାମୀକୁ ପିଠି କରି ପୁତ୍ରକୁ କୋଳରେ ଶୁଆନ୍ତି
ପୁତ୍ରକୁ ଦେଖିଣ ସ୍ୱାମୀ ସ୍ନେହକୁ ଛାଡନ୍ତି ।
ଅନେକ କଷ୍ଟ ଯେ ସହନ୍ତି ପୁତ୍ର ପାଇଁ
ସେ ପୁତ୍ର ତାହାକୁ ପରମ ସୁଖ ହୋଇ ।
ନାନାଦ୍ରବ୍ୟ ଖୁଆଇ ବିଦ୍ୟା ସେ ପଢ଼ାନ୍ତି
ସେ ପୁତ୍ରକୁ କାଳେ ପୁଣ ଯୁବତୀ ପରାପତି ।
ଏସନକ ହୋଇଣ ସଂସାର ଆତଯାତ
ପୁରାଣ କଥାମାନ କହନ୍ତି ତପୋବନ୍ତ ।
ଆବର କହିଲେ ଅନେକମତେ ତତ୍ତ୍ୱ
ଶୁଣ ରାମ ଏହିପରି ସଂସାର ବିହିତ ।
ତହିଁକି ଶୋକ କଲେ ହେବ ଆଉ କିସ
ସ୍ୱଭାବରେ ପିତାରତ ବୃଦ୍ଧ ଯେ ବୟସ ।

ରାମଚନ୍ଦ୍ର ବୋଲନ୍ତି ବଶିଷ୍ଠ ମୁନି ଶୁଣ
ଏ ଯୁଗେ ଦଶସହସ୍ର ପରମାୟୁ ଜାଣ
ଦଶରଥଙ୍କୁ ତ ନବସହସ୍ର ଦୁଇ ମାସ
ଏଥିରେ ଦଇବ କିମ୍ପା କଲା ଏ ଭବିଷ୍ୟ ।
ଜନ୍ତୁପତି ନେଲା କି ଦଇବ ନେଲା ହରି
ଜାଣିବା ସେମାନେ କେଡ଼େ ବଳକାରୀ ।
ଅସୁରମାନଙ୍କର ନ ହରନ୍ତି ପ୍ରାଣ
ଦୁଷ୍ଟଲୋକ ପାଶରେ ନୁହନ୍ତି ସେ ଟାଣ ।
ସନ୍ଥଲୋକଙ୍କ ପାଶେ ସମସ୍ତଙ୍କ ବଳ
ଦେଖିବା କେମନ୍ତେ ସେ ସ୍ୱର୍ଗର ସମାଚାର ।
ଏତେ ବୋଲି ଶ୍ରୀରାମ ଧଇଲେ ଧନୁ କରେ
ଦୁଇସହସ୍ର ବାଣ ବିନ୍ଧିଲେ ଏକାବେଳେ ।
ବୋଇଲେ ଦୁଇଶ ହସ୍ତ ଏକଆଡ଼େ ଯିବ
ଯମ ଦଇବଙ୍କୁ ଯେ ଘେନିଣ ଆସିବ ।
ନ ଆସିଲେ ଆଣିବ ବଳାତ୍କାର କରି
ପଚାରିବା କିମ୍ପା ନେଲେ ପିତାଙ୍କୁ ମୋହରି ।
ଏତେ କହି ବିଷ୍ଣୁ ଶରକୁ ଚାଳିଦେଲେ
ଗର୍ଜ୍ଜନ କରି ଶର ଶୀଘ୍ର ଚଳିଗଲେ ।
ସ୍ୱର୍ଗ ମର୍ତ୍ତ୍ୟ କମ୍ପିଲା କମ୍ପିଲା ପାତାଳ
ନାଗଲୋକ ଚମକି ପଡ଼ିଲେ ରସାତଳ ।
ଅଯୋଧ୍ୟାରୁ ଯେତେକ ଲୋକ ଯାଇଥିଲେ
ବାଣର ତ୍ରାସରେ ସମସ୍ତେ ମୋହ ଗଲେ ।
ଗଜ ଅଶ୍ୱ ସାରଥି ନରନାରୀ ବଳ
ଢଳିଣ ପଡ଼ିଲେ ସମସ୍ତେ ଭୂତଳ ।
ନିଶବଦ ହେଲା ସେ ଚିତ୍ରକୂଟ ବନ
ମାତାଗଣ ସମସ୍ତେ ମୋହହେଲେ ଜାଣ ।
ସ୍ୱର୍ଗର ଦେବତାମାନେ ମୂର୍ଚ୍ଛାରେ ଢଳିଲେ
ସାତ ପାଞ୍ଚ ହୋଇଣ ବିଚାର ପୁଣ କଲେ ।
ଦେବତା ଏ ବୋଇଲେ ହୋଇଲା ପୁଣ ଘାଟ
ଶ୍ରୀରାମଙ୍କ ବାଣ ଯେ କଲା ଚମକିତ ।
ସକଳ ଦେବେ ମିଳି ବ୍ରହ୍ମାଙ୍କ ପୁରେ ଗଲେ
ସାବିତ୍ରୀଙ୍କର ପୁରେ ପ୍ରବେଶ ହୋଇଲେ ।
ଏହି ସମୟରେ ବାଣ ହୋଇଲା ପ୍ରବେଶ
ବୋଇଲେ ବିଧାତା ହେ ରାମପାଶେ ଆସ ।
ବିଧାତା ଉଠିଲେ ସର୍ବ ଦେବତାଙ୍କୁ ଘେନି
ପ୍ରବେଶ ହୋଇଲେ ଚିତ୍ରକୂଟେ ପୁଣି ।
ଯମ ପାଶେ ପ୍ରବେଶ ହୋଇ ସେ ଶର
ଦେଖିକରି ଯମରାଜା ଯୋଡ଼େ ବେନିକର ।
ବିଷ୍ଣୁଶର ବୋଇଲେ ଜୀବନେ ଆଶା ଯେବେ
ଦଶରଥଙ୍କୁ ଘେନି ଚଳ ତୁହି ବେଗେ ।
ନୋହିଲେ ତୋହର ପ୍ରାଣ ଘେନିକରି ଯିବି
ଶୁଣିକରି ଜନ୍ତୁପତି ସଜ ହେଲେ ବେଗି ।
ଏଥୁଅନନ୍ତରେ ବଶିଷ୍ଠ ଯେ କହି
ସମସ୍ତେ ମୋହ ହେଲେ ଶୁଣ ରାମ ତୁହି ।
ଅଚେତା ହୋଇ ସର୍ବେ ମୋହେ ନିଦ୍ରାଗଲେ
ଅଯୋଧ୍ୟାରୁ ଆସି ଚିତ୍ରକୂଟେ ପ୍ରାଣଦେଲେ ।
ବୋଇଲେ ଯେ ତିନିପୁର ଲୋକଙ୍କର ଚେତା
ଚିତ୍ରକୂଟେ ନରନାରୀ ହୋଇଲେ ଅଚେତା ।
ଗୁହ୍ୟ ଶବର ବୋଇଲା ହେଲା କିସ
ବାମଦେବ ବୋଇଲେ ରାମବାଣ କଲା ତ୍ରାସ ।
ପିତା ମରିବାରୁ ରାମ କ୍ରୋଧମନ ହେଲା
ଯମବିଧାତାଙ୍କୁ ଆଣିବାକୁ ଶର ଗଲା ।
ମଇଁଷି ବାହନେ ଯମ କରଇ ଗମନ
ଆଗରେ ଦଶରଥ ଚଢ଼ିଣ ବିମାନ ।
ପ୍ରବେଶ ହେଲେ ଯାଇ ଚିତ୍ରକୂଟ ଗିରି
ସକଳ ଦେବତାଏ ସେ ସ୍ଥାନରେ ମିଳି ।
ହଂସ ବାହନ ଚଢ଼ି ଦଇବ୍ ଆସିଲେ
ଦୁଇଶର ଯାଇ ରାମ ଚରଣେ ନମିଲେ ।
ଆସିଲି ମୁଁ ସକଳ ଦେବଗଣ ଘେନି
ଶୁଣିଣ ହରଷ ହେଲେ ରଘୁମଣି ।
ବିଧାତାଙ୍କୁ ନମସ୍କାର ହେଲେ ଦାଶରଥି
ଦେବତାମାନଙ୍କର ଚରଣେ କଲେ ସ୍ତୁତି ।
ବଶିଷ୍ଠ ବାମଦେବ ଜାବାଳୀ କଶ୍ୟପ
ବିଧାତାଙ୍କ ଚରଣେ କରିଲେ ପ୍ରଣାମ ।
ଭରତ ଶତ୍ରୁଘନ ଲକ୍ଷ୍ମଣ ଯେ ବୀର
ସମସ୍ତେ ନମିଲେ ବିଧାତାଙ୍କ ପୟର ।
ମାତାଗଣ ସହିତେ ସକଳ ନରନାରୀ
ସ୍ୱର୍ଗର ଦେବତାଙ୍କୁ ଦେଖି ମାନ୍ୟ କରି ।
ଶ୍ରୀରାମ ବୋଇଲେ ଶୁଣ ବେଦବର
ବନ ମୋତେ ପେଷ ନାଶିଲ ପିଅର ।
ଅନେକ ଅଧର୍ମ ଦେବତା ତୁମ୍ଭେ ଜାଣ
ଅସୁରଙ୍କୁ ଦେଖିଲେ ଡର କିମ୍ପା ପୁଣ ।

ବିଧାତା ବୋଇଲେ ତୁମ୍ଭ କର୍ମରେ ଯା ଅଛି
ଚଉଦବରଷ ତୁମ୍ଭେ ହେବ ବନବାସୀ ।
ପିତା ତୁମ୍ଭର ମଲେ ଆପଣେ ସତ୍ୟକରି
ଅନ୍ଧର ପୁତ୍ରକୁ ସେ ସମୟେ ଥିଲେ ମାରି ।
ତାର ପିତା ରାଜାଙ୍କୁ ଶାପ ଦେଇଥିଲା
ପୁତ୍ର ନ ଥିବାବେଳେ ମରିବୁ ବୋଇଲା ।
ସେ କଥାକୁ ପିତା ତୋର ମନରୁ ପାସୋରିଲା
ବନକୁ ତୁମ୍ଭଙ୍କୁ ପେଷି ମନରେ ବାଞ୍ଛାକଲା ।
ଶ୍ରୀରାମ ଯିବାର ବାରଦିନେ ମୋର ମୃତ୍ୟୁ
ଏତେବୋଲି ରାଜନ ମନରେ କଲା ତତ୍ତ୍ୱ ।
ସେ କଥା ଜାଣି ଆମ୍ଭେ ନାରଦ ଭେଦିଦେଲୁ
ପିତାଙ୍କୁ କହିଣ ଦାନ ପୁଣ୍ୟ କରାଇଲୁଁ ।
ବଇଶାଖ ଦଶମୀ ଗୁରୁବାର ଦିନ
ତୁମ୍ଭ ପିତା ସ୍ୱର୍ଗକୁ କଲେକ ଗମନ ।
ତୁମ୍ଭେ ବନକୁ ଗଲ ପିତା ହେଲେ ନାଶ
ତୁମ୍ଭ ଭାଇ ଭରତ ଯେ ନୋହିଲେ ନରେଶ ।
ଆହୁରି କଥାଏ ଶୁଣିବା ଶ୍ରୀରାମ
ବରଷେ ପାଞ୍ଚମାସ ଅଜ୍ଞାନ ହେବ ଜାଣ ।
ବତିଶ ବରଷେ ଅଯୋଧ୍ୟାରେ ରାଜା ହେବ
ଏଗାର ସହସ୍ର ବର୍ଷ ଭୋଗ ଯେ କରିବ ।
ତୁମ୍ଭଙ୍କୁ ତିନିଭାଇ ସେବାକରିବେ ସହସ୍ର ବରଷ
ସେଠାରୁ ଚାରିଦିଗେ ହୋଇବେ ନରେଶ ।
ଅଯୋଧ୍ୟାରେ ସକଳ ଲୋକଙ୍କୁ କହ ଯାଇ
ଦଶରଥ ରାଜା ଯେ ଅଛନ୍ତି ଉଭାହୋଇ ।
ଦେଖନ୍ତୁ ସର୍ବଲୋକ ତୁମ୍ଭର ପିତାଙ୍କୁ
ଜନନୀମାନେ ଦେଖନ୍ତୁ ତାଙ୍କର ଭର୍ତ୍ତାଙ୍କୁ
ଶ୍ୱଶୁରଙ୍କୁ ବଧୂମାନେ କରନ୍ତୁ ଦର୍ଶନ
ଚାରିଭାଇ ତୁମ୍ଭେ ପିତାଙ୍କୁ ଦେଖ ପୁଣ ।
ବିଧାତା କହିବାରୁ ଦଶରଥ ହେଲେ ଉଭା
ସମସ୍ତଙ୍କୁ ଦଶରଥ ଦିଶିଲେକ ଶୋଭା ।
ରାଣୀମାନେ ବୋଇଲେ ଆମ୍ଭଙ୍କୁ ସଙ୍ଗେ ନିଅ
ବଧୂମାନେ ବୋଇଲେ ଅଭୟ ବର ଦିଅ ।
ଅଯୋଧ୍ୟା ଲୋକେ ବୋଇଲେରାମଙ୍କୁ ରାଜାକର
ବିଧାତା ବୋଇଲେ ନୁହେ ଏମନ୍ତ ବେଭାର
ରାଣୀମାନଙ୍କୁ ଯେ ଦଇବ ଆଜ୍ଞାଦେଲେ
ନବସହସ୍ର ବରଷ ବଞ୍ଚିବ ତୁମ୍ଭେ ଭଲେ ।
ତେବେ ତୁମ୍ଭେମାନେ ସ୍ୱର୍ଗପୁରେ ଯିବ
ବଧୂମାନଙ୍କର ଦୁଇ ଦୁଇ ପୁଅ ହେବ ।
ଚଉଦ ବରଷ ରହିବେ ରାମ ବନେ
ତୁମ୍ଭେ ଚଳ ଯେ ଅଯୋଧ୍ୟା ଭୁବନେ ।
ରାମ ବୋଇଲେ ମୋତେ କହନ୍ତୁ ଆପଣ
ପିତା ମୋହର କିମ୍ପା ନଗଲେ ସ୍ୱର୍ଗେ ପୁଣ
ଯମଙ୍କର ଭୁବନେ ମୋର ପିତା ଛନ୍ତି
ଏହି କଥାଗୋଟି କହ ବେଦପତି ।
ଯମ ବୋଇଲେ ତୋର ପିତୃ ସଙ୍ଗ ନାହିଁ
ପିତୃ କେଣେ ହେବେ ତୋହର ପିଣ୍ଡ ନାହିଁ
ଗଙ୍ଗାରେ ପିଣ୍ଡଦେଲେ ପିତୃଙ୍କ ସଙ୍ଗ ହେବ
ତେବେ ସେ ମୋର ପୁରୁ ବେଗେ ଚଳିଯିବ
ମାସେ ପାଞ୍ଚଦିନରେ ତୁ ପାଇଲୁ ବାରତା
ଆଶ୍ୱିନ ମାସରେ ପିଣ୍ଡ ଦେବୁ ପୁଣ୍ୟଜ୍ଞାତା ।
ଏତେ କହିଣ ଦେବତାଗଣ ଚଳିଗଲେ
ଯାଇଣ ଯେ ଯାହା ରାଜ୍ୟରେ ମିଳିଲେ ।
ଶୁଣିଲୁଟି କି ଗୋ ତ୍ରୈଲୋକ୍ୟ ଦେବୀ ତୁହି
ଚିତ୍ରକୂଟରେ ଯାହା କଲେ ରଘୁସାଇଁ ।
ଶୁଣିକରି ରାମ ମନୁଁ ହୁଡ଼ିଲେ ସନ୍ତାପ
ଅଚଳରେ ଶ୍ରୀରାମ ପୋଛିଲେ ଲୋତକ ।
କେ ଅବା ତାହାଙ୍କୁ ଦେଲା ମୁଖ ଅଗ୍ନି
କେତେଦିନେ ଭରତ ଅଯୋଧ୍ୟାକୁ ଅଇଲେ ଜାଣି
କିସ କିସ ଦାନ ସେ କିସ ଶୁଣ୍ୟ କଲେ
କିସ ବିଚାରିଣ ସେ ଏଠାକୁ ଅଇଲେ ।
ଏଥୁଅନନ୍ତରେ ଶୁଣ ଭଗବତୀ
ବଶିଷ୍ଠ ମୁନିଙ୍କୁ ରାମ ସନ୍ତୋଷେ ପଚାରନ୍ତି ।
ଦେବତାଏ କହି ଯିବାରୁ ହୋଇଲେ ସନ୍ତୋଷ
ଦଶରଥଙ୍କୁ ଦେଖିଣ ମନରେ ହରଷ ।
ଶୋକଜଳରୁ ଯେ ସମସ୍ତେ ନିବର୍ତ୍ତିଲେ
ଶ୍ରୀରାମଙ୍କୁ ମୁଖରୁ ମଧୁର ବଚନ ଶୁଣିଲେ ।
ରାମ ବୋଲନ୍ତି ଋଷି ହେଲା ବିପରୀତ
ଭରତ ଶତ୍ରୁଘନ କିମ୍ପାଇ ବିହ୍ୱଳିତ ।
ମୁଣ୍ଡରେ ବେନିଭାଇ ବାନ୍ଧିଲେ କିମ୍ପାଜଟ
ସକଳ ପରିହରଣ କପାଳେ ଭସ୍ମଶ୍ରେଷ୍ଟ ।
ଏମନ୍ତ ବେଶ ହେଲେ କି ରାଜ୍ୟ ରଖି ପାରି
ତୁମ୍ଭେ ଥିଲ ମନ୍ତ୍ରୀଗଣ ଏକଥା ନବିଚାରି ।

ପିତାମାତାଙ୍କ ସତ୍ୟରେ ପାଳିବେ ମେଦିନୀ
କେବଣ କରଣରେ ହେଲେ ତପୋଧନୀ ।
ରାଜ୍ୟ ରଖୁ ଯାଇଣ ନିଜ ଭୁଜବଳେ
ବଇରୀ ଖଟିବେ ତାର ଆସ୍ଥାନର ତଳେ ।
ପରଜାଙ୍କୁ ପାଳୁ ସେ ପୁତ୍ର ସମକରି
ତାହା ଛାଡି କିମ୍ପା ବନକୁ ଅପହରି ।
ତୁମ୍ଭେ ନ ତିଆରି କିମ୍ପା ମନ୍ତ୍ରୀଗଣମାନେ
ଏକି ନଜାଣଇ ଅଟଇ କେଡ଼େ ସାନେ ।
ଆମ୍ଭ ଉପରବଂଶେ ମାନଧାତା ଥିଲେ
ପେଟ ଚିରା ହେବାରୁ ସେ ବାହାର ହୋଇଲେ
ଏଗାର ଦିନରେ ସେ ହୋଇଲେ ନୃପତି
ନବଖଣ୍ଡ ମେଦିନୀରେ ହେଲେ ଚକ୍ରବର୍ତ୍ତୀ ।
ତିନିଲକ୍ଷ ବରଷ ମର୍ତ୍ତ୍ୟରେ ରାଜା ହେଲେ
ଲକ୍ଷେ ନୃପତିଙ୍କି ଚରଣେ ଖଟାଇଲେ ।
ସହସ୍ରେ ବରଷ ଦେବଙ୍କ ସଙ୍ଗେ ଯୁଝି
ଭଣ୍ଡାର ଯୁରକଲେ ଇନ୍ଦ୍ରକୁ ସେ ଗଞ୍ଜି ।
ସୂର୍ଯ୍ୟବଂଶକୁ ଦେବେ ସନ୍ତୋଷ ହୋଇଲେ
ଅସୁରେ ଡରିଣ ଅଯୋଧ୍ୟା ନ ଆସିଲେ ।
ପିତା ଦଶରଥ ଯମକୁ ଥିଲେ ଜିଣି
ସେଦିନ ସାରଥି ଥିଲେ କଇକୟା ରାଣୀ ।
ଏତେ ବୋଲି ରାମ ଭ୍ରତକୁ ଚାହାଁନ୍ତି
ତି କିମ୍ପା ଏଥକୁ ଆସିଲୁ ବୋଲନ୍ତି ।
ନିଜରାଜ୍ୟ ରଖିଲେ ସକଳ ଧର୍ମ ପାଇ
ବେଗେ ବାହୁଡ଼ି ଯାଅସିରେ ଭାଇ ।
ଧର୍ମରେ ପାଳିବୁ ରାଜ୍ୟ ଶୁଣିବୁ ଗୁହାରି
ଏତେବୋଗେ ରାମ ଭ୍ରତକୁ ତିଆରି ।
ଅନ୍ତଃପୁରେ ପ୍ରତିଦିନ ସଙ୍ଖୋଳିବୁ ତୁଟି
ମନ୍ତ୍ରୀଙ୍କ ସଙ୍ଗରେ କରିବୁ ପ୍ରୀତିଟି ।
ପୁରାଣକଥା ବଶିଷ୍ଠେ ଶୁଣାଇବେ ନିତି
ଅଗ୍ନିଙ୍କର ମୁଖରେ ଦେବୁ ଯେ ଆହୁତି ।
ଧର୍ମକଥାମାନ ତୁ ଶୁଣୁଥିବୁ ନିତି
ଭକତି କରିଥିବୁ ଗୁରୁଜନ ପ୍ରତି ।
ଅନ୍ନଛତ୍ର ପାଣିଛତ୍ର ନିତି ଦେଉଥିବୁ
ଧର୍ମଶାସ୍ତ୍ର ଶୁଣିଣ ପ୍ରମାଣ ବିଚାରିବୁ ।
ବିଷୋଇଙ୍କୁ ପୋଷିବୁ ଅନ୍ନଜଳ ଦେଇ
ଅଯୋଧ୍ୟା ରାଜ୍ୟରେ ଥିବୁ ସକଳ ଭିଆଇ ।

ଇନ୍ଦ୍ର ବୃଷ୍ଟିକଲେ କୃଷି ଉପୁଜେ ଯେମନ୍ତେ
ସେହିପରି ଉପାୟ କରିବୁରେ ଭ୍ରାତେ ।
ବୋଲକରା ଲୋକଙ୍କୁ ପାଖରେ ରଖିବୁ
ଦରିଦ୍ର ଦେଖିଲେ ଧନବସ୍ତ୍ର ଦେବୁ ।
ପଥଶାନ୍ତ ଲୋକ ଯେହ୍ନେ ଦୁଃଖ ନ ପାଇବେ
ବଜାରୀ ହଟାରୀ ନିତ୍ୟ ପସରାକୁ ଦେବେ ।
ଅପନ୍ତରା ବାଟରେ ବୃକ୍ଷ ଲଗାଇବୁ
ଖାଲଖଣା ବାଟରେ ଶଙ୍ଖ ବନ୍ଧାଇବୁ ।
ପଣ୍ଡିତଜନଙ୍କୁ ସଦଭାବରେ କହିବୁ
ଦୁଷ୍ଟଜନମାନଙ୍କୁ ଆକର୍ଷି ପୀଡ଼ା ଦେବୁ ।
ବଶିଷ୍ଠ ଥିବେ ନିତି ତୋହର ଯେ କତି
ସେ ତୋତେ ଧର୍ମକଥା ବୁଝାଇବେ ନିତି ।
ପୃଥିବୀ ପାଳିବାର ସମସ୍ତେ କହିବେ
କାହାରି ମନରେ ନିରାଶ ନକରିବେ ।
ଏକଥା ଶୁଣି ଭ୍ରତ ତବଦ ହୋଇଛି
ବଶିଷ୍ଠଙ୍କୁ ଚାହିଁଣ ରାମଚନ୍ଦ୍ର ପୁଛି ।
ଭୋ ଦେବ ବଶିଷ୍ଠ ମୁହିଁ ସ୍ନାହାନ କରିବି
ପିତା ମୃତ୍ୟୁବାର୍ତ୍ତା ଶୁଣିଲି ପାଳିବି ।
ଆସ ଆସ ମୁନି ହେ ମନ୍ଦାଗ୍ନିକି ଯିବା
ସ୍ନାହାନ ଶଉଚ ସାରି ତର୍ପଣ କରିବା ।
ବଶିଷ୍ଠ କହିଲେ କହିଲ ଯୁକତ
ଶୁଣିବାରୁ ବୁଡଦେବା ସେ କଥା ବିହିତ ।
ବତିଶ ଦିବସ ହେଲା ରାଜା ନାଶଗଲା
ପ୍ରୟାଗ ଆସନ୍ତେ ତିନିଦିନ ହେଲା ।
ମାସିକିଆ ପିଣ୍ଡ ଭ୍ରତ ପ୍ରୟାଗରେ ଦେଲା
ଏବେ ତିନିଦିନ ଯେ ଆହାର ନ କଲା ।
ତୁମ୍ଭଙ୍କୁ ନେବାକୁ ତାହାର ବଡ଼ ଆଶ
ଜ୍ୟେଷ୍ଠ ତୁମ୍ଭେ ହେ ଜାନକୀ ବିଳାସ ।
ସ୍ନାନ କରିବାକୁ ରାମଚନ୍ଦ୍ର ଚଳିଯାନ୍ତି
ମନ୍ଦାଗ୍ନି କୂଳରେ ଯାଇଣ ହୁଅନ୍ତି ।
ଜାନକୀଙ୍କି ଘେନିଣ ଚଳିଲେ ଲକ୍ଷ୍ମଣ
ସୀତାଙ୍କ ପାଦତଳେ ଭ୍ରତ ପଡେ ପୁଣ ।
ନିରାଶ ନକର ତୁମ୍ଭେ ଜନକ ଦୁହିତା
ସ୍ୱାମୀଙ୍କି ଘେନି ଯିବାର ଅଟେ ଭଲକଥା ।
ଶୁଣିକରି ଜାନକୀ ବୋଲନ୍ତି ତୁମ୍ଭେ ଶୁଣ
ସ୍ୱାମୀ ମୋର ଯେଣେ ଯିବେ ମୁହିଁ ଯିବି ଜାଣ

ଶ୍ରୀରାମ ଲକ୍ଷ୍ମଣ ଜାନକୀ ତିନିଜଣ
ଜଳରେ ପଶିଣ କରନ୍ତି ସ୍ନାହାନ ।
ଗୋତ୍ରକୁ ଉଚ୍ଚାରିଲେ ବଶିଷ୍ଠମହାମୁନି
କୁଶ ଜଳ ତିଳ ଆପଣେ କରେ ଘେନି ।
ରାମଙ୍କ ହସ୍ତକୁ ବଢ଼ାଇଣ ଦେଲେ
ଦେଶ କାଳ ବାକ୍ୟ ଗୋତ୍ର ବଶିଷ୍ଠ ଉଚ୍ଚାରିଲେ ।
ତର୍ପଣ ସାରିଣ କୂଳରେ ଉଭାହୋନ୍ତି
ଅମଳାଣ ବସ୍ତ୍ର ପିନ୍ଧି ଶ୍ରୀରାମ ବସନ୍ତି ।
ତିଳ ଗୁଡ଼ାଏ ଯେ ପୁଇଁଚାନ୍ଦିଆ ଫଳ
ଗୋଳିକରି ପିଣ୍ଡଦେଲେ ଉକଶଲ୍ୟା ବାଳ ।
ଲକ୍ଷ୍ମଣ ସବୁ ପଦାର୍ଥ ଦିଅନ୍ତି ବଢ଼ାଇ
ପିଣ୍ଡ ଟୋଳି ଜାନକୀ ଜଳରେ ମେଳିଦେଇ ।
ଯହୁଁ ଦଶରଥଙ୍କୁ ରାମ ଛତୁପିଣ୍ଡ ଦେଲେ
ତତକ୍ଷଣେ ଦଶରଥ କୃତାର୍ଥ ଲଭିଲେ ।
ସଞ୍ଜୀବନୀ ପୁରରୁ ଅଇଲେ ନରସାଇଁ
ଦେବତାଙ୍କ ମଧରେ ବସିଲେ ସେ ଯାଇ ।
ଗଉରବ କରିଲେ ଶଚୀଦେବୀ ନାଥ
ସ୍ନାନ ସାରିଣ ରାମ ଚଳିଲେ ତ୍ୱରିତ ।
ମଢ଼ିଆ ଦୁଆରେ ପ୍ରବେଶ ହୋଇଲେ
କେଣେ ଛାଡ଼ିଗଲ ପିତା ବୋଲିଣ ବୋଇଲେ ।
ବଶିଷ୍ଠ ବୋଇଲେ ରାମଚନ୍ଦ୍ର ଶୁଣ
ଆସିଅଛନ୍ତି ଦେଖ ତୁମ ମାତାଗଣ ।
ତିନିଶ ମାତା ସହିତେ ଧାଈ ପରିବାରୀ
ତୁମ୍ଭ ସାନ ବୋହୂମାନେ ସଙ୍ଗରେ ତାଙ୍କରି
ରାଜ୍ୟରେ ଲୋକ ତୋର ଛବିଶ୍ୱା ରହିଲେ
ଦଶବିଶ୍ୱା ଲୋକ ତୋର ଦର୍ଶନେ ଅଇଲେ ।
ପାଞ୍ଚସହ ମାତା ଘେନି ରହିଲେ ଲୀଳାବତୀ
ରାଜ୍ୟ ସମ୍ଭାଳିଣ ସେ ଚତୁରୀ ଯୁବତୀ ।
ପୁରୁଷ ବେଶ ଧରିଣ ଧନୁ ଖଣ୍ଡା ଧରେ
ଜୟ ପତାକା ସେ ଉଡ଼ାଏ ରାଜ୍ୟରେ ।
ଶୁଣିକରି ରାମ ଯେ ନମସ୍କାର କଲେ
ମୋହର ଜନନୀ ସେ ବୋଲିଣ ବୋଇଲେ ।
ଅସମୟ କାଳରେ ଦେଲେ ସେ ଦୟ ପୁଣି
ଗଉରରାଜାର ସେ ଅଟନ୍ତି ଦୁଲଣୀ ।
ସୁମନ୍ତ୍ରଙ୍କୁ ଭାଳିଣ ତାଙ୍କୁ ରାଜ୍ୟଚିନ୍ତା
ଦଶରଥଠାରୁ ସେ ହେଲେ ବଳବନ୍ତା ।
ସୈନ୍ୟବଳ ସହିତେ ଅଛନ୍ତି ନରନାରୀ
ଚିତ୍ରକୂଟ ତଳରେ ଅଛନ୍ତି ବିଜେ କରି ।
ଆଜ୍ଞାଦେଲେ ପୁଣି ସେ ଏଠାକୁ ଆସନ୍ତୁ
ତୁମ୍ଭର ଶ୍ରୀମୁଖକୁ ଦର୍ଶନ କରନ୍ତୁ ।
ଶ୍ରୀରାମ ବୋଇଲେ ମୁନି ଡକାଇ ଆଣ ଯାଇ
ଶୁଣିକରି ସୁମନ୍ତ୍ର ଗଲେ ବେଗ ହୋଇ ।
କଇକୟା କଉଶଲ୍ୟା ସୁମିତ୍ରା ବେଗେ ଆସ
ଦଶରଥ ରାଜାଙ୍କର ଯେତେ ରାଣୀହଂସ ।
ନଗ୍ରର ନରନାରୀ ଆସନ୍ତୁ ସକଳ
ରାଉତ ମାହୁନ୍ତ ଯେ ରଥୀ ପଏକାର ।
ହାଟୁଆ ବାଟୁଆ ବଜାରୀ ବଣିଜାର
ମିଶାମିଶି ହୋଇ ଲୋକ ଅଛନ୍ତି ଅପାର ।
ଶ୍ରୀରାମ ଆଜ୍ଞାଦେଲେ ଆସ ହେ ସମସ୍ତେ
ଅନେକ ଡିଆରନ୍ତେ ବଶିଷ୍ଠ ତପୋବନ୍ତେ ।
ସୁସ୍ଥ ହୋଇଣ ରାମ ଆସନ୍ତୁ ବୋଇଲେ
ଶୁଣିଣ ଆନନ୍ଦ କୌଶଲ୍ୟାକୈକୟା ହୋଇଲେ
ସୁମିତ୍ରା ସହିତରେ ଯେତେ ନାରୀଗଣ
ଆନନ୍ଦେ ଉଲ୍ଲସଇ ସବୁରି ମନ ପୁଣ ।
ସୀତାଙ୍କର ସାନ ତିନି ଯେ ଭଉଣୀ
ଆନନ୍ଦ ହେଲେ ସର୍ବେ ଶ୍ରୀରାମ ଆଜ୍ଞା ଶୁଣି ।
ଧାଈ ପରିବାରୀ ଯେ ଝଡ଼ା ମୃଦୁସୁଲୀ
ଆନନ୍ଦ ହୋଇ ଏକକୁ ଆରେକ ପଚାରି ।
ଲୋକଙ୍କୁ ପଛକରି ହେଲେ ଆଗୁଁ ସାର
କହନ୍ତି ସଦାଶିବ ପାର୍ବତୀ ଆଗର ।
ଶୁଣ ଗୋ ଭଗବତୀ ପଚାରିଲ ଯାହା
ଅନ୍ତର୍ଗତେ ମାୟାଟି ନାହିଁ ରଘୁନାହା ।
ସରସବଚନ ଶୁଣି ଆନନ୍ଦ ସର୍ବମତି
ଏକକୁ ପଛକରି ଆରେକ ଆଗେ ହୋନ୍ତି ।
ମନ୍ଦାକିନୀ ନଦୀକୂଳରେ ଯାଇଣ ମିଳନ୍ତି
ଏଥୁଅନନ୍ତରେ ଶୁଣ ଦିବ୍ୟରୀତି ।
ଶ୍ରୀରାମଚନ୍ଦ୍ର ଯେବଣଠାରେ ପିଣ୍ଡଦେଲେ
ସେ ସଞ୍ଚାମାନ ସବୁ କୌଶଲ୍ୟା ଦେଖିଲେ ।
ଆତଯାତ ହୁଅନ୍ତେ ଯେ ପଡ଼ିଅଛି ପାଦ
ଦେଖିକରି ସର୍ବେ ହୋଇଲେ ବିଷାଦ ।
କଉଶଲ୍ୟା ନୟନରୁ ବହେ ଅଶ୍ରୁଜଳ
ଶିରରେ କରମାରି ହୋଇଲେ ବିକଳ ।

ଆହେ ସ୍ୱାମୀ ତୁମ୍ଭେ ଏହାତ ଅର୍ଜିଲ
ଶ୍ରୀରାମ ହସ୍ତରୁ ଛତୁପିଣ୍ଡକୁ ଭୁଞ୍ଜିଲ ।
ମହାହୃଷ୍ଟ ହୋଇଣ ସେଠାରୁ ଚଳିଗଲେ
ଶ୍ରୀରାମ ସାନ୍ନିଧିରେ ପ୍ରବେଶ ହୋଇଲେ ।
ମାତାଗଣମାନଙ୍କୁ ଦେଖିଣ ରଘୁପତି
ଲୋଚନ ଥନଥନ କରିଣ ଆସନ୍ତି ।
କଉଶଲ୍ୟା ଚରଣରେ ଶ୍ରୀଅଙ୍ଗ ଲୋଟାଇ
ଶ୍ରୀରାମ ଲେଟନ୍ତି ଯେ ବିନୟ ମତହୋଇ ।
ସେଠାରୁ ଉଠି ରାମ କୈକେୟୀ ପୟରେ
ନମସ୍କାର କରିଣ ସ୍ତୁତିରେ ଭୂମିରେ ।
ସୁମିତ୍ରାଙ୍କ ଚରଣେ ନମିଲେ ପୁଣ ଯାଇ
ଆବର ମାତାମାନଙ୍କ ଓଳଗ ସେ ହୋଇ ।
ଲକ୍ଷ୍ମଣ ଯାଇଣ ଓଳଗ ପୁଣ ହେଲେ
ଶାଶୁଙ୍କୁ ବଇଦେହୀ ପ୍ରଣିପାତ ହେଲେ ।
ସମସ୍ତ ଶାଶୁମାନଙ୍କୁ ପୁଣ ଓଳଗିଲେ
କନିଷ୍ଠା ତିନିଭଗ୍ନି ଓଳଗ ହୋଇଲେ ।
ନଗ୍ର ନର ନାରୀ ଆନନ୍ଦ ହୁଅନ୍ତି
ଶ୍ରୀରାମ ଲକ୍ଷ୍ମଣ ସୀତାଙ୍କୁ ଦେଖନ୍ତି ।
ଗୁଣକୁ ସୁମରି କାନ୍ଦୁଛନ୍ତି ଲୋକେ
କେହୁ ବିଧାତାକୁ ସୁମରେ ଅତି ଦୁଃଖେ ।
ଲୋକେ ବୋଲନ୍ତି ଶ୍ରୀରାମ ଏ ଦୁଃଖ ପାଇଲ
ବୃକ୍ଷର ବକଳ ପରିହଣ କଲ ।
କନ୍ଦମୂଳ ଖାଇଣ ବନସ୍ତେ ଦିନହରି
କଉଶଲ୍ୟା ଶୋକ ଯେ କହିଲେ ନସରି ।
ଅନେକ ଶୋକକଲେ ରାମଙ୍କୁ କୋଳକରି
ଏତେ ଦୁଃଖରେ ରାମ ବନରେ ବିହରି ।
ତୁ ମୋର ରଘୁନାଥ ଅଟୁ ପ୍ରାଣସଖା
ଅରଣ୍ୟ ଭିତରେ ଦିନ ବଞ୍ଚିଲୁ ତୁ ଏକା ।
ଖଟ ପଲ୍ୟଙ୍କ ଛାଡ଼ି ଭୂମିରେ ଏବେ ଶୋଉ
ଶାଳୀ ଅନ୍ନ ପରସିଲେ କେତେ ବିମନ ହେଉ ।
ଷଡରସ ପ୍ରକାରେ ତୁ ତୀଅଣ ନଭୁଞ୍ଜୁ
ଅସୁଆଦ ହୋଇଛି ବୋଲି କେତେ ଗଞ୍ଜୁ ।
କ୍ଷୀରି ଖିରିସା ତୁ ଯାଚିଲେ ନଖାଉ
ଛେନା ଗୋଟିକା ସର ଚୋବାଇ ପକାଉ ।
ଅମୃତ ପାଣି କଦଳୀ ତୋତେ ନ ଯୋଗାଇ
ଚଳିହୋଇ ଉଠିଯାଉ କିଛିତ ନ ଖାଇ ।

ରାଜାଙ୍କର ଯୋଗାଣ ପଦାର୍ଥ ଯେତେ ଦ୍ରବ୍ୟ
ତାହା ଦେଲେ ତୋତେରେ ନରୁଚଇ ସର୍ବ ।
ଏ ଯେଉଁ ଲକ୍ଷ୍ମଣ ଅତି ସୁକୁମାର
ତୋର ସଙ୍ଗେ ଦୁଃଖ ଏ ପାଇଲା ଅପାର ।
ଏତେ ବୋଲି କଉଶଲ୍ୟା ଲକ୍ଷ୍ମଣଙ୍କୁ କୋଳେଧରି
ଅତି ଶୋକ କଲେ କହିତ ନପାରି ।
ଦଶରଥଙ୍କର ଯେତେକ ପାଟରାଣୀ
ପର୍ବତ ଶିଖରେ ବୋବାଳି କଲେ ପୁଣି ।
ଶୋକସମୁଦ୍ରେ ପର୍ବତ ପଡଇ ଉଛୁଳି
ରୋଦନ କରନ୍ତି ରାଣୀଗଣ ମିଳି ।
ବଶିଷ୍ଟ ଜାବାଳି ବାମଦେବ ମୁନି
କଶ୍ୟପ ସୁମନ୍ତ ଅମନାତ୍ୟ ଘେନି ।
ବିବିଧ ବଚନ କହି ପ୍ରବୋଧ କରନ୍ତି
ବଶିଷ୍ଟଙ୍କ ବଚନରେ ସର୍ବେ ହେଲେ ଶାନ୍ତି ।
କୈକେୟୀ ରାଣୀ ଯେ ହାଦୋଳାରୁ ଉଠିଗଲେ
ଜାନାକୀଙ୍କି କୋଳକରି ରୋଦନ ସେ କଲେ ।
ଦେଖ ଗୋ କୁଳବଧୂ ମୋର କର୍ମମନ୍ଦ
ବିହି ଦୂର୍ବଳରେ ମୁଁ ଭିଆଇଲି ଦ୍ୱନ୍ଦ ।
ସାତଶ ପଚାଶ ନାରୀ ରାଜାଙ୍କ ମନୋହରୀ
ବିହି ବିଧାତା ମୋତେ କଲେ ଏତେସରି ।
ପୁରୁଷ ହତ୍ୟା ଦୋଷ ମୋଠାରେ ପ୍ରବର୍ତ୍ତି
ମୋହର ସକାଶେ ନାଶ ହୋଇଲେ ନୃପତି ।
ମୋହର ସକାଶେ ପୁତ୍ରବଧୂ ବନ ଗଲେ
ମୋତେ ଯେ ନିନ୍ଦା ଏବେ କରନ୍ତି ସକଳେ ।
ଚାରିପୁତ୍ର ମୋରଠାରୁ ବିଶ୍ୱାସ ଛାଡିଲେ
ମୋତେ ସଙ୍ଗେ ନ ନେଇ ରାଜା ଚଳିଗଲେ ।
ସପତଣୀମାନେ ଯେ ମୋଠାରେ ହିଂସା ବହି
ଶୁଣିକରି ମୋତେ ସେ କଥାତ ନ କହି ।
କୁଳବଧୂମାନେ ମୋତେ ନୁହନ୍ତି ବିଶ୍ୱାସ
ଅନୁକ୍ଷଣେ ଚିନ୍ତାରେ ନଶତ ନିରାଶ ।
ଏତେବୋଲି ରୋଦନ କରନ୍ତି କୈକୟା
ଶୋକ ସମ୍ଭାଳ ବୋଲି ବୋଲନ୍ତି ରାମପ୍ରିୟା ।
ଚଉଦବରଷ ତୁମ୍ଭେ ହେବ ଚିନ୍ତାଅର୍ଥୀ
ଆମ୍ଭେ ବନବାସ ଗଲେ ହୋଇବ ଯେ ସୁଖୀ ।
ଚିନ୍ତା ନକର ତୁମ୍ଭେ ଧରୁଛି ଚରଣ
ଓଳଗନ୍ତି ପାଦରେ ଦଇନୀ କରି ପୁଣ ।

କୈକୟୀ ବୋଲନ୍ତି ଶୁଣ ଗୋ ମହିଥିଳୀ
ଅଯୋଧ୍ୟା ପୁରକୁ ଯିବା ଚାଲ ଫେରିକରି ।
ପାଟରେ ବସି ତୁହି ହେବୁ ପାଟରାଣୀ
ତେବେ ଶୋଭାପାଇବ ଅଯୋଧ୍ୟା ଧରଣୀ ।
ମୁହିଁ ଚାଣ୍ଡାଳୁଣୀ ହୀନ ବୁଦ୍ଧି କଲି
ସୁଯୋଗ ବେଳରେ ଦୁର୍ଯୋଗ ମନାସିଲି ।
କେଉଁ ଖଳ ବୁଦ୍ଧି ପଶିଲା ମୋର ଦେହେ
ଦେବତାମାନେ ଯେ ବିଚାର କରି କହେ ।
ଏତେକହି ରୋଦନ କଲେ ଭ୍ରତମାତା
ଶୁଣିଲେ ଶ୍ରୀରାମ ଜନନୀ ମନବ୍ୟଥା ।
କଉଶଲ୍ୟା କୋଳରୁ ଉଠିଲେ ବାସୁଦେବ
କୈକୟୀ ଜନନୀ ପାଶେ ପ୍ରବେଶ ହେଲେବେଗ
ଦେଖିଲେ ଶାଶୁବୋହୂ କରନ୍ତି ରୋଦନ
ନିବର୍ତ୍ତ କରାଇଲେ ଶ୍ରୀରଘୁନନ୍ଦନ ।
ବୋଇଲେ ଜନନୀ ଗୋ କିମ୍ପାଇଁ ଶୋକକରୁ
ଧର୍ମକଥା ତୁ ଗୋ କିମ୍ପା ନବିଚାରୁ ।
ଆଉ ସବୁକଥା କାଲି ପ୍ରାୟେ ଯିବ କେଣେ
ପିତାଙ୍କୁ ନ ଦେଖିବା ସାତ ଯେ ସ୍ୱପନେ ।
ଚଉଦ ବରଷ ତ କାଲି ପ୍ରାୟ ଯିବ
ପଛକଥାକୁ ଆଉ ଭାଳିଲେ କି ହେବ ।
ସବୁ ମାତାପରେ ମୋର ସାର ନୀଳାବତୀ
ଧନ୍ୟ ତାର ମାତା ପିତା ଧନ୍ୟ କାଶୀପୃଥ୍ୱୀ ।
ଧନ୍ୟ ସେ ଗଉରରାଜା ଧନ୍ୟ ତାର କୁଳ
ଧନ୍ୟ ଧନ୍ୟ ସେ ଜନନୀ ଧନ୍ୟ ପିତା ତାର ।
ଅସମୟ କାଳେ ଯେବେ ସେହି ସାହାହେଲେ
ରାଜବେଶ ଧରିଣ ରାଜ୍ୟ ରକ୍ଷାକଲେ ।
କି କହିବି ଦଶରଥଙ୍କ ଠାରୁ ତା ଶୁଣ ଅଧିକ
ତାଙ୍କ ପାଦେ ଶତେବାର ଲୁଲୁ ମୋର ମାଥ ।
ଏତେକହି ଶ୍ରୀରାମ ମାତାଙ୍କୁ ବୋଧକଲେ
କୈକେୟୀ ତୁନିହେଲେ ସୀତାଙ୍କୁ ଘେନିକୋଳେ
ସେଠାବରୁ ଶ୍ରୀରାମ ବେଗେ ଚଳିଗଲେ
କଉଶଲ୍ୟାଙ୍କ ପାସେ ପ୍ରବେଶ ହୋଇଲେ ।
ଦେଖିଲେ ଭ୍ରତବୀର ମଥାପୋତି ବସି
କି ଜାଣି ଶୋକ ସମୁଦ୍ରେ ଅଛି ପୁଣି ପଶି ।
ବଶିଷ୍ଠଙ୍କ ବୋଲେ ସେ ହେଲେ ନିଶବଦ
କରଯୋଡ଼ି ଉଭାହେଲେ ଭରତ ବେଗ ।

ଅତି କାକୁସ୍ୱରେ ବୋଲନ୍ତି ବୀରମଣି
ମୋହର କଥା ତୁମ୍ଭେ ଶୁଣ ରଘୁମଣି ।
ପୂର୍ବକଥା ଛାଡ ତୁମ୍ଭ ରଥରେ ଯାଇ ବସ
ରକ୍ଷାକର ତୁମ୍ଭେ ଅଯୋଧ୍ୟା ଯେ ଦେଶ ।
ମାସେ ଏଗାରଦିନ ହେଲା ଛାଡିଣ ଅଇଲ
ଅଯୋଧ୍ୟା ଲୋକଙ୍କୁ ବହୁତ ଦୁଃଖଦେଲ ।
ତୁମ୍ଭେ ଅଟ ସିନା ଅଯୋଧ୍ୟା ରାଜନ
ତୁମ୍ଭ ବିନା ଆନ କେ ତହିଁକି ଭାର୍ଜନ ।
କୁକୁରକୁ ତୁମ୍ଭେ ଯଜ୍ଞଚରୁ ଯାଚ
ସୁବର୍ଣ୍ଣ ପଞ୍ଜୁରୀରେ ଉଲୁକ କିମ୍ପା ସଞ୍ଚ ।
ତୃଣକୁ ପ୍ରାସହେବ ନଛାଡ ଗୋରୁ ପୁଣ
ବାଡିତାଟି ଖଟିବା ଲୋକ ପାତ୍ର କି ହେବ ଜାଣ
ଶାର୍ଦ୍ଦୁଳକୁ ଭାତଦେଲେ ନୁହେ ସେ ସନ୍ତୋଷ
ରକତ ମାଂସରେ ତାର ନିତି ଥାଏ ଆଶ ।
ବନସ୍ତରେ ହସ୍ତୀ ପଲେକ ଥିଲେ ଶତେ
ଗୃହସ୍ଥ ଭାର୍ଯ୍ୟା ସିଂହ ହେଲେ ସେ ବନସ୍ତେ ।
ନାଗମେଳେ ସରଦାର କୁମ୍ଭକ ନାମେ ହସ୍ତି
ସିଂହ ଦେଖି ବିଚାରେ ଆସ ଯିବା ଏଥି ।
ନିଉନ ହୋଇ ସିଂହରେ ପଶିବା ଶରଣ
କରିବା ତାର ବୋଲ ନାହିଁ ହେ ମରଣ ।
ଏମନ୍ତ ଭାବି ହସ୍ତୀ ବେଗେ ଚଳିଗଲେ
ସିଂହର ଚରଣେ ଶରଣ ପଶିଲେ ।
ସେବନରେ ସମସ୍ତଙ୍କୁ କଲା ସେ ନିଶ୍ଚିନ୍ତ
କିଛିଦିନ ଗଲା ଶୁଣ ହେ ରଘୁନାଥ ।
ସିଂହର ଘରଣୀ ପୁଣି ଗର୍ଭବାସ ହେଲା
ଏକଇ ଦୁହିତା ଏକ ପୁତ୍ର ଜାତକଲା ।
ସେ ଦୁହିତା ପୁତ୍ରଙ୍କୁ ସିଂହ ଯେ କହିଲା
ହସ୍ତୀ ମୋଠାରେ ଶରଣ ପଶିଣ ରହିଲା ।
ମୁଁ ସତ୍ୟ କରିଛି ତୁ ନମାରିବୁ ହସ୍ତୀ
ମୁହିଁ ମଲେ ସିନା ତୁ ପଛନ୍ତେ ଦେବୁ ଶାସ୍ତି
ସତ୍ୟକରି ଦଶରଥ ପିତା ନାଶଗଲେ
ମଲାଗଲା ଦୁଇକଥା ସମାନ ହୋଇଲେ ।
ଏବେ ତୁମ୍ଭେ ରଘୁନାଥ ସେ କଥାକୁ ଛାଡ
ସମସ୍ତେ ସୁଖୀ ହେବେ ଚାଲ ନିଜପୁର ।
ହସ୍ତୀଙ୍କର ସରଦାର ହସ୍ତୀକୁଳ ରଖେ
କେମନ୍ତେ ବଞ୍ଚିବି ମୁଁ ରହିଣ ପଡେ ଦୁଃଖେ

ତୁହି ସେ ରଘୁନାଥ ଅଯୋଧ୍ୟାର ସାଇଁ
ତୁମ୍ଭେ ନଗଲେ ଶତ୍ରୁ ଘେନିବେ ତୁମ୍ଭ ମହୀ ।
ପିତାମାତା ମୋତେ ଦେଲେ ମୁଁ ଦେଲି ତୁମ୍ଭଙ୍କୁ
ଦୋଷ ମୋର କ୍ଷମା କର ରଖ ହେ ଆମ୍ଭଙ୍କୁ ।
ଛତି ଯେ କାହାଳୀ ତୁମ୍ଭେ କାହାକୁ ସମର୍ପିବ
ଧନ ଭଣ୍ଡାର ତୁମ୍ଭେ କାହାକୁ ଯେ ଦେବ ।
ଆମ୍ଭେମାନେ ନୋହୁ ତହିଁକି ଭାଜନ ।
ଅର୍ଜିଣ ଦେବୁଁ ଦେବ ଅନ୍ନ ବସ୍ତ୍ରମାନ ।
ତେବେ ତୁମ୍ଭର ଯଶ ରହେ ଏ ମଣ୍ଡଳେ
ତୁମ୍ଭେ ସିନା ନାଥ ଠାକୁର ସେ ପୁରେ ।
ତୁମ୍ଭେ ଯେବେ ନଲେଉଟି ଯିବ ରଘୁସାଇଁ
ବନେ ବୁଲିବା ଚାଲ ଚାରିଗୋଟି ଭାଇ ।
ତୁମ୍ଭଙ୍କୁ ଖଟିଥିବୁ ସେବକ ପଣକରି
ତୁମ୍ଭେ ଅଇଲା ଦିନରୁ ଅଯୋଧ୍ୟା ନରନାରୀ ।
ନୟନରୁ ଲୁହ ନରହେ କାହାରି
କେବଳ ଲୀଳାବତୀ ଜନନୀ ଦମ୍ଭକରି ।
ନଗ୍ରରେ ନରନାରୀ ଅଇଲେ ଗୋଡାଇ
ଅଯୋଧ୍ୟା ନଗ୍ରକୁ ନେବେ ବୋଲି ବାହୁଡାଇ ।
ସବୁଙ୍କର ମନରେ ଏହିକଥା ଅଛି
ଏହା ତୁମ୍ଭେ ଆନ ନକର ରଘୁବଂଶି ।
ଏଗାର ସହସ୍ର ବରଷ ଅଯୋଧ୍ୟା ଭୋଗକର
ପୁତ୍ରଙ୍କୁ ରାଜାକରି ପିତାଙ୍କ ସତ୍ୟପାଳ ।
ମହିମା ବିଖ୍ୟାତ କର ହେ ଚତୁର୍ଦିଗେ
ପୂର୍ବର କଥାମାନ ରହୁ ଯୁଗେ ଯୁଗେ ।
ଅଭିଷେକ ହୁଅ ତୁମ୍ଭେ ପାଅ ଦେବପୂଜା
ତିନିପୁରେ ଜାଣନ୍ତୁ ଶ୍ରୀରାମଚନ୍ଦ୍ର ରାଜା ।
ତୁମ୍ଭେ ଯେବେ ଶ୍ରୀରାମ ନଯିବ ଅଯୋଧ୍ୟା
ଜାନକୀ ଯାଇଣ ହୁଅନ୍ତୁ ତହିଁ ରାଜା ।
ଶତ୍ରୁଘନ ସାନ ପାଦରେ ଖଟିଥାଉ
ଲୀଳାବତୀ ଜନନୀ ରାଜ୍ୟ ରଖିଥାଉ ।
ପାତ୍ରମନ୍ତ୍ରୀ ସମସ୍ତେ ମାତୃଗଣ ଯାନ୍ତୁ
ଜାନକୀଙ୍କି ଅଯୋଧ୍ୟାରେ ସେବା କରିଥାନ୍ତୁ ।
ତୁମ୍ଭର ସଙ୍ଗରେ ମୁଁ ବନରେ ନେବି ଦିନ
ଫଳ ମୂଳ ବନରେ କରିବି ଭୋଜନ ।
ଅଯୋଧ୍ୟା ରାଜ୍ୟରେ ତୁମ୍ଭଙ୍କୁ ହେବ ନିନ୍ଦା
ବିଶ୍ୱାମିତ୍ର ମୁନି ହରିଚନ୍ଦନେ କଲେ ଧନ୍ଦା ।

ଯାଗର ବଳେ ଋଷି ହୋଇଲେ କାରଣ
ଅଯୋଧ୍ୟାକୁ ନେଲେ ସତ୍ୟକରି ପୁଣ ।
ପୁତ୍ର ଭାରିଜାଙ୍କୁ ବିକ୍ରୟ କରିଦେଲେ
ତେବେ ଋଷିଙ୍କ ମନ ସନ୍ତୋଷ ହୋଇଲେ ।
ଅଯୋଧ୍ୟା ଦେଇଣ ଗଲେକ ଋଷି ପୁଣ
ରାଜା ହେଲେ ତହିଁରେ ହରିଚନ୍ଦନ ଜାଣ ।
ରାଜ୍ୟ ରଖିଲେ ସିନା ସତ୍ୟକୁ ଦେବ ପାଳି
ଦଶରଥ ଥିଲେ କିମ୍ପା ହୁଅନ୍ତୁ ଏତେସରି ।
ମୁଁ ରାଜା ନୁହଇ ତାଙ୍କର ବୋଲେଣ
ରାଜା ହେଇଥାଆନ୍ତ ଆସିବା ଯାଏଣ ।
ନୃପତି ବଚନେ ତୁମ୍ଭେ ବନକୁ ଅଇଲ
ସେ ପୁଣି ତ ନାଶଗଲେ କାହାକୁ ରାଜ୍ୟଦେଲ ।
ମୁହିଁ ତ ମାଗିନାହିଁ ପିତାଙ୍କୁ ଯେ ରାଜ୍ୟ
ମୋଠାରେ କିମ୍ପା କୋପକରୁଛ ଦେବରାଜ ।
ରାମଚନ୍ଦ୍ର ବୋଲନ୍ତି ଭ୍ରତ ବୋଲ ଶୁଣି
କିମ୍ପାଇଁ ଭ୍ରତ କହୁଛୁ ଏସନକ ବାଣୀ ।
ପିତା ତୋ ପାଇଁ ରାଜ୍ୟ ସତ୍ୟକରି ନେଲେ
ଚଉଦବର୍ଷ ମୋତେ ବନକୁ ପେଶିଲେ ।
ଧର୍ମରେ ଥିବୁ ରାଜ୍ୟ ପାଳିବୁଟି ମହି
ମୋତେ କିମ୍ପା ପୁଣି ଆସିଅଛୁ କହି ।
ହେବୁ କି ନୋହିବୁ ରାଜା ତୁହି ସିନା ଜାଣୁ
ଗଳାମଳା ତେଜ୍ୟା ମୁଁ କରିଅଛି ତେଣୁ ।
ସତ୍ୟଭଗ୍ନ ହେବ ମୁଁ ଅଯୋଧ୍ୟାପୁର ଗଲେ
ପିତାଜ୍ଞା ଭ୍ରଷ୍ଟକଲେ ନିନ୍ଦା ପାଇବି ଭଲେ ।
ତୁ ମୋତେ ଭ୍ରତ ଯେ ନବୋଲ କେବେ ଏହା
ଦଶରଥଙ୍କ କୀରତି ଯୁଗେ ଯୁଗେ ରୁହା ।
ଶୁଣିଛୁଟି କି ଭ୍ରତ ସତ୍ୟଯୁଗର କଥା
ସତ୍ୟକରି ବଳିରାଜା ଦାନରେ ଶକତା ।
ଧନୁଧରି ଅର୍ଜିଲେ ବୀର ତିନିପୁର
ନାରାୟଣ ଦାନ ମାଗି ନେଲେ ତା ହସ୍ତର ।
ତିନିପୁର ତଳେ ବଳି ଯାଇଣ ରହିଲେ
ବାମନ ରୂପକୁ ନିତି ଦରଶନ କଲେ ।
ସତ୍ୟପାଳି ପ୍ରହଲାଦ ସ୍ୱର୍ଗରେ ଇନ୍ଦ୍ରହେଲେ
ସତ୍ୟପାଳି ନଳରାଜା ବନରେ ବୁଲିଲେ ।
ସତ୍ୟପାଳି ଦମୟନ୍ତୀ ଦେବତା ବିଭାନୁହେ
ସତ୍ୟପାଳି ଚନ୍ଦ୍ରସୂର୍ଯ୍ୟ ଗଗନେ ଉଦୟେ ।

ଶୁଣିକରି ଭରତ ଯୋଡିଲେ ବେନିକର
ଭୋ ଦେବ ଜନନୀର ଦୋଷକୁ ନଧର ।
ଶ୍ରୀରାମ ବୋଇଲେ ତୁ ନଜାଣୁରେ ଭାଇ
କଉଶଲ୍ୟା କଯେକୟା ସୁମିତ୍ରା ତିନିଆଇ ।
ଏ ତିନି ମାତାଟି ଅଟନ୍ତି ଏକଦେହ
ମୋତେ କିମ୍ପା କୈକୟା ନ ହେଲା ସେନେହ
ଚାରିଭାଇ ଆମ୍ଭେ ଅଟୁ ଏକଦେହୀ
ତୋର ମୋର ଦେହ ଯେ ବେଗଳ ନୁହଇ ।
ଯୋଗରେ ବିଧାତା ଅଛି ଯେ ଭିଆଇ
କାହାର ବେଳେ ପୁଣ ସେକଥା ଆନ ନୋହି
ବଶିଷ୍ଠ ବୋଇଲେ ରାମଚନ୍ଦ୍ର ଶୁଣ
ଅଯୋଧ୍ୟା ନଗ୍ର ଏବେ ହୋଇଲା ରଣଭଣ ।
ତୁମ୍ଭେ ହେଲ ବନବାସୀ ଭ୍ରତ ନୋହିଲା ରାଜା
ନିରେଖ ପ୍ରାଣୀ ହେଲେ ଅଯୋଧ୍ୟା ଜନ ପ୍ରଜା ।
ତୁ କିମ୍ପାଇଁ ରାଜ୍ୟ ଛାଡିଣ ବିଚାରୁ
ଏହୁ କଥା ତୋର ମନରେ ନ ବିଚାରୁ ।
ଶ୍ରୀରାମ ବୋଇଲେ ତୁମ୍ଭେ ନବିଚାର ମୁନି
ଅରଣ୍ୟକୁ ଆସିଛି ମୁଁ ପିତାଙ୍କର ଆଜ୍ଞା ଘେନି ।
ଚଉଦବରଷ ମୁଁ ଅରଣ୍ୟେ ରହିବି
ପିତାଙ୍କର ଆଜ୍ଞାକୁ ନିଷ୍ଚୟ ପାଳିବି ।
ଶ୍ରୀରାମଙ୍କ ବଚନରେ ବଶିଷ୍ଠ ଆଗସରି
ପାଚିଲା ଥୋଡକୁ ଥର ଥର କରି ।
ରାଜ୍ୟ ଛାଡିଣ ତୁ କିମ୍ପା ଯିବୁ ବନ
ଏହୁତ ପଉରୁଷ ନୁହେ ରଘୁନାନ ।
ଦଶରଥ ରାଜାଙ୍କୁ କାଳ ଆକ୍ରୋସିଲା
ସ୍ତିରୀରେ ବଶ୍ୟ ହୋଇ ନୃପତି ସତ୍ୟ କଲା ।
ଅଯୋଧ୍ୟାକୁ ଯିବା ଏବେ ବେଗେ ଚଢ଼ ରଥ
ରାମଚନ୍ଦ୍ର ବୋଇଲେ ଶୁଣ ହେ ତପୋବନ୍ତ ।
ନିନ୍ଦା ବଚନ କିମ୍ପା ପାଇବି ମୁହିଁ ତ
କେବେହେଁ ଏକଥା ନୁହେ ଯାହା କହିଲତ ।
ସତ୍ୟ ପୁରୁଷଙ୍କ କଥା ଏସନକ ରୀତି
ଧର୍ମ ଯେ ଯାହାର ଅଟେ ଯେ ପୀରତି ।
ସତ୍ୟ ନ ଛାଡିଣ ଯେ କରିବ ନିତ୍ୟ କର୍ମ
ଦିନେ ଦୁଃଖ ପାଇଲେ ରହିବ ସତ୍ୟ ଧର୍ମ ।
ସର୍ବଦା ବଚନ ଯେବେ ଶୀତଳ ଭାଷିବ
ଗୁରୁ ଗଉରବ ଦୁଃଖୀର ଦୋଷୀ ଯେ ନୋହିବ
ଦେବତା ବ୍ରାହ୍ମଣ ଅତିଥି କରିବ ଯେବେ ସେବା
ଆବର ଭକତି ହେବ ସର୍ବ ଦେବା ।
ଏହାଙ୍କୁ ବୋଲିବ ସିନା ସନ୍ଥଜନ ଗତି
ଏତେମାର୍ଗ ଥିଲେ ପ୍ରାଣୀ ସ୍ୱର୍ଗରେ ବସନ୍ତି ।
ମୁହିଁ ଏବେ ଏକଥାକୁ ଛାଡିବି କିମ୍ପାଇଁ
ସତ୍ୟ ପୂରିଲେ ମୁଁ ଯେ ଅଯୋଧ୍ୟା ପୁର ଯାଇ ।
ଶୁଣିଣ ସ୍ତମ୍ଭୀଭୂତ ହୋଇଲେ ସମସ୍ତ
ଅନେକ ତିଆରିଲେ କଶ୍ୟପ ତପୋବନ୍ତ ।
ଶାସ୍ତ୍ରବଳ ଦେଖାଇ ତିଆରନ୍ତି ବାମଦେବ
ନିଶ୍ଚୟ ତୁମ୍ଭ ରାଜ୍ୟକୁ ଶତ୍ରୁ ଯେଂ ହରିବ ।
ଭ୍ରତରେ ତୋର ରାଜ୍ୟ ନୋହିବ ରକ୍ଷିତ
କୈକୟାର ତନୟ ହୋଇବ ଦୁଃଖିତ ।
ବାସୁଦେବ ଅଂଶରେ ଜନମ ତୁମ୍ଭେ ଯେଣୁ
ଦୟା ଧର୍ମ ସତ୍ୟ ତୋର ହୃଦରୁ ବଖାଣୁ ।
ମାୟାବୀ ପୁରୁଷ ତୁମ୍ଭେ ଅଟ ହେ ଶ୍ରୀରାମ
ଦେବଙ୍କର ପାଇଁ ଏବେ କର ତୁମ୍ଭେ ଧର୍ମ ।
ପିତା ସତ୍ୟ ପାଳିବାକୁ ମନରେ କର ଚିନ୍ତା
ଧର୍ମ କଲାବେଳେ ଚିନ୍ତିଲୁ ପାପକଥା ।
ସାବତ ଜନନୀ ହେଲେ ଦେବଙ୍କ ଅଦିତି
ତା ପେଟରେ ପଶିଇନ୍ଦ୍ର କଲାକ ଅନୀତ ।
ଯେଉଁ ଭବଦ୍ୱାରେ ତନ୍ମହେଲେ ଦେବରାଜା
ସେହିବାଟେ ପଶିଣ ଗର୍ଭକଲେ ଦୁଜା ।
ଅଣଚାଶ ଖଣ୍ଡ କରି କାଟିଲେ ତାର ପୁତ୍ର
କାଳେ ସେ ଲଭିଲା ପବନ ସମ୍ଭୂତ ।
ଦେବତା ହୋଇ ତାର ଧର୍ମ କେଣେ ଗଲା
ମାତୃହରଣ ବାଳକ ହତ୍ୟା ନ ଲାଗିଲା ।
ଦେବ ସଭାରେ ସେ ଯେ ନିଶ୍ଚିନ୍ତେ ରହିଲା
ସେ ରୂପେ ସତ୍ୟ ତୋର ପାଳିବାକୁ ହେଲା ।
ଅଧର୍ମ ବିଚାରି ବାବୁ ପବନ ବଳବନ୍ତା
ସେ ପୁରୁଷ ସଂସାରକୁ ହେଲେ ଯେ କରତା ।
ଦେବତା ବୋଇଲେ ଅଧର୍ମ ତୁମ୍ଭେ କର
ଜନ୍ମ କଲା ଲୋକଙ୍କୁ ସ୍ୱହସ୍ତରେ ମାର ।
ଜନନୀର ଛଳ ଘେନି ବହିଛ ରାଗ ପୁଣି
ଆମ୍ଭେମାନେ ସମସ୍ତେ କହିଲୁଁ ପରିମାଣି ।
କହିଲେ ଜଣାଯିବ ନ କହିଲେ ହେବ ସ୍ୱପ୍ନ
ଏ କଥାକୁ ବିଚାର ନକର ରଘୁରାଣ ।

ଶ୍ରୀରାମ ବୋଇଲେ ମୁଁ ଯେ କେବେ ହେଁ ନଯାଇ
ଚଉଦ ବର୍ଷ ରହିବି ବନବାସୀ ହୋଇ ।
ସମସ୍ତେ କହିଲେ ଅନେକ ଯତ୍ନ କରି
ଗୁପତ କଥାମାନ କିମ୍ବା ପ୍ରକାଶ କରି ।
ମୋର କଥାମାନ ମୋତେ ନଯାଏ କି ଜଣା
ଅଜ୍ଞାନ ଘୋଟିଲା ବେଳୁଁ ହୋଇଲି ମୁଁ ବଣା
ଅନେକ କହିଲେ ଯେ ଅଯୋଧ୍ୟା ପୁର ନାରୀ
ସେ ଦୋଷ ଭୋଗ କରିବୁଁ ଆମ୍ଭେ ଚାପଧାରୀ ।
ବଶିଷ୍ଠ ଜାବାଳୀ ବାମଦେବ ଯେ କଶ୍ୟପ
ଏହାଙ୍କର ବଚନ ନକଲେ ରାମ ନୃପ ।
ଶ୍ରୀରାମଙ୍କଠାରୁ ଶୁଣିଲେ ନିରାଶ ବଚନ ·
କୁଶଶଯ୍ୟାକରି ଶୁଏ କୈକୟୀ ନନ୍ଦନ ।
ଏଥୁ ଅନନ୍ତରେ ଶରଭଙ୍ଗ ଶିଷ୍ୟ
ଚିତ୍ରକୂଟରେ ଯାଇ ହୋଇଲେ ପ୍ରବେଶ ।
ଗୁରୁପେଶିଲେ କୁଶ ପାଦୁକା ଦୁଇ ଦେଇ
ଏ ପାଦୁକା ରାମଙ୍କୁ ଦେଇଆସ ଯାଇ ।
ଚିତ୍ରକୂଟେ ଛନ୍ତି ବୋଲି ମୋତେ ଜଣାଗଲା
ଉପଗତ ହୋଇ ରଘୁନାଥଙ୍କୁ କହିଲା ।
ଏ କୁଶ ପାଦୁକାକୁ ସନ୍ଦେଶ କରିଦିଅ
ଭରତଙ୍କୁ ଅଯୋଧ୍ୟା ନଗ୍ରକୁ ଫେରାଅ ।
ବୋଲିବୁ ଗୁରୁଶ୍ୱର ଭଙ୍ଗ କହିଛନ୍ତି
ସେହି ବାଟରେ ତୁମ୍ଭେ ଯିବହେ ରଘୁପତି ।
ଏମନ୍ତ ବୋଲିଗୁରୁ ଶିଷ୍ୟଙ୍କୁ ପେଶିଦେଲେ
ଆଜ୍ଞାଘେନି ସେ ଚିତ୍ରକୂଟରେ ମିଳିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ
ଋଷି ସାମନ୍ତ ଯେ କହିଲେ ପାତ୍ର ମନ୍ତ୍ରୀ ।
ସାତଶ ଜନନୀ କହିଲେ ମେଳ ହୋଇ
କାହାରି କଥା ନ ମାନିଲେ ରଘୁସାଇଁ ।
ସୀତାଙ୍କ ତିନିଭଗ୍ନୀ କାକୁସ୍ଥ କରି କହି
ଜନକ ଦୁହିତା  କେବେ ହେଁ ତୋଷ ନୋହି
ସମସ୍ତଙ୍କ ବୋଲ ତହୁଁ ନକଲେ ରଘୁନାଥ
କୁଶଶଯ୍ୟା  କରିଣ ଶୋଇଲେ ଭରତ ।
ଶରଭଙ୍ଗଙ୍କ କୁଶପାଦୁକା ଶିଷ୍ୟ ଧରି
ସକଳ ଲୋକ ଦେଖିଲେ  ପ୍ରବେଶ ସେ ଗିରି ।
ବଶିଷ୍ଠ ବାମଦେବଙ୍କୁ ନମସ୍କାର କରି
ଜାବାଳୀ କାଶ୍ୟପଙ୍କୁ ପ୍ରଣାମ ସେ କରି ।

ଶ୍ରୀରାମ ଛାମୁରେ ମିଳିଲେ ତପୋବନ୍ତ
ରଘୁନାଥ ନମସ୍କାର କଲେକ ତ୍ୱରିତ ।
ଭ୍ରତ ଶତୃଘ୍ନ ଲକ୍ଷ୍ମଣ ସୁମନ୍ତ ସହିତେ
ମୁନିଙ୍କି ପୂଜା ଯେ କରିଲେ ସମସ୍ତେ ।
ରାମଙ୍କୁ ଚାହିଁଣ ଉତୁଭଙ୍ଗ କହିଲେ
ଆଜ ସେ ଜୀବନ ମୋର ସୁଫଳ ହୋଇଲେ ।
ପ୍ରତ୍ୟକ୍ଷେ ନାରାୟଣ ନର ଅବତାର
ଶଙ୍ଖଚକ୍ର କରେ ଘେନି କୌସ୍ତୁଭ ମଣିହାର ।
ସେ ପ୍ରଭୁଙ୍କୁ ଚର୍ମ ନୟନରେ ମୁଁ ଦେଖିଲି
ଅନେକ ଜନ୍ମର ମୁଁ ଦୁଃଖ ଉପେକ୍ଷିଲି ।
ଗୁରୁ ପେଶିଦେଲେ ମୋତେ ପାଦୁକା ଦୁଇ ଦେଇ
ବୋଇଲେ ରଘୁନାଥଙ୍କୁ ଏହା ଦେବୁ ନେଇ ।
ରାମଚନ୍ଦ୍ର ଆଗରେ କହ ତୁ ବେଗେ ଯାଇ
ଗୁରୁଙ୍କ ଆଶ୍ରମ ଦେଖି ଯିବ ରଘୁସାଇଁ ।
ଭୋ ରଘୁନାଥ ମୁଁ କହୁଛି ବିନୟରେ
ଗୁରୁଙ୍କ ମଢ଼ିଆ ବାଟେ ଯିବିଟି ନିକରେ ।
ଏମନ୍ତ ବୋଲି ଶିଷ୍ୟ ରାମଚନ୍ଦ୍ରଙ୍କୁ କହି
ଭ୍ରତକୁ ବୋଇଲେ ତୁ ଶୋଇଛୁ କାହିଁପାଇଁ ।
କୁଶର ପାଦୁକା ଏ ଦୁଇଗୋଟି ଜାଣ
କଠାଉ ଦୁଇଗୋଟି ଋଷି  ଦେଲେ ପୁଣ ।
ଏହା ଦେବେ ଶ୍ରୀରାମ ତୁମ୍ଭର ହସ୍ତରେ
ଅଯୋଧ୍ୟାକୁ ଚଳ ତୁ ନରହ ଏଠାରେ ।
ମାତାଗଣଙ୍କୁ ବୋଲନ୍ତି ଯାଅ ଯା ଅଯୋଧ୍ୟା
ଚଉଦ ବରଷ ଯାଏଁ ରାମଙ୍କୁ କର ତେଜ୍ୟା ।
ଅଯୋଧ୍ୟା ନରନାରୀ ଯେତେକ ତହିଁଥିଲେ
ଋଷିଙ୍କର ଶିଷ୍ୟ ତାଙ୍କୁ ଉତ୍ତର କହିଲେ ।
ବୋଇଲେ ରାମଚନ୍ଦ୍ର ନଯିବେ ଲେଉଟି
ସତ୍ୟ ପୁରିଲେ ଯେ ଅଯୋଧ୍ୟା ଯିବେଟି ।
ମନ୍ତ୍ରୀ ଅମନାତ୍ୟଙ୍କୁ ବୋଇଲେ ଋଷି ବାଳା
ଅଯୋଧ୍ୟା ଚଳ ହେ ନକର କେହି ହେଳା ।
ଋଷି ବୋଇଲେ ତୁମ୍ଭେ କାଷ୍ଠା କିମ୍ବା କର
ଜାଣତ ଦେବକାର୍ଯ୍ୟେ କରିବେ ରଘୁବୀର ।
ଶତୃଘ୍ନନଙ୍କୁ ବୋଇଲେ ଅଯୋଧ୍ୟାପୁର ଯିବୁ
ଭ୍ରତଙ୍କର ଆଜ୍ଞାରେ ସାବଧାନେ ଥିବୁ ।
ଲକ୍ଷ୍ମଣଙ୍କୁ ବୋଇଲେ ଚଳିବୁ ରାମସଙ୍ଗେ
ସୀତାଙ୍କୁ ଜଗିଥିବୁ ରାତ୍ର ଦିବା ଯାଗେ ।

ଏତେ କହି ମନ୍ଦିରକୁ ଗଲେ ପଥବାହି
ଭ୍ରତ କାଷ୍ଠାକରି ଭୂମିରେ ଅଛି ଶୋଇ ।
ଶୁଣିକରି ପାର୍ବତୀ ଯୋଡ଼ିଲେ ବେନିକର
ବୋଇଲେ ଅନୁଗ୍ରହ କର ଯୋଗେଶ୍ୱର ।
ଶରଭଙ୍ଗ ମୁନି ଯେ ପାଦୁକା ଭେଦି ଦେଲେ
ସମସ୍ତଙ୍କୁ କହିଣ ଋଷି ଫେରିଗଲେ ।
ସଙ୍ଗେ ଦେଲେ କୁଶବଟୁ କଠାଉ ମୁନିବର
କେହ କୁହିଲେ ପୁଣି ମନକୁ ବିଚାର ।
ଈଶ୍ୱର ବୋଇଲେ ଶୁଣ ଅସୁର ଦଳଣୀ
ଦଶରଥ ପୁତ୍ରକୁ ଶଯ୍ୟାକଲେ ପୁଣି ।
ମନକରି ଶୋଇଛି ଭରତ ଯେ ବୀର
ଆୟୁଧରୁ ଜାତ ସିନା ଭୟ ତା ହୃଦର ।
ସୁଦର୍ଶନ ଚକ୍ର ଭ୍ରତ ଅଟେ ଶ୍ରୀରାମର
କଉମୁଦୀ ଗଦା ଅଟେ ଶତୃଘନ ବୀର ।
ଲକ୍ଷ୍ମଣ ଅନନ୍ତ ଯେ ରାମ ବାସୁଦେବ
କମଳା ଅଟନ୍ତି ଜାନକୀ ସମ୍ଭବ ।
କଉଶଲ୍ୟା ଅଦିତୀ କୈକୟୀ ସୁଦିତୀ
ଦଶରଥ ଅଟନ୍ତି କଶ୍ୟପ ଅଙ୍ଗଟି ।
ଅକ୍ଷୟ ରାବଣ ମରିବାର ପାଇଁ ପୁଣ
ଦେବକୂଟରେ ଭିଆଣ ଦୁର୍ଗା ବାରେ ଜାଣ ।
ସକଳ ଦେବତା ହୋଇ ଏକ ଠୁଳ
ବିଚାର କଲେ ଘେନି ଦେବତା ସକଳ ।
ବୋଇଲେ ଅଯୋଧ୍ୟାରୁ ସକଳ ଲୋକ ଘେନି
ଭରତ ଶତୃଘନ ଅଇଲେ ଭାଇ ବେନି ।
ନିଶ୍ଚୟ ରାମ ଯେବେ ଅଯୋଧ୍ୟାକୁ ଯିବ
ରାବଣ କୁମ୍ଭକର୍ଣ୍ଣ ବାଳି ନମରିବ ।
କଠାଉ ଦୁଇଗୋଟି କୁଶବଟୁ ଦୁଇ
ଅଙ୍ଗିରା ଧାତା ବୋଲେ ଦେଇଆସ ଯାଇ ।
ଶରଭଙ୍ଗ ଋଷିଙ୍କର ମଢ଼ିଆକୁ ଯିବ
ବ୍ରହ୍ମା ଦେଇଛନ୍ତି ବୋଲି ରାମଙ୍କୁ ସମର୍ପିବ ।
କହିଣ ଭ୍ରତକୁ ଦେବେ ବୋଧକରି
ଶ୍ରୀରାମ ଫେରିବାଯାଏଁ ଶତ୍ରୁ ନ ଯିବେ ତୋପୁରି
ସିଂହାସନରେ ରଖି ପାଦୁକା ପୂଜିବୁ
ରାମ ଆସିବା ପର୍ଯ୍ୟନ୍ତେ ରାଜା ତୁ ନୋହିବୁ ।
ପାତ୍ରମନ୍ତ୍ରୀ ଘେନିଣ ପାଳିବୁ ଯେ ମହୀ
ଯୁବରାଜା ହୋଇଣ ରାଜ୍ୟରେ ଥାଅ ରହି ।

ଏତେ କହି ମୁନିଙ୍କି ବେଗେ ତୁମ୍ଭେ ଆସ
ଶୁଣିକରି ଅଙ୍ଗିରା ହୋଇଣ ହରଷ ।
ଶରଭଙ୍ଗ ଋଷିଙ୍କୁ କହିକରି ଗଲେ
ଋଷିଶିଷ୍ୟ ଆସିଣ ଶ୍ରୀରାମଙ୍କୁ ଦେଇଗଲେ ।
ସେ କଥାକୁ ଭ୍ରତ ଯେ ନୁହେ ସାବଧାନ
ନିଷ୍ଟେ ଗଲେ ମୁହିଁ ଯିବି କରିଛି କାଷ୍ଠା ପୁଣ ।
ଦେଖିଣ ଦେବତାଙ୍କର ନଷ୍ଟୁରେ ବଚନ
ବ୍ରହ୍ମାଙ୍କୁ ଘେନିଣ ସକଳ ଦେବଗଣ ।
ଇନ୍ଦ୍ରେ ଚନ୍ଦ୍ର ସହିତରେ କରନ୍ତି ବିଚାର
ଭ୍ରତର ବୋଲେ ଯେବେ ରାମ ଯିବେ ଘର ।
ନିଶ୍ଚୟ ଆମ୍ଭର କଥା ପାସୋର ହୋଇବ
ଅଳପ ଦିନ ଛାଡ଼ିଣ ବହୁତ ଦିନ ଯିବ ।
ଚାରି ରାବଣ କୁମ୍ଭକର୍ଣ୍ଣ ମରିବେ କେମନ୍ତେ
ସ୍ୱର୍ଗରେ ଆମ୍ଭେମାନେ ବସିବାକି ସୁଖେ ।
ଏତେ ବିଚାରି ଦେବେ ଅଧାସ୍ୱର୍ଗକୁ ଅଇଲେ
ଶୁଣ ଶୁଣ ଭ୍ରତ ବୀର ବୋଲି ଡାକଦେଲେ ।
ଶ୍ରୀରାମ ତ ଧର୍ମିକ ନ ଲଙ୍ଘିବେ ସତ୍ୟ
ତୁ କିମ୍ପା ଆସିଛୁ ଭ୍ରତ ତାଙ୍କୁ ନେବାକୁତ ।
ବାହୁଡ଼ି ଯାଇଣ ତୁ ଅଯୋଧ୍ୟାପୁର ପାଳ
ଏ କଥାକୁ ତୁ ଯେ ଆନ ନ ବିଚାର ।
ଶ୍ରୀରାମ ବାହୁଡ଼ିଲେ ସଂସାର ନାଶଯିବ
ତୋତେ ଅପଖ୍ୟାତି ଜଗତେ ଶୁଭିବ ।
ଦେବକାର୍ଯ୍ୟ ହୋଇବ ଶ୍ରୀରାମ ଥିବେ ବନେ
ମନଦୁଃଖ ନକରି ତୁ ଚଳିଯା ବହନେ ।
ଏସନକ ବୋଲିଣ ବୋଇଲେ ସର୍ବଦେବ
ବଶିଷ୍ଠ ବୋଇଲେ ଭ୍ରତବୀର ଉଠ ଯିବ ।
ଅଯୋଧ୍ୟାକୁ ଚାଲଯିବା ସଜକର ଥାଟ
କେତେଦିନ ହେଲା ଛାଡ଼ିଲେଣି ଯେ କଟକ ।
ଉପରେ ଦେବତାଏ କହୁଛନ୍ତି ବାଣୀ
ଶ୍ୟୀରାମ ଗଲେ ଅଯୋଧ୍ୟା ନାଶ ହେବ ପୁଣି ।
ଜଣାଗଲା ଦେବକାର୍ଯ୍ୟ ହେବ ରାମହସ୍ତେ
ରାମ ସଙ୍ଗେ ଘଞ୍ଚାଳ ନକର ତୁରେ ଭ୍ରତେ ।
ଶୁଣିଣ ଭ୍ରତବୀର ଉଠିଲା ତଡ଼ିତି
ବଶିଷ୍ଠ ଶ୍ରୀରାମଙ୍କୁ ବହୁତ ତିଆରନ୍ତି ।
ତୁ ଯେବେ ରାମଚନ୍ଦ୍ର ନଯିବୁ ନିଜପୁର
ଚୌଦବର୍ଷ ରହିବୁ ତୁହି ବନଘୋର ।

ତହୁଁ ଉତ୍ତାରୁ ଅଯୋଧ୍ୟା ଯିବୁଟି କି ସତ
ଶୁଣିକରି ବୋଇଲେ ବୀର ରଘୁନାଥ ।
ଚଉଦବରଷ ମୁଁ ଅରଣ୍ୟେ ବୁଲିବି
ତହୁଁ ଉତ୍ତାରୁ ଅଯୋଧ୍ୟା ନୃପତି ହୋଇବି ।
ଏ ବଚନ ଗୁରୁ ମୋର ଅଟଇ ନିୟତ
ସତ୍ୟପାଳିଣ ମୁହିଁ ଅଯୋଧ୍ୟା ଯିବି ସତ୍ୟ ।
ଶୁଣିଣ କହିଲେ କଇକୟା ସୁତ
ତୁମ୍ଭର ବଚନ ମୁଁ ପାଳିବି ରଘୁନାଥ ।
କେବେହେଁ ରାଜା ମୁଁ ନୋହିବି ଅଯୋଧ୍ୟାରେ
ପାତ୍ରପଣେ ରହିଲି ମୁଁ ତୁମ୍ଭର ଆଶାରେ ।
ଏକଥା ଶୁଣି ବୋଲନ୍ତି ବଶିଷ୍ଠ ମହାଋଷି
ଦେବତାଏ ଦେଲେ ପାଦୁକା ଦୁଇଗୋଟି ।
କୁଶବଟୁ ଦୁଇ ଋଷି ଦେଇଗଲେ
ସିଂହାସନେ ଥାଇ ପୂଜା ପାଇବେ ବୋଇଲେ ।
ଦେଖିକରି ସନ୍ତୋଷ ସକଳ ଲୋକ ହେଲେ
ରାଜ୍ୟକୁ ଫେରି ଯିବାକୁ ବାହାର ହୋଇଲେ ।
ଶ୍ରୀରମ ପାଦୁକାକୁ ଭ୍ରତ ଶିରେ ଘେନି
ରଘୁନାଥ ଚରଣେ କଲାକ ଦଇନୀ ।
ଭୋ ସ୍ୱାମୀ ତୁମ୍ଭ ଆଜ୍ଞାରେ ବାହୁଡ଼ି ଯାଉଛି
ପଛନ୍ତେ ମୋତେ ସ୍ୱାମୀ ନ ବୋଲିବ କିଛି ।
ଭରତ ବଚନ ଶୁଣି କହନ୍ତି ରଘୁସାଇଁ
ରାଜ୍ୟର ଚିନ୍ତା ତୋତେ କହୁଛି ଶୁଣ ତୁହି ।
ଯେମନ୍ତେ ଶତ୍ରୁମାନେ କଳି ନ କରିବେ
ତା ପରାକ୍ରମ ଶୁଣିଲେ ଡରି ପଳାଇବେ ।
ତେମନ୍ତ କରିଣ ବାବୁ ପ୍ରତିପାଳି ଥିବୁ
ଚଉଦବରଷ ଯାଏଁ ରାଜ୍ୟ ସମ୍ଭାଳିବୁଁ ।
ଶ୍ରୀରାମଙ୍କୁ ଜନନୀ ବୋଲନ୍ତି ଶୁଣ ତୁହି
ତୋର ସଙ୍ଗେ ମୁହିଁ ଥିବି ରାଜ୍ୟରେ କାର୍ଯ୍ୟନାହିଁ
ଶ୍ରୀରାମ ବୋଲନ୍ତି ତୋର ଭ୍ରତ ଅଟେ ସୁତ
ତୁମ୍ଭେ ବନେ ରହିଲେ ଭ୍ରତ ମରିବ ନିୟତ ।
ମୋହର ଜନନୀ ଅଟେ ଲିଳାବତୀ ରାଣୀ
ଅସମୟ କାଳରେ ସମ୍ଭାଳେ ରାଜ୍ୟ ପୁଣି ।
ତାକୁ କୋଟି ନମସ୍କାର ମୋହର ଦଇନୀ
ସେ ମାତାକୁ ମୋର କିଛି ନ ବୋଲିବ ପୁଣି ।
କୈକୟା ମାତା ମୋର ଚିନ୍ତାରେ ଦେହ ଧରେ
ଭ୍ରତ ଶତ୍ରୁଘନ ଦୁହେଁ ଅଛନ୍ତି ଭାଳେ ଶିରେ
ରାମଠାରୁ ଜନନୀଏ ଭାଷାମାନ ଶୁଣି
ଆନନ୍ଦ ମନ ହେଲେ ସକଳ ଜନନୀ ।
ଶ୍ରୀରାମଙ୍କୁ ମାତାଏ ତିଆରନ୍ତି ତହୁଁ
ଆମ୍ଭେ ତ ବାହୁଡ଼ି ଯାଉଛୁଁ ରଘୁପୋଇ ।
ମହାଅରଣ୍ୟରେ ତିନିହେଁ ମେଳ ଥିବ
କେହି କାହାକୁ ବାବୁରେ ଛାଡ଼ିଣ ନଯିବ ।
ଘୋର ଅରଣ୍ୟରେ ଯେ ବସା ନକରିବ
ଧନୁଶରକୁ ତୁମ୍ଭେ ହସ୍ତରୁ ନ ଛାଡ଼ିବ ।
ସୀତାଙ୍କୁ କଉଶଲ୍ୟା ବୋଲନ୍ତି ଶୁଣ ସତୀ
ଶ୍ରୀରାମଚନ୍ଦ୍ର ଯେ ଅଟନ୍ତି ତୋର ପତି ।
ମୋହର ରାମ ସେବାରେ ଅନୁବ୍ରତେ ଥିବୁ
ଅପୂର୍ବ ପଦାର୍ଥ ତୁ ଦେଖିଲେ ନ ମାଗିବୁ ।
ଶ୍ରୀରାମରୁ ଅଧିକ ଅଟେ ମୋ ଲକ୍ଷ୍ମଣ
କିଛି ନ ବୋଲିବୁ ଗୋ ଜନକ ଜେମା ଜାଣ ।
ଶ୍ରୀରାମଙ୍କୁ ତିଆରି କହିଲେ ବହୁତ
ମାତାଗଣ ସହିତେ ବଶିଷ୍ଠ ତପୋବନ୍ତ ।
ଆହେ ଶ୍ରୀରାମ ଆମ୍ଭେ ଟାଣୁଥିବୁ ଦିନ
ଚଉଦ ବରଷ ଯହୁଁ ହୋଇବ ସମ୍ପୂର୍ଣ୍ଣ ।
ସେହି ଦିନ ଅଯୋଧ୍ୟାରେ ହେବୁ ତୁ ନୃପତି
ଦିନେ ଯେବେ ବଳିଯିବ ଆମ୍ଭେ ମରିବୁଟି ।
ଶ୍ରୀରାମ ବୋଲନ୍ତି ତୁମ୍ଭେ ମାତାଗଣ ଶୁଣ
ବଶିଷ୍ଠ ବାମଦେବ ସୁମନ୍ତ ପାତ୍ରଗଣ ।
ଯେମନ୍ତ ମୋର ରାଜ୍ୟରେ ନପଶେ ବଇରୀ
ସମସ୍ତେ ଜାଗ୍ରତରେ ଥିବଟି ବିଚାରି ।
ଜନନୀମାନଙ୍କୁ ମୋର କିଛି ନ ବୋଲିବ
ଭ୍ରତର ଆଜ୍ଞା ପାଳି ନିୟତରେ ଥିବ ।
ରାଜ୍ୟ ଭଣ୍ଡାର ଯେ ଦେବତା ଦୁଃଖୀଜନ
ଏମାନଙ୍କ ଚରଚା ବୁଝିବ ବହନ ।
ତୁ ଯେ ଶତ୍ରୁଘନ ଭ୍ରତର ବୋଲେ ଥିବୁ
ମୋହର ଆଜ୍ଞାକୁ କେଭେ ନ ଭାଙ୍ଗିବୁ ।
ନଗ୍ର ନରନାରୀଙ୍କି ଚାହିଁଣ ଆଜ୍ଞା ଦେଲେ
ଭ୍ରତକୁ ସଙ୍ଗେ ଘେନି ବାହୁଡ଼ି ବୋଇଲେ ।
ପିତାଙ୍କର ସତ୍ୟ ମୁଁ ପାଳିକରି ଯିବି
ତେବେ ସିନା ଅଯୋଧ୍ୟାରେ ନୃପତି ହୋଇବି ।
ଶୁଣିକରି ପ୍ରଜାଏ ହୋଇଲେ ସନ୍ତୋଷ
ଚଉଦ ବରଷ ପୂରିଲେ ପ୍ରଭୁ ବେଗେ ଆସ ।

ଶ୍ରୀରାମର ପାଦୁକାକୁ ରଥରେ ବସାଇ
ଚଳିଲେ ଭ୍ରତବୀର ଅଯୋଧ୍ୟା ଯେ ଭୂଇଁ ।
କନକ ସ୍ନାନ କରିଣ କଲେ ଅଭିଷେକ
ପଡ଼ିଲା ହରିବୋଲ ରାମତାଳି ଡାକ ।
ଛେରା ପହଁରା ପୁଷ୍ପ ଗନ୍ଧ ନେଇ ଦେଲେ
ପାଦୁକା ଦୁଇଟିକୁ ସୁବେଶ କରାଇଲେ ।
ଅମଳାଣ ବସ୍ତ୍ର ଯେ କାଛିଣ ପିନ୍ଧାଇଲେ
ସୁନାର କଙ୍କଣ ଚନ୍ଦ୍ରହାର ଲମ୍ବାଇଲେ ।
ବାହୁଟି ରତ୍ନ ମୁଦି ପଗଡ଼ି ଗଣ୍ଠା ଯୋଡ଼
କୁଣ୍ଡଳ ଫାସିଆ ରାଜ ବିଧିମାନ ବଡ଼ ।
ଦଶରଥ ରାଜନ ଯେମନ୍ତ ଦିଶେ ଶୋଭା
ପାଦୁକା ଅଭିଷେକକୁ ସମସ୍ତେ ଯେ ଲୋଭା ।
ଗୁଣ୍ଡିଚା ଯାତ୍ରାବେଳେ ଯେମନ୍ତେ ରଘୁନାଥ
ଚିତ୍ରକୂଟ ଉପରେ ତେମନ୍ତ ଦିଶେ ଥାଟ ।
ଦେବତାଗଣ ଉପରେ ଥାଇ ନୃତ୍ୟ କଲେ
ଗନ୍ଧର୍ବଗଣ ସେଠାରେ ପୁଷ୍ପ ବରଷିଲେ ।
ସୁବର୍ଣ୍ଣ ବୃଷ୍ଟି କଲେ ତହିଁରେ କୁବେର
ଅପସରା ନାଚିଲେ ହୋଇଣ ମାଳମାଳ ।
ବଶିଷ୍ଠ ଗୁରୁ ତହିଁ ଦୃଷ୍ଟି ପୁଣ ଦେଲେ
ବାମଦେବ ମଙ୍ଗଳ ଆରତୀ ଯେ କଲେ ।
ବ୍ରାହ୍ମଣଙ୍କୁ ଘେନିଣ କଶ୍ୟପ ତପୋଧନ
ହରିଦ୍ରା ଚାଉଳେ ଆଶୀର୍ବାଦ କଲେ ପୁଣ ।
ଖଟଣୀ ସାମନ୍ତ ପଶେ ଭ୍ରତ ଧରି ଛତି
ଶତ୍ରୁଘନ ତହିଁ ଚାମର ବିଞ୍ଚନ୍ତି ।
ଯେତେକ ଖଟଣୀ ସଙ୍ଗରେ ଯାଇଥିଲେ
ଯେ ଯାହାର ସେବାରେ ସମସ୍ତେ ଖଟିଲେ ।
କମ୍ପଇ ସ୍ୱର୍ଗପୁର ମର୍ତ୍ତ୍ୟ କମ୍ପେ ପୁଣି
ବୀରବାଦ୍ୟ ଶବଦରେ ଉଚ୍ଛୁଳେ ଧରଣୀ ।
ଜୀବଜନ୍ତୁ ସହିତେ ଯେତେକ ସେଥି ଥିଲେ
ଅହନ୍ତା ଛାଡ଼ି ସର୍ବେ ଆନନ୍ଦ ହୋଇଲେ ।
ଖୁଣ୍ଟିଆ ଡାକଦେଲେ ମଣିମା ମଣିମା
ପାତ୍ର ମନ୍ତ୍ରୀ ବୋଇଲେ ଗୁହାରୀ ଶୁଣିମା ।
ଉତ୍ସବ ଆନନ୍ଦରେ ସବୁଙ୍କରି ମନ
ଶ୍ରୀରାମ ଅଭିଷେକ ବୋଲନ୍ତି ସର୍ବଜନ ।
ଶ୍ରୀରାମଙ୍କୁ ନମସ୍କାର କରିଣ ବାହୁଡ଼ନ୍ତି
ଯେ ଯାହାକୁ ମାନ୍ୟ ଧର୍ମ ଯେମନ୍ତେ କରନ୍ତି ।

ସୀତାଙ୍କୁ ଭଗ୍ନୀମାନେ କହି ବାହୁଡ଼ିଲେ
ମାତାମାନେ କହିଣ ହାନ୍ଦୋଳାରେ ଗଲେ ।
କଉଶଲ୍ୟା ଯାଇଣ ରାମକୁ କୋଳକଲେ
ମୁଖରେ ଚୁମ୍ବଦେଇ ସନ୍ତୋଷ ହୋଇଲେ ।
ସକଳ ମାତାଙ୍କୁ ସୀତା ଓଳଗିଲେ
ମାତାଙ୍କୁ ଶ୍ରୀରାମ ପ୍ରଣିପାତ ହେଲେ ।
ବଶିଷ୍ଠ ଜାବାଳି କଶ୍ୟପ ସୁମନ୍ତ
ପରଜା ନରନାରୀ ପଦାତି ସମସ୍ତ ।
ବାମଦେବ ସହିତେ ସକଳ ତପିଜନ
ଏହାଙ୍କୁ ଓଳଗିଲେ ଶ୍ରୀରଘୁନନ୍ଦନ ।
ଲକ୍ଷ୍ମଣ ଭରତ ଚରଣେ ଓଳଗନ୍ତି
ଶତ୍ରୁଘ୍ନ ଲକ୍ଷ୍ମଣ ରାମ ଚରଣେ ପଡ଼ନ୍ତି ।
ସମସ୍ତଙ୍କୁ ବିନୟେ ପ୍ରଣମିତ ହୋଇ
ଗଲୁଁ ହେ ପ୍ରଭୁ ବୋଲି ମେଲାଣି ମାଗଇ ।
ସୁମନ୍ତକୁ ଶ୍ରୀରାମ ବହୁତ ତିଆରନ୍ତି
ଭରତକୁ କଲ୍ୟାଣ କରିଣ ବୋଲନ୍ତି ।
ଯାଅ ବାବୁ ସୁଖରେ ରାଜ୍ୟ ତୁମ୍ଭେ ରଖ
ଶୁଣିକରି ହରଷ ହୋଇଲେ ଭରତ ।
ଶିରରେ ହସ୍ତଦେଇ ଗଲେକ ସେ ଚଳି
ଗୁହ୍ୟଶବର ଶ୍ରୀରାମଙ୍କ ସନ୍ନିଧକୁ ଚଳି ।
ତାହାକୁ ରଘୁନାଥ ପ୍ରବୋଧି କହିଲେ
ଭ୍ରତ ସଙ୍ଗେ ମଇତ୍ର ଚଳ ହେ ବୋଇଲେ ।
ଶ୍ରୀରାମ ବାଣୀ ପୁଣି କହଇ ଶବର
ସୁଦୟା କରିଥିବ ଅଯୋଧ୍ୟା ଈଶ୍ୱର ।
ଶ୍ରୀରାମ ବୋଇଲେ ମୋର ଭାଇ ତୋତେ ଲଗା
ଆଠଦିନରେ ଥରେ ଯିବଟି ଅଯୋଧ୍ୟା ।
ଶୁଣିକରି ଶବର ସନ୍ତୋଷ ହୋଇଲା
ମାନ୍ୟ ଧର୍ମ କରିଣ ସଙ୍ଗେ ବାହୁଡ଼ିଲା ।
ଏଥୁ ଅନନ୍ତରେ ଚଳିଗଲେ ଥାଟ
ଅଗମ୍ୟ ବନରେ ବହିଗଲେ ବାଟ ।
ଯେ ଯାହାର ବାହନ ଆରୋହି ଚଳିଗଲେ
ପାଞ୍ଚଦିନେ ଅଯୋଧ୍ୟାରେ ପ୍ରବେଶ ହୋଇଲେ ।
ନନ୍ଦୀଗ୍ରାମରେ ଯାଇ ହୋଇଲେ ପ୍ରବେଶ
କଟକ କରିଣ ରହିଲେ ହରଷ ।
ପାର୍ବତୀ ବୋଲନ୍ତି ଶୁଣ ତ୍ରିଲୋଚନ
କଥାଏ ପଚାରିବି କର ଅବଧାନ ।

ସିଂହବେଣୀ ପୁରେ ଗୁହ୍ୟ ଶବରର ଘର
ଗଙ୍ଗାକୂଳକୁ ଘେରି ବଡ଼ ସେ ନଗର ।
ସତର ଲକ୍ଷ କନ୍ଧ ସେ ପୁରେ ଅଛନ୍ତି
ବାରକୋଶ ପର୍ଯ୍ୟନ୍ତେ ନଗର ଅଛି ସଞ୍ଜି ।
ଗୁହ୍ୟ ନାମେ ଶବର ତହିଁରେ ଅଟେ ରାଜା
କନ୍ଧପଲ୍ଲୀଯାକ ସବୁ ତାହାର ପରଜା ।
ବଣର ମନୁଷ୍ୟ ବଣରେ ଥାନ୍ତି ରହି
ଫଳମୂଳ ଭୋଜନେ ତାଙ୍କର ଦିନ ଯାଇ ।
ଶ୍ରୀରାମଙ୍କଠାରେ ସେ କେମନ୍ତେ ପ୍ରୀତିକଲା
ପୂର୍ବରେ କେଉଁ ତପ କରି ସେ ଜନ୍ମିଥିଲା ।
ଏହା ମୋତେ ବୁଝାଇ କହ ତ୍ରିଲୋଚନ
ମୋହର ମନ ତୋଷ ହେବ ପୁଣ ।
ଈଶ୍ୱର ବୋଇଲେ ଶୁଣ ପ୍ରାଣସହୀ
ସାତଗଣ୍ଡା ଯୁଗ ଯେ ଶବର ତହିଁ ରହି ।
ସେଥିରେ କଥା ତୋତେ କହିବା ମୂଳକରି
ସିଂହ ଗୋଟିକର ନାମ ଅଟେ ତ୍ରିପୁରାରି ।
ହେମଗିରି ନିକଟକୁ ଆସିଲା ଦିନେ ଫେରି
ଗଙ୍ଗାରେ ପାଣି ଦେଖିଲା ବନ ଫେରି ।
ଗହନ ଲତା ଦେଖି ତହିଁ ବାସକଲା
ମୃଗ ହରିଣ ଶୂକର ବହୁତ ନାଶିଲା ।
ହସ୍ତୀ ଘୋଡ଼ା ବ୍ୟାଘ୍ର ଯେ ବରାହ ଶୃଗାଳ
ସମସ୍ତଙ୍କୁ ଭକ୍ଷିଣ କଲାକ ହାଡ଼ମାଳ ।
ବାଟ ଘାଟ ବନ୍ଦ ହେଲା ତାହାର ଭୟରେ
ଦେବତାଏ ବିଚାର କଲେକ ସ୍ୱର୍ଗପୁରେ ।
ସଇନ୍ଦ୍ରି ନାମରେ ସ୍ୱର୍ଗରେ ଅପସରୀ
ତାର କୋଳେ ଜାତ ନଳପୁତ୍ର କନ୍ଦାଓଳି ।
ସେ ପୁତ୍ର ଜନ୍ମ ହୋଇ ଅତି ଦୁଷ୍ଟହେଲା
ସ୍ୱର୍ଗର ଦେବତାମାନଙ୍କୁ ନ ମାନିଲା ।
ଦେଖିଣ ଦେବତାଏ ମନରେ ହେଲେ ଦୁଃଖୀ
କହିଲେ ସିଂହପୁରେ ଏହାକୁ ଦିଅ ରଖି ।
ସିଂହର ସଙ୍ଗେ ଲଢୁ ସିଂହ ଯାକୁ ମାରୁ
ଦୁଷ୍ଟପଣ ଏହାର ଗଙ୍ଗାକୂଳେ ସରୁ ।
ଏତେ ବୋଲି ନେଇଣ ଛାଡ଼ିଲେ ସିଂହଘରେ
ବୁଲିଣ ସିଂହ ଯାଇ ଦେଖିଲା ତାହାରେ ।
ବାଳକକୁ ଦେଖିଣ ସିଂହ ଦୟା କଲା
ସୁପକ୍ୱ ଦ୍ରବ୍ୟ ଦେଇ ତାହାକୁ ତୋଷିଲା ।

ଏମନ୍ତେ କେତେଦିନ ବହିଗଲା ପୁଣ
ଶବର ଯାଇ ସିଂହ ଘରୁ ପିଲାଟି ଆଣିଣ ।
ଦୁହିଁଙ୍କୁ ଏକଠାବି କରି ସିଂହକୁ ମାରି
ବଦଳ ସେ ସ୍ଥାନକୁ ଦେଲା ସିଂହପୁରି ।
ତାହାଙ୍କ ଠାରୁ ପୁତ୍ର ଜନମ ହୋଇଲା
ବଳବନ୍ତ ପଣରେ ସେ ନଗ୍ର ବସାଇଲା ।
ତାହାର ନାମ ଅଟଇ କବନ୍ଧ ଶବର
ସେହି ନଗ୍ରରେ ସେ ରାଜା ତତପର ।
କରୁଣା ନାମେ ଶବର ଘରେ ସେ ବିଭା ହେଲା
ତାରଠାରୁ ପାଞ୍ଚପୁତ୍ର ଜନମ ହୋଇଲା ।
ତାହାରି ଅଂଶରେ ଗୁହ୍ୟ ଯେ ଶବର
ସ୍ୱର୍ଗର ଦେବତା ସେ ପୂର୍ବରୁ ଅଟେ ସାର ।
ଅନ୍ତ ନାମେ ଇନ୍ଦ୍ରର ପୁତ୍ର ଅଟେ ସେହି
ତାହାକୁ ନ ମାନି ସେ ବିଷ୍ଣୁଙ୍କୁ ସେବିଥାଇ ।
କପିଳ ଋଷି ଦିନେ ଏକାନ୍ତେ ଯାଇଥିଲେ
ବାଟରେ ତାହାଙ୍କୁ ଭେଟ ସେ ପାଇଲେ ।
ମାନ୍ୟଧର୍ମ ତାଙ୍କୁ ଯେ ନକଲା ଦେବସୁତ
ଋଷି ଶାପଦେଲେ ବ୍ୟାଧକୁଳେ ହୁଅ ଜାତ ।
ଗଜେନ୍ଦ୍ର ବ୍ୟାଧର ତୁହି ହେବୁ ପୁତ୍ର
ରୋହିଣୀ ନାମରେ ହେବ ତୋର ମାତ ।
ଗୁହ୍ୟ ଶବର ଯେ ତୋର ନାମ ହେବ
ସିଂହିଂକାର ପୁରେ ତୁ ହେବୁ ନରଦେବ ।
ପନ୍ଦର କୋଟି ସୁତ ଦୁହିତା ଯେ ପାଞ୍ଚ
ବିଷ୍ଣୁରେ ବିଶ୍ୱାସ ହେବୁ ଧର୍ମବନ୍ତ ।
ପାରିଧିକି ଯାଇ ଦିନେ ଦଶରଥ ସୁତ
ବୁଲି ବୁଲି ବାଧାରେ ହୋଇ ପଥଶ୍ରାନ୍ତ ।
ଲେଉଟିଣ ରାମ ତୋର ସଙ୍ଗେ ଦେଖା ହେବେ
ସେହିଦିନୁ ମଇତ୍ର ତୁ ହେବୁ ରାମ ସଙ୍ଗେ ।
ତେବେ ତୁହି ମୋହର ଶାପରୁ ପାର ହେବୁ
ଶ୍ରୀରାମଙ୍କ ସଙ୍ଗରେ ସ୍ୱର୍ଗକୁ ଆସିବୁ ।
ଏତେ କହି କପିଳ ଋଷି ଚଳିଗଲେ
ଇନ୍ଦ୍ର ନନ୍ଦନ ଶବର ଘରେ ଜାତ ହେଲେ ।
ବିଷ୍ଣୁରେ ପ୍ରୀତିକରି ଜପେ ବିଷ୍ଣୁ ନାମ
ତେଣୁ ତାକୁ ସପକ୍ଷ ହୋଇଲେ ଶ୍ରୀରାମ ।
ଶବରର ଜନମ ଶୁଣିଲୁ ଭଗବତୀ
ଏମନ୍ତ ପ୍ରକାରେ ଗୁହ୍ୟ ଶବରର କୀର୍ତ୍ତି ।

ଏଥୁଅନନ୍ତରେ ଶୁଣ ଗୋ ଗଉରୀ
ଅଯୋଧ୍ୟା ନଗ୍ରକୁ ଭ୍ରତଗଲା ଫେରି ।
ନନ୍ଦୀଗ୍ରା ମରେ ନବର ଯେ କରି
ସିଂହାସନେ ପାଦୁକା ରଖିଲା ପୂଜାକରି ।
ଏଥୁ ଅନନ୍ତରେ ଶୁଣିବା ବଚନ
ମୋହର କଥା ତୁମ୍ଭେ ଶୁଣ ମହାମୁନ୍ୟ ।
ଏହି ନନ୍ଦୀଗ୍ରାମରେ କଟକ କରିବି
ଅଯୋଧ୍ୟା ନଗ୍ରକୁ କେବେହେଁ ନଯିବି ।
ଚଉଦବରଷ ମୁଁ ଏଠାରେ ରହିବି
ଶ୍ରୀରାମ ଅଯୋଧ୍ୟାକୁ ଆସିଲେ ମୁଁ ଯିବି ।
ଏତେ ବୋଲି ଭ୍ରତ ଶତ୍ରୁଘନ ରହି
ପାର୍ବତୀ ଆଗରେ ସଦାଶିବ କହି ।
ଶୁଣିଲ କି ଭବାନୀ ଭରତ ଚରିତ
ଶ୍ରୀରାମ ପାଦୁକାକୁ ଧରାଏ ଦଣ୍ଡଛତ୍ର ।
କଶ୍ୟପ ବାମଦେବ ସୁମନ୍ତ ଏମାନେ
ଜାବାଳି ସାମନ୍ତ ବିଚାରି ସର୍ବଜନେ ।
ବଶିଷ୍ଟଙ୍କଠାରେ ରାଜ୍ୟଭାର ଦେଲେ
ଲୀଳାବତୀ ଜନନୀ ପାଶରେ ମିଳିଲେ ।
ଚରଣେ ଲୋଟଗାଳି ଶୁଏ ଭ୍ରତବୀର
ବୋଇଲା ଜନନୀ ଗୋ ମୋ ଦୋଷ ନଧର ।
ବାସୁଦେବ ଶ୍ରୀରାମଙ୍କର ତୁମ୍ଭଙ୍କୁ ପ୍ରଶଂସା
ବୋଇଲେ ମୋର ଜନନୀ ଅଟେ ଲୀଳାମାତା ।
ଅସମୟକାଳେ ଯେବେ ଧନୁଶର ଧରି
ଜଗିକରି ରହିଲା ଭଣ୍ଡାର ମୋହରି ।
ମାତାମାନଙ୍କ କଥା ସେ ମାତା ବୁଝିବେ
ପୃଥ୍ୱୀକଥା ଆତଯାତ ବଶିଷ୍ଟ କରିବେ ।
ସିଂହାସନରେ ମୋର ପାଦୁକା ବସିଥିବ
ରାଜନୀତି ଭୋଗ ଚୌଦ ବରଷ କରିବ ।
ଏତେ ବୋଲିଣ ଆଜ୍ଞାଦେଲେ ରାମଦେବ
ଦେବତା ବୋଇଲେ କେଭେ ନଯାଅ ନିଜଗ୍ରାମ
ବନେଥିଲେ ଦେବକାର୍ଯ୍ୟ ବହୁତ ହୋଇବ ।
ଲେଉଟିଗଲେ ଅଯୋଧ୍ୟାରେ ପ୍ରମାଦ ପଡ଼ିବ ।
ତାଙ୍କ ବୋଲେ ଆମ୍ଭେ ଅଇଲୁଁ ଲେଉଟି
ଶ୍ରୀରାମ କହିଲେ କହିବ ଜନନୀଙ୍କି ।
ଶୁଣିକରି ଲୀଳାବତୀ ସନ୍ତୋଷ ହୋଇଲେ
ଭ୍ରତକୁ କୋଳେବସାଇ ମୁଖେ ଚୁମ୍ବ ଦେଲେ ।

କଉଶଲ୍ୟା କଇକୟା ସୁମିତ୍ରା ଏ ତିନି
ଲୀଳାବତୀ ଚରଣେ କଲେକ ଦୟିନୀ ।
ରାଣୀହଂସ ପୁରେ ସେ ନିଶ୍ଚିନ୍ତେ ରହିଲେ
ଆପଣେ ରାମନାମ ଜପିଣ ଦିନନେଲେ ।
ଭରତ ଶତ୍ରୁଘନ ହେଲେ ଜଟାଧାରୀ
ମୁନିଙ୍କର ବେଶରେ ସେହୁ ଦିନସାରି ।
ଅଯୋଧ୍ୟା କାଣ୍ଡ ଏ ଶାମବେଦୁଁ ଜାତ
ଯାହା ବଖାଣିଲେ ବାଲ୍ମିକୀ ତପୋବନ୍ତ ।
ଆଦ୍ୟ ଅଯୋଧ୍ୟାକାଣ୍ଡ ହୋଇଲା ସଂମ୍ପୂର୍ଣ୍ଣ
ସ୍ୱର୍ଗରୁ ନାରଦ ଅଇଲେ ତତକ୍ଷଣ ।
ବ୍ରହ୍ମଋଷି ଆସିଣ ହେଲେ ପରବେଶ
ଦେଖିଣ ବାଲମିକ ମନରେ ହରଷ ।
ଜଳଦିଅନ୍ତେ ଚରଣ ଧୋଇଲେ ନାରଦ
ଋଷିଙ୍କର ପାଶରେ ବସିଲେ ମୁନିଦେବ ।
ବାଲମିକ ବୋଇଲେ ଶୁଣ ହେ ମୁନିବର
ରାମାୟଣ ଗ୍ରନ୍ଥ ମୁଁ ଯେ କରିଛି ଉଚ୍ଚାର ।
ଆଦ୍ୟକାଣ୍ଡ ସମାପ୍ତ କରି ଅଯୋଧ୍ୟା କାଣ୍ଡକଲି
ଦ୍ୱିତୀୟ କାଣ୍ଡ ସରନ୍ତେ ମନରେ ବିଚାରି ।
ତୃତୀୟ କାଣ୍ଡ ଅରଣ୍ୟ କରିବାକୁ ଇଚ୍ଛା
ଭାଗ୍ୟବଳେ ମୋହର ପ୍ରବେଶି ମୁନିଦିକ୍ଷା ।
ନାରଦ ବୋଇଲେ ତୁମ୍ଭେ ନକର ପୁରଣ
ମନା କରିବାକୁ ମୁଁ ଅଇଲି ସ୍ୱର୍ଗୁ ଜାଣ ।
ବେଦବର ବୋଇଲେ ବେଗେ ତୁମ୍ଭେ ଯାଅ
ବାଲମିକ ଋଷିଙ୍କି ଏହିକଥା କହ ।
ବୋଲିବ ରାମାୟଣ ନକର ଯେ ତୁମ୍ଭେ
କଲେ ନର୍କ ଦର୍ଶନ ପାଇବ ଯେ ତୁମ୍ଭେ ।
ସୀତା ତୁମ୍ଭର ଦୁହିତା ରାମ ଅଟେ ଜ୍ୱାଇଁ
ଅଭୂଷଣ ବିଡମ୍ବଣ ସମ୍ଭବ ହେବ ତହିଁ ।
ବାଲମିକ ବୋଇଲେ ମୁଁ ଦ୍ୱିତୀୟ କାଣ୍ଡକଲି
ବେଳହୁଁ କିମ୍ପା ନକହିଲ ବ୍ରହ୍ମଚାରୀ ।
ନାରଦ ବୋଇଲେ ଏହିଠାରୁ ରହୁ
ତୁମ୍ଭେ ପୁରାଣ କରିବା ସମ୍ଭବ ନୁହେ ଆଉ ।
ବାଲ୍ମିକୀ ବୋଇଲେ ଦେବନାଟକେ ସତାଶପଟାଶ
ତୃତୀୟ କାଣ୍ଡଟି ହୋଇବ ହେ ଶେଷ ।
ନାରଦ ବୋଇଲେ ରାମାୟଣ ଲକ୍ଷେପଦ
ପଚିଶ ସହସ୍ର ପଦ ତୁମ୍ଭର ସମ୍ଭବ ।

ଆରଣ୍ୟକ କିଷ୍କିନ୍ଧ୍ୟା ସୁନ୍ଦରା କାଣ୍ଡ ତିନି
ଲଙ୍କାର ଅସୁର ଯେ ବିଚାର କରେ ପୁଣି ।
ନାଟକ ଶ୍ଳୋକରେ ପଚାଶ ସସ୍ର ପଦ
ବାସୁଦେବ ଦୟାରେ କରିବି ସମାପତ ।
ମହାନାଟକ ସତାଶ ପଚାଶରେ ପୁଣି
ସତର ସସ୍ର ପଦ ଋଷ୍ୟଶୃଙ୍ଗ ବଖାଣି ।
ଏମନ୍ତେ ରାମାୟଣ ପୁରାଣ ହେବ ପୂଣ
ଶୁଣିଣ ସନ୍ତୋଷ ବାଲମିକ ଜାଣ ।
କହିକରି ନାରଦ ସ୍ୱର୍ଗପୁର ଗଲେ
ବାଲ୍ମୀକି ଅଯୋଧ୍ୟା କାଣ୍ଡ ସମାପତ କଲେ ।
ବଳରାମ ଦାସ ମୁଁ ଶ୍ରୀରାମ ଭକତ
ନୀଳଗିରି ଜଗନ୍ନାଥ ଚରଣେ ମୋର ମାଥ ।
ଶ୍ରୀ ଜଗନ୍ନାଥଙ୍କର ମହିମା ପ୍ରମାଣେ
ଜଗନ୍ମୋହନ ରାମାୟଣ କରୁଅଛି ଏଣେ ।
ଅଯୋଧ୍ୟା କାଣ୍ଡ ଯେ ସମାପତ କଲି
ନବସହସ୍ର ଷାଠିଏ ପଦରେ ବର୍ଣ୍ଣିଲି ।

**ଇତି ଅଯୋଧ୍ୟା କାଣ୍ଡ ସମ୍ପୂର୍ଣ୍ଣ**



ମୁଦ୍ରାକର– ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ୍, ଅଲିଶା ବଜାର, କଟକ– ୨






ପ୍ରକାଶକ :

**ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର, କଟକ - ୨

ଫୋନ୍ : (୦୬୭୧) ୨୬୦୮୨୯୬